# ଶ୍ରୀଜଗନ୍ନାଥ ସଂସ୍କୃତି

ସଂପାଦନା :

ଓଡ଼ିଶା କଲ୍‌ଚରାଲ୍ ଫୋରମ୍

ଭୁବନେଶ୍ୱର

ସାର୍ଥୀ ମହଲ

# ଶ୍ରୀଜଗନ୍ନାଥ ସଂସ୍କୃତି


ସମ୍ପାଦନା :

ଓଡ଼ିଶା କଲ୍‌ଚରାଲ୍‌ ଫୋରମ

ଭୁବନେଶ୍ୱର

ପ୍ରକାଶକ :

ଶ୍ରୀ ରାଧାଶ୍ୟାମ ମହାନ୍ତି

ସାଥୀମହଲ

ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଥମ ମୁଦ୍ରଣ :

ଶ୍ରୀଗୁଣ୍ଡିଚା, ୧୯୭୮

ପ୍ରଚ୍ଛଦ ଶିଳ୍ପୀ :

ଶ୍ରୀ ଦିନନାଥ ପାଠୀ

ମୁଦ୍ରଣ :

ସତ୍ୟବ୍ରତ ପ୍ରେସ

ମେରିଆବଜାର, କଟକ-୭୫୩୦୦୧

ମୂଲ୍ୟ : ସାଧାରଣ ଟ ୧୨.୦୦

ଶୋଭନ ଟ ୧୪.୦୦


**Sri Jagannath Samskruti**


*Edited by :*

**Orissa Cultural Forum**

Bhubaneswar

*Published by* :

**Radhashyam Mohanty**

**Sathi Mahal**

Binod bihari, Cuttack-2

Price :

Rupees Fourteen only

# ଅଗ୍ରଲେଖ

ଓଡ଼ିଶା କଲ୍‌ଚରାଲ୍ ଫୋରମ୍ ଆନୁକୂଲ୍ୟରେ 'କଲ୍‌ଚର' (Culture) ଶୀର୍ଷକ ଖଣ୍ଡିଏ ଇଂରାଜୀ ବହି ଓ 'ଓଡ଼ିଶାର ସାଂସ୍କୃତିକ ଇତିହାସ' ନାମକ ଅନ୍ୟତମ ଓଡ଼ିଆ ବହି ପ୍ରକାଶ ପାଇବା ପରେ 'ଶ୍ରୀଜଗନ୍ନାଥ ସଂସ୍କୃତି' ଏହାର ତୃତୀୟ ଅର୍ଘ୍ୟ ରୂପେ ସୁଧୀବର୍ଗଙ୍କ କରକମଳରେ ଅର୍ପଣ କରାଯାଉଛି ।

ଏହି ସଂସ୍ଥା ମୁଖ୍ୟତଃ ସାରସ୍ୱତ ସାଧନା ମାଧ୍ୟମରେ ଓଡ଼ିଶାର ସଂସ୍କୃତିର ପ୍ରସାର ନିମିତ୍ତ ପଦକ୍ଷେପ ଗ୍ରହଣ କରିଛି । ଆମ ଦେଶର ବହୁ ଗୌରବାବହ ତଥ୍ୟ ଲୁକ୍କାୟିତ ଅବସ୍ଥାରେ ଏଯାବତ୍ ପଡ଼ିରହିଛି । ସେଗୁଡ଼ିକୁ ବିଧିବଦ୍ଧ ଭାବରେ ଲୋକଲୋଚନକୁ ଅଣାଯାଇ ନ ପାରିଲେ ବିଶ୍ୱକୁ ଓଡ଼ିଶାର ସାଂସ୍କୃତିକ ଅବଦାନ ସମ୍ପର୍କରେ କେତୋଟି ଅଜ୍ଞାତ ଅଧ୍ୟାୟ କ୍ରମେ କାଳର କରାଳଗର୍ଭରେ ବିସ୍ମୃତ ହୋଇଯିବ । ତେଣୁ ଆମ ଫୋରମ୍‌ର ସହଯୋଗୀବୃନ୍ଦ ସେ ଦିଗରେ ପ୍ରଚେଷ୍ଟା କରୁଥିବା କମ୍ ଆନନ୍ଦର କଥା ନୁହେଁ ।

ପ୍ରସ୍ତୁତ ପୁସ୍ତକରେ ଶ୍ରୀଜଗନ୍ନାଥ ସଂସ୍କୃତି ସମ୍ବନ୍ଧରେ ଅଳ୍ପ କେତୋଟି ବିଷୟରେ ଦିଗ୍‌ଦର୍ଶନ ଦିଆଯାଇଛି । ପ୍ରତ୍ୟେକ ଆଲୋଚନା ଉପରେ ଖଣ୍ଡିଏ ଖଣ୍ଡିଏ ସ୍ୱତନ୍ତ୍ର ପୁସ୍ତକ ରଚନା କରାଯାଇପାରେ । କିନ୍ତୁ ପୁସ୍ତକର କଳେବରକୁ ସୀମିତ ରଖିବା ଅଭିପ୍ରାୟରେ ପ୍ରତ୍ୟେକ ଆଲୋଚନାକୁ ଯଥାସମ୍ଭବ ସଂକ୍ଷେପ କରାଯାଇଛି । ଏଥିରେ ଶ୍ରୀଜଗନ୍ନାଥ ସଂସ୍କୃତି ସମ୍ପର୍କରେ ଆଲୋଚକମାନେ ଦଶଟି ଦିଗରୁ ଆଲୋଚନା କରିଛନ୍ତି । ସେମାନେ ହେଲେ—

୧ । ଶ୍ରୀ ରତ୍ନନାରାୟଣ ଦାଶ, କ୍ୟୁରେଟର,
ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର —ଶ୍ରୀଜଗନ୍ନାଥ ସଂସ୍କୃତିର ପୃଷ୍ଠଭୂମି

୨ । ଶ୍ରୀ କେଦାରନାଥ ମହାପାତ୍ର,
ଅବସରପ୍ରାପ୍ତ ଅଧୀକ୍ଷକ,
ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ, ଭୁବନେଶ୍ୱର —ଶ୍ରୀଜଗନ୍ନାଥ ସଂସ୍କୃତିର କ୍ରମବିକାଶ

୩ । ଶ୍ରୀ ଗଣେଶ ପ୍ରସାଦ ପରଜା,
ଭୁବନେଶ୍ୱର —ଶ୍ରୀଜଗନ୍ନାଥ ଓ ତାନ୍ତ୍ରିକ ଭାବଧାରା

୪ । ଶ୍ରୀ ଭଗବାନ ପଣ୍ଡା, ସମ୍ପାଦକ,
ରାଜ୍ୟ ପର୍ଯ୍ୟଟନ ଓ ସାଂସ୍କୃତିକ
ବ୍ୟାପାର ବିଭାଗ, ଭୁବନେଶ୍ୱର —ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା

୫ । ଶ୍ରୀ ଲକ୍ଷ୍ମଣ କୁମାର ପଣ୍ଡା,
ଅଧ୍ୟାପକ, ଇତିହାସ ବିଭାଗ,
ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀ —ଶ୍ରୀଜଗନ୍ନାଥ ଧର୍ମଧାରା

୬ । ଶ୍ରୀ ହରିନାଥ ପାଠୀ, କ୍ୟୁରେଟର,
ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର —ଓଡ଼ିଶୀ ଚିତ୍ରକଳାରେ ଶ୍ରୀଜଗନ୍ନାଥ

୭ । ଶ୍ରୀ ଗୋପାଳଚନ୍ଦ୍ର ପଣ୍ଡା, ଅଧ୍ୟାପକ,
ସଙ୍ଗୀତ ମହାବିଦ୍ୟାଳୟ, ଭୁବନେଶ୍ୱର —ଓଡ଼ିଶୀ ସଙ୍ଗୀତରେ ଶ୍ରୀଜଗନ୍ନାଥ

୮ । ଶ୍ରୀ ନୀଳମଣି ମିଶ୍ର, କ୍ୟୁରେଟର,
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ,
ଭୁବନେଶ୍ୱର —ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ

୯ । କୁମାରୀ ମମତା ମିଶ୍ର,
ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର —ଶ୍ରୀଜଗନ୍ନାଥଙ୍କ ସେବାବିଧି

୧୦ । ଶ୍ରୀ ମହେଶ ପ୍ରସାଦ ଦାଶ,
ଅଧୀକ୍ଷକ, ରାଜ୍ୟ ଅଭିଲେଖାଗାର,
ଭୁବନେଶ୍ୱର —ଶ୍ରୀଜଗନ୍ନାଥ ଓ ଠାକୁର ରାଜା

ଏହି ଉଦ୍ୟମକୁ 'ସାର୍ଥିମହଲ'ର ସଞ୍ଚାଳକ ଶ୍ରୀ ରାଧାଶ୍ୟାମ ମହାନ୍ତି ସଫଳ କରାଇବାର ଦାୟିତ୍ୱ ଗ୍ରହଣ କରିଥିବାରୁ ସେ ଅଶେଷ ଧନ୍ୟବାଦର ପାତ୍ର ।

ଆଲୋଚନାମୂଳକ ଏହି ପୁସ୍ତକଟି ଓଡ଼ିଶାର ବିଜ୍ଞ ପାଠକ ପାଠିକାଙ୍କ ଦ୍ୱାରା ସମାଦୃତ ହେଲେ ଆମର ଶ୍ରମ ସାର୍ଥକ ହେବ ।

ଭୁବନେଶ୍ୱର
୧, ଜାନୁଆରି, ୧୯୭୮

ମହେଶ ପ୍ରସାଦ ଦାଶ
ସଭାପତି
ଓଡ଼ିଶା କଲ୍‌ଚରାଲ୍ ଫୋରମ୍

# ବିଷୟ ସୂଚୀ

# ଶ୍ରୀ ଜଗନ୍ନାଥ ସଂସ୍କୃତିର ପୃଷ୍ଠଭୂମି

ପୁରୁଷୋତ୍ତମ ଜଗନ୍ନାଥଙ୍କ ଆବିର୍ଭାବ ସମ୍ବନ୍ଧରେ ବହୁ କିମ୍ବଦନ୍ତୀ, ପୁରାଣ, ଗଳ୍ପ, ଶିଳାଲେଖ ଏବଂ ତାଳପତ୍ର ପୋଥି ଆଦିରୁ ପ୍ରାମାଣିକ ଉପାଦାନ ନେଇ ସେହି ଅପୌରୁଷେୟ ଦେବତାଙ୍କୁ ସନାକ୍ତ କରିବାର ଉଦ୍ୟମ କରାଯାଇଛି । ଏହା ବ୍ୟତୀତ ତାଙ୍କର ଆଦି ଉତ୍ସ ସମ୍ପର୍କରେ ଏବଂ ବିଶେଷକରି ଦାରୁବ୍ରହ୍ମଙ୍କ ସଂସ୍ଥାପନର ରହସ୍ୟ ଉଦ୍‌ଘାଟନ ନିମିତ୍ତ ଋକ୍‌ବେଦ ଓ ଅଥର୍ବବେଦୋକ୍ତ ସୂକ୍ତମାନଙ୍କର ଅବତାରଣା ମଧ୍ୟ କରାଯାଇଛି । ଏହି ସମସ୍ତ ଉଦ୍ୟମ ମୂଳରେ ଏକ ନୀରବଚ୍ଛିନ୍ନ ବିବର୍ତ୍ତନର ସୂତ୍ର ଉନ୍ମୋଚନ ପାଇଁ ପ୍ରଚେଷ୍ଟା ନିହିତ ଥିବାର ଦେଖିବାକୁ ମିଳେ । ନୀଳମାଧବ ଉପାଖ୍ୟାନ ଓ ଦାରୁବ୍ରହ୍ମ ଉପାସନାକୁ ସଂଯୋଗ କରିବା ପାଇଁ ବହୁ ଉଦ୍ୟମ ମଧ୍ୟ ହୋଇଛି । କିନ୍ତୁ ଏ ଯାବତ୍ କୌଣସି କଳ୍ପନା ସର୍ବସମ୍ମତ ରୂପେ ଗୃହୀତ ହୋଇପାରି ନାହିଁ ।

ଓଡ଼ିଶାର ଅତି ପ୍ରାଚୀନ ସାଂସ୍କୃତିକ ପୃଷ୍ଠଭୂମିରୁ ଏ ଦିଗରେ ଆଲୋଚନା କରିବା ଅସଙ୍ଗତ ହେବନାହିଁ । ଓଡ଼ିଶାର ଆଦ୍ୟ ସଂସ୍କୃତି ପ୍ରସ୍ତର ଅସ୍ତ୍ର ନିର୍ମାଣରେ ପର୍ଯ୍ୟବସିତ ଥିଲା । ଏହି ପ୍ରସ୍ତର ଅସ୍ତ୍ର ଦେବତା ଓ ପିତୃମାନଙ୍କ ସ୍ମୃତିରେ ଅର୍ପିତ ହେଉଥିଲା । ଅନ୍ତତଃ ନୂତନ ପ୍ରସ୍ତରଯୁଗ ସମୟକୁ ଏହା ବିସ୍ତୃତ ଭାବରେ ପ୍ରଚଳିତ ଥିଲା । ପିତୃମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ସ୍ମାରକୀ ଶ୍ମଶାନ ଭୂମିରେ ପ୍ରସ୍ତରଖଣ୍ଡ ପ୍ରୋଥିତ କରାଇ ଏବଂ ପରେ ଗ୍ରାମ ମଧ୍ୟରେ ଅଥବା ପ୍ରାନ୍ତରରେ ଥିବା ବୃକ୍ଷ ମୂଳ, ଉଚ୍ଚଭୂମି ଆଦି ଉପରେ ବୃହତ୍ ଶିଳାଖଣ୍ଡ ପୋତି ଏହା କରାଯାଉଥିଲା । ଏହାର ପ୍ରଥା ଅଦ୍ୟାବଧି ଶବର, କନ୍ଧ, କୋହ୍ଲ, ବଣ୍ଡା, ପରଜା, ଗଦବା ଓ ଗଣ୍ଡ ଆଦି ଗୋଷ୍ଠୀରେ ଦେଖିବାକୁ ମିଳିଥାଏ । ସେହିପରି ଦେବତାମାନଙ୍କୁ ପ୍ରକୃତିର ବିଭିନ୍ନ ବିଭବ, ଯଥା—ସୂର୍ଯ୍ୟ, ପର୍ବତ, ଝରଣା, ଭୂମି ବା ଶସ୍ୟକ୍ଷେତ୍ର ଆଦି ରୂପରେ ପୂଜା କରାଯାଉଥିଲା । ଗ୍ରାମମାନଙ୍କର ସ୍ୱତନ୍ତ୍ର ଆସ୍ଥାନ ବିଶେଷକରି ବୃକ୍ଷମୂଳରେ ଏପରି ପୂଜାଦିର ବ୍ୟବସ୍ଥା ଥିଲା । ଏହି ଦେବଦେବୀଙ୍କର ପ୍ରତୀକ ରୂପେ ପ୍ରସ୍ତର ଖଣ୍ଡ ସ୍ଥାପନ କରାଯାଇ ପଥରରେ ପ୍ରସ୍ତୁତ ଅସ୍ତ୍ରଶସ୍ତ୍ର ତଥା ବ୍ୟବହାର୍ଯ୍ୟ ଉପକରଣ ଉତ୍ସର୍ଗ କରାହେଉଥିଲା । ନୂତନ ପ୍ରସ୍ତର ଯୁଗର ଚିକ୍‌କଣ ତଥା ମସୃଣ ଅସ୍ତ୍ରଶସ୍ତ୍ର ଏଠାରେ ଅର୍ପିତ ହୋଇ କାଳକ୍ରମେ ତାର ଅବଲମ୍ବନରେ

ସମ୍ପୂର୍ଣ ଶାଳଗ୍ରାମ ମୂର୍ତ୍ତିମାନ ପୂଜିତ ହୋଇଥିଲେ । ସେହିପରି ଶ୍ମଶାନ ଭୂମିର ସ୍ମାରକୀ ମଧ୍ୟ ବଡ଼ବଡ଼ ଢଙ୍ଗର ଦଣ୍ଡ ସଦୃଶ ବୃହତ୍ କାଷ୍ଠ ତଥା କ୍ଷୁଦ୍ର ପ୍ରସ୍ତରଖଣ୍ଡ ହୋଇଥିଲା । ଏହା ହିଁ କାଳକ୍ରମେ ଶ୍ମଶାନବାସୀ ଶିବରୂପେ କଥିତ ତଥା ପୂଜିତ ହୋଇଥିଲା । ଏହା ସମଗ୍ର ଭାରତ ତଥା ଓଡ଼ିଶାରେ ମଧ୍ୟ ପ୍ରଚଳିତ ଥିଲା । ସେହିପରି ଆଦିମ କାଳରେ ମାତୃପୂଜାର ପ୍ରତୀକ ରୂପେ ଯୋନି ପୂଜା ପ୍ରଚଳିତ ଥିଲା । ଶିବ ବା ଲିଙ୍ଗର ପ୍ରତୀକ ସହିତ ଏହି ପୂଜାର ସମନ୍ୱୟ ହୋଇ ଶକ୍ତି ସଂଯୁକ୍ତ ଲିଙ୍ଗପୂଜାର ପ୍ରଚଳନ କରାଯାଇଥିଲା । ମାତ୍ର, କାଳକ୍ରମେ ଏହି ସମନ୍ୱୟ ଦେବତା କେବଳ ଶିବରୂପେ କଥିତ ହେବା ଫଳରେ ସ୍ୱତନ୍ତ୍ର ମାତୃକା ମୂର୍ତ୍ତିର କଳ୍ପନା ତଥା ପୂଜା ହୋଇଥିବା ମନେହୁଏ । ଆଦିମ ଅବସ୍ଥାରେ ଏହି ମାତୃପୂଜା ଭୂପୂଜା ଅଥବା ଏକ ପ୍ରସ୍ତର ସ୍ତମ୍ଭମୂର୍ତ୍ତି ଆକାରରେ ହେଉଥିବା ସମ୍ଭବ । ଏହାର ଗ୍ରୁପ୍ସା ଅଦ୍ୟାବଧି କନ୍ଧ ତଥା ସେମାନଙ୍କର ବନ୍ଧୁ ଉପଗୋଷ୍ଠୀ ମଧ୍ୟରେ ଦେଖିବାକୁ ମିଳେ ।

ମହାଭାରତର ବର୍ଣ୍ଣନା ମତେ ପୁରୁଷୋତ୍ତମ କ୍ଷେତ୍ରରେ ଗୋଟିଏ ମହାବେଦୀ ଥିଲା ଓ ତାହାକୁ ଦର୍ଶନ କରିବା ଏକ ପୁଣ୍ୟ କାର୍ଯ୍ୟ ରୂପେ ଅଭିହିତ ହେଉଥିଲା । ସମ୍ଭବତଃ ଏଠାରେ ଗୋଟିଏ ଉଚ୍ଚଭୂମି ଉପରେ ମହାଶ୍ମଶାନଟିଏ ଥିଲା । ତାହାକୁ ବୃହତ୍ ପ୍ରସ୍ତର-ଯୁଗୀୟ ସଂସ୍କୃତି (Megalittic monument) କୁହାଯାଇପାରେ । କ୍ରମେ ସେଠାରେ ଅଣଆଦିବାସୀଙ୍କ ଶିବ ତଥା ଆଦିବାସୀଙ୍କ ପିତୃପୂଜା ହିଁ ପ୍ରଚଳିତ ଥିଲା । ମହାଶ୍ମଶାନ ନିକଟରେ ଗୋଟିଏ ବୃକ୍ଷ ଥିଲା ଓ ତା ମୂଳରେ ନୂତନ ପ୍ରସ୍ତରଯୁଗୀୟ ଚିକ୍କଣ ଓ ମସୃଣ ଉପକରଣ ଦେବତା ଅଥବା ଶାଳଗ୍ରାମ ବା ନାରାୟଣ ରୂପେ ପୂଜିତ ହେଉଥିଲେ । ଫଳରେ ତାହା ଅଦିବାସୀଙ୍କ ଦ୍ୱାରା ଦେବତା ଓ ଅନ୍ୟମାନଙ୍କ ଦ୍ୱାରା ନାରାୟଣ ରୂପେ ପୂଜିତ ହେବାରେ କୌଣସି ବାଧା ନଥିଲା । ହୁଏତ ସମଗ୍ର ଭାରତର ଧର୍ମ ଜୀବନରେ ଏହା ହିଁ ପରିଲକ୍ଷିତ ହୋଇଥିଲା । ଏହି ପୂଜା ଅନୁସରଣ କରୁଥିବା ଶବର ଓ କନ୍ଧ ତଥା ଅନ୍ୟ ଅଣଆଦିବାସୀମାନେ ଏହାକୁ ପୂଜା କରିବାବେଳେ ନିଜ ନିଜର ଆକାଂକ୍ଷା ଓ ଭୟ ତଥା ସଂଖ୍ୟାନ୍ୟୂନତା ଦୃଷ୍ଟିରୁ ଏକକ ଭାବରେ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଶବରମାନଙ୍କୁ ଗୋଟିଏ ମୁଖ୍ୟ ଗୋଷ୍ଠୀରୂପେ ଗ୍ରହଣ କଲେ ସେମାନଙ୍କ ଗୋଷ୍ଠୀର ପୁଲିନ୍ଦ, ଶୈଳଜ ଗୋଟିଏ ଗୋଟିଏ ଉପଗୋଷ୍ଠୀ ରୂପେ ଚିହ୍ନିତ ହୋଇପାରନ୍ତି । ସେହିପରି ଖୋଣ୍ଡ ଗୋଷ୍ଠୀରୁ ଶବରମାନେ କ୍ରମେ ସ୍ୱତନ୍ତ୍ର ହୋଇଥିବାର ମନେହୁଏ । ସେହିପରି ମୁଖ୍ୟ କନ୍ଧଗୋଷ୍ଠୀରୁ ନଳ, ଭଞ୍ଜ, ଶୁଲ୍କି ଓ ତୁଙ୍ଗ ଆଦି ସାଂସ୍କୃତିକ ଭିତ୍ତିରେ ଏକ ମୁଖ୍ୟ ଗୋଷ୍ଠୀର ଅଂଶବିଶେଷ ଅଟନ୍ତି ।

ପୁରାଣମାନଙ୍କରୁ ଜଣାଯାଏ—ଇନ୍ଦ୍ରଦ୍ୟୁମ୍ନଙ୍କ ପୂର୍ବରୁ, ଇନ୍ଦ୍ରନୀଳାଖ୍ୟ ବିଗ୍ରହ ପୂଜା ପାଇ ଆସୁଥିଲା । ତାଙ୍କୁ ଦର୍ଶନକରି ଶବର, ଖୋଣ୍ଡ, ବ୍ରାହ୍ମଣ ପ୍ରଭୃତି ଚତୁର୍ଭୁଜ

ହୋଇ ଶ୍ୱେତାଖ୍ୟ ଭବନକୁ ଚାଲିଯାଉଥିବାରୁ ଯମରାଜ ଭଗବାନଙ୍କୁ ତାହା ଅଦୃଶ୍ୟ କରାଇବା ପାଇଁ ଅନୁରୋଧ କଲେ । ବିଷ୍ଣୁ ପ୍ରତିମା ବାଲୁକାରାଶିରେ ଅଦୃଶ୍ୟ ହେବାପରେ ଇନ୍ଦ୍ରଦ୍ୟୁମ୍ନ ତାଙ୍କୁ ସ୍ଥାପନ କରିବା ପାଇଁ ଯାଗଯଜ୍ଞ କରି ଉତ୍କଳ, କଳିଙ୍ଗ ଓ କୋଶଳ ରାଜାଙ୍କ ସାହାଯ୍ୟରେ ମନ୍ଦିର ନିର୍ମାଣ କରାଇ ସଙ୍କର୍ଷଣ, ସୁଭଦ୍ରା ଓ ଜଗନ୍ନାଥ ମୂର୍ତ୍ତିର ପ୍ରତିଷ୍ଠା କଲେ । ସ୍କନ୍ଦ ପୁରାଣରେ ଏହାର ପୂର୍ବ ବିଷୟ ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ଉପରୋକ୍ତ ଉପାଖ୍ୟାନକୁ ବିସ୍ତୃତ ଭାବରେ ବ୍ୟକ୍ତ କରାଯାଇଛି । ପୂର୍ବ ବୃତ୍ତାନ୍ତରେ କୁହାଯାଇଛି ଯେ ନୀଳଗିରି ନାନା ବନରେ ଆବୃତ୍ତ ଥିଲା । ଏହି ଗିରିରେ ଗୋଟିଏ କଳ୍ପବୃକ୍ଷ ଥିଲା । ଏହା ନିକଟରେ ରୋହିଣୀ କୁଣ୍ଡଟିଏ ମଧ୍ୟ ଥିଲା । କୁଣ୍ଡର ପୂର୍ବ ଦିଗରେ ନୀଳକାନ୍ତମଣି ନିର୍ମିତ ଭଗବାନ ବାସୁଦେବଙ୍କ ମୂର୍ତ୍ତି ବିଦ୍ୟମାନ ଥିଲା । ସେଠାରେ ଗୋଟିଏ ଶବର ପଲ୍ଲୀ ଥିଲା ଓ ନରସିଂହ ବିଗ୍ରହ ଗୋଟିଏ ବୃକ୍ଷ ମୂଳରେ ପୂଜା ପାଉଥିଲେ । ଆଉ ମଧ୍ୟ ନୀଳକଣ୍ଠ, ନୃସିଂହ, ଅର୍ଦ୍ଧାଶିନୀ, ମାର୍କଣ୍ଡେଶ୍ୱର, କପାଳମୋଚନ, ଯମେଶ୍ୱର, ଅଷ୍ଟଶମ୍ଭୁ ଦେବତାମାନେ ଏହି କ୍ଷେତ୍ରରେ ପୂଜା ପାଉଥିଲେ । ଇନ୍ଦ୍ରଦ୍ୟୁମ୍ନଙ୍କ ପରେ ସ୍ଥାନର ମାହାତ୍ମ୍ୟ ଜଗତରେ ପ୍ରଚାରିତ ହେଲା ଓ କ୍ଷେତ୍ରର ଉନ୍ନତି ହେଲା ।

ପୁରାଣମାନଙ୍କରେ ଇନ୍ଦ୍ରନୀଳମଣି ପ୍ରତିମାର ବର୍ଣ୍ଣନା ଥିଲେ ମଧ୍ୟ ତାଙ୍କର ଅବୟବ ତଥା ଆକୃତି ବିଷୟରେ କୌଣସି ସୂଚନା ମିଳେ ନାହିଁ । ଆଦିବାସୀ ସଂସ୍କୃତିର ବିକାଶ ପରେ ପରେ ଜୈନମାନେ ଓଡ଼ିଶାର ଧର୍ମ ଜୀବନରେ ମୁଖ୍ୟସ୍ଥାନ ଅଧିକାର କରିଥିଲେ । ଏମାନେ ମଧ୍ୟ ମୋକ୍ଷ ବା କୈବଲ୍ୟକୁ ପ୍ରାଧାନ୍ୟ ଦେଇଥିଲେ । ଏହାର ଆଦର୍ଶରେ ଜଗନ୍ନାଥ ମନ୍ଦିରର 'କୋଇଲି ବୈକୁଣ୍ଠ' ଏକ ମୋକ୍ଷକ୍ଷେତ୍ର ବା ସମାଧିକ୍ଷେତ୍ର ତଥା ମହାବେଦୀ ବା ବେଦୀ ଥିବାର ମନେହୁଏ । ତେଣୁ ଓଡ଼ିଶାର ସଂସ୍କୃତିରେ ମହାବେଦୀ ଉକ୍ତିରୁ ତାହା କୋଇଲି ବୈକୁଣ୍ଠ ରୂପେ ଜୈନମାନଙ୍କ ଦ୍ୱାରା ପ୍ରଚଳିତ ହୋଇଥିଲା । ଫଳେ ସେଠାରେ ଜୈନ ତୀର୍ଥଙ୍କରମାନଙ୍କର ପୂଜା ହୋଇଥିବାର ଅନୁମାନ କରାଯାଇପାରେ । କାରଣ କଳ୍ପବୃକ୍ଷ ବା ଅକ୍ଷୟବଟ, ରୋହିଣୀ-କୁଣ୍ଡ ଆଦିର ସ୍ଥାପନାରୁ ଜଣାଯାଏ ଯେ ଏଠାରେ ଆଦିନାଥ ଋଷଭଦେବଙ୍କ କେବଳ ବୃକ୍ଷ 'ବଟ' ଶୋଭାପାଉଥିଲା ଓ ଅଜିତନାଥଙ୍କ ଯକ୍ଷୀ ରୋହିଣୀଙ୍କ ନାମାନୁସାରେ ଏଠାରେ ରୋହିଣୀକୁଣ୍ଡର ସୃଷ୍ଟି ହୋଇଥିଲା । ତେଣୁ କାଳକ୍ରମେ ଏହି କଳ୍ପବୃକ୍ଷର ଆରାଧନାକୁ ଅପୌରୁଷେୟ ଦାରୁର ଆରାଧନାରେ ରୂପାନ୍ତରିତ କରାଯାଇଅଛି । ରୋହିଣୀକୁଣ୍ଡର ସ୍ଫଟିକ ପାବଚ୍ଛଶ୍ରେଣୀର ବର୍ଣ୍ଣନାରୁ ସ୍ଫଟିକ ପ୍ରସ୍ତର (Quartzite) ର ନିର୍ମାଣ ସହିତ ନୀଳ ସ୍ଫଟିକ ପ୍ରସ୍ତରର ମୂର୍ତ୍ତି ବା ସଙ୍କେତ (Epidioritic Quartzite)ର ପୂଜା ସେଠାରେ ହେଉଥିବା ସ୍ୱୀକୃତ ହୁଏ । ପାର୍ଶ୍ୱନାଥଙ୍କ ସମୟରେ ଶବର, କନ୍ଧଆଦି ଆଦିମ ଶ୍ରେଣୀର ଲୋକମାନେ ବା ନୀଚଜାତିସ୍ଥ ରୂପେ ବ୍ୟକ୍ତ

ହୋଇଥିବା ଅଧିବାସୀମାନେ ଜୈନଧର୍ମରେ ଦୀକ୍ଷିତ ହୋଇଥିବାରୁ ସେମାନେ ଏପରି ସଂକେତରେ ପୂଜା କରୁଥିଲେ । ପାର୍ଶ୍ୱନାଥଙ୍କ ସମୟରେ ଓଡ଼ିଶାର ରାଜା କରକଣ୍ଡୁ ତାଙ୍କର ଶିଷ୍ୟ ହୋଇଥିଲେ । ତାଙ୍କଦ୍ୱାରା ବିଭିନ୍ନ ସ୍ଥାନରେ ଜୈନ-ମନ୍ଦିର ଓ ଗୁମ୍ଫାସବୁ ନିର୍ମିତ ହୋଇଥିଲା । ସେହି ମନ୍ଦିରଗୁଡ଼ିକରେ ମଧ୍ୟ ଜୀନେନ୍ଦ୍ରମାନଙ୍କର ମୂର୍ତ୍ତି ସ୍ଥାପିତ ହୋଇ ପୂଜିତ ହେଉଥିଲେ । ତେଣୁ କରକଣ୍ଡୁଙ୍କ ସମୟରେ ଏହି ଜୀନେନ୍ଦ୍ରମାନଙ୍କ ସମ୍ମାନାର୍ଥେ ପୁରୁଷୋତ୍ତମ ଜଗନ୍ନାଥଙ୍କ କ୍ଷେତ୍ର ନୀଳଗିରିରେ ରୋହିଣୀକୁଣ୍ଡ, ମାର୍କଣ୍ଡେୟ ପୁଷ୍କରିଣୀ, ମାର୍କଣ୍ଡେଶ୍ୱର ସାହି ତଥା ଜୀନନାଥଙ୍କ ମୂର୍ତ୍ତିର ଆଦ୍ୟ ପ୍ରତିଷ୍ଠା ହୋଇଥିବା ମନେହୁଏ । ପାର୍ଶ୍ୱନାଥଙ୍କ ସମୟ ଖ୍ରୀପୂର୍ବ ୮୨୦ରୁ ଖ୍ରୀଷ୍ଟପୂର୍ବ ୭୫୦ ମଧ୍ୟରେ ସ୍ଥିରୀକୃତ ହୋଇଅଛି । ଏହି ସମୟ ସହିତ କରକଣ୍ଡୁଙ୍କ ସାମୟିକତା ପ୍ରମାଣିତ ହେଉଥିବାରୁ ଏହାକୁ ଓଡ଼ିଶାର ଆଦ୍ୟ ନିର୍ମାଣକାଳ ରୂପେ ଗ୍ରହଣ କରାଯାଇପାରେ । କରକଣ୍ଡୁଙ୍କ ସମୟରେ ଜୈନଧର୍ମ ଓଡ଼ିଶାର ରାଷ୍ଟ୍ରଧର୍ମ ଓ ଜୀନନାଥ ଓଡ଼ିଶାର ରାଷ୍ଟ୍ରୀୟ ଦେବତା ରୂପେ ପୂଜିତ ହୋଇଥିବା ଅନୁମିତ ହୁଏ । ତେଣୁ ଜଗନ୍ନାଥ ବା ବିଷ୍ଣୁଙ୍କ ନାମ ସହିତ ଜଡ଼ିତ ଥିବା ମାରକଣ୍ଡ ଋଷି ଏହି କରକଣ୍ଡୁ ହେବା ସମ୍ଭାବନା । ନନ୍ଦରାଜ ଓଡ଼ିଶା ଜୟକରି ଜୀନନାଥଙ୍କୁ ନେଇଯିବା ପର୍ଯ୍ୟନ୍ତ ଲୋକମୁଖରେ କରକଣ୍ଡୁ ବା ମାରକଣ୍ଡଙ୍କ ଗୌରବ ପରିବ୍ୟାପ୍ତ ହୋଇଥିଲା । କିନ୍ତୁ ଏହାପରେ ଓଡ଼ିଶାର ନଗ୍ନ ଆଦିବାସୀ ସମାଜରେ ଜୀନପୂଜା ମ୍ଳାନ ହୋଇନଥିଲା କି କରକଣ୍ଡୁ ଲୋକମୁଖରେ ବିସ୍ମୃତ ହୋଇନଥିଲେ । ଏହି ପୂଜା ଓ ଧର୍ମାନୁସରଣ ମୌର୍ଯ୍ୟ ଅଶୋକଙ୍କ ପର୍ଯ୍ୟନ୍ତ ଅବ୍ୟାହତ ଥିଲା । ମାତ୍ର ଅଶୋକ ବୌଦ୍ଧ ଥିବାରୁ ଜୈନଧର୍ମ ପରିବର୍ତ୍ତେ ବୌଦ୍ଧଧର୍ମର ବ୍ୟାପକ ପ୍ରଚଳନ କରିବାପାଇଁ ଉଦ୍ୟମ କରିଥିଲେ । ତେଣୁ ଜୈନଧର୍ମର ଆଦ୍ୟ ପୃଷ୍ଠପୋଷକ କରକଣ୍ଡୁ ଏହି ଧର୍ମମୂଢର ପ୍ଲାବନରେ ଅସହାୟ ହୋଇ କେବଳ କଳ୍ପବଟ ବା ବଟପତ୍ର ଅର୍ଥାତ କେବଳ ବୃକ୍ଷ 'ବଟ'ମୂଳମାନଙ୍କୁ ଆଶ୍ରାକରି ବଞ୍ଚୁଥିଲେ ବା ତିଷ୍ଠି ରହିଥିଲେ । ଏହି ଭ୍ରମମାନ ଅବସ୍ଥାରୁ ମାର୍କଣ୍ଡେୟ ମୁନିଙ୍କୁ ବିଷ୍ଣୁ ନିଜ ଗର୍ଭରେ ଆଶ୍ରୟ ଦେଇଥିବା ଭାଗବତରେ ବର୍ଣ୍ଣିତ ଅଛି । ଏଥିରୁ ଜୈନଧର୍ମକୁ ବୈଷ୍ଣବଧର୍ମ କବଳିତ କରିଥିବାର ସୂଚନା ପ୍ରକାଶପାଏ । କିନ୍ତୁ ପରବର୍ତ୍ତୀ କାଳରେ ରଚିତ ପଦ୍ମ, ବ୍ରହ୍ମ, ମତ୍ସ୍ୟ, ସ୍କନ୍ଦ ଓ ମହାଭାରତର ବର୍ଣ୍ଣନା ମତେ ମାର୍କଣ୍ଡେୟ ବିଷ୍ଣୁଗର୍ଭରୁ ବାହାରି ତାଙ୍କଠାରୁ ମାୟାତତ୍ତ୍ୱ ବୁଝିଥିଲେ । ଆଉ ମଧ୍ୟ ମାର୍କଣ୍ଡେୟଙ୍କର ଯେଉଁ ଅଳ୍ପାୟୁତ୍ୱର ବର୍ଣ୍ଣନା ପୁରୀ ଶ୍ରୀମନ୍ଦିର ମଧ୍ୟରେ ଥିବା ମାର୍କଣ୍ଡେଶ୍ୱର ଶିବମନ୍ଦିରର କିଂବଦନ୍ତୀରେ ପ୍ରତିଫଳିତ ହୁଏ, ତାହା ବୌଦ୍ଧଧର୍ମ କର୍ତ୍ତୃକ ଜୈନଧର୍ମର ସଂକଟ କାଳରେ ଘଟିଥିବା ଏବଂ ପରବର୍ତ୍ତୀକାଳରେ ସେଥିରୁ ସେ ମହାଦେବ ବା ଶିବଙ୍କ କର୍ତ୍ତୃତ୍ୱରୁ ବଞ୍ଚିଥିବା ସୂଚିତ ହୁଏ । କିନ୍ତୁ ଏହି ଉପାଖ୍ୟାନ ପରେ ପରିବର୍ତ୍ତିତ ହୋଇ ବିଷ୍ଣୁ ବା ବୈଷ୍ଣବଧର୍ମ କର୍ତ୍ତୃକ ମାର୍କଣ୍ଡେୟ ରକ୍ଷାପାଇଥିବାର ପରୋକ୍ଷ ସୂଚନା ନାରଦୀୟ ପୁରାଣରୁ ମିଳେ । ପୂର୍ବୋକ୍ତ କିମ୍ବଦନ୍ତୀ ଶୈବ ଓ ଜୈନ ଧର୍ମର ସଂଘର୍ଷ ସ୍ଥାନରେ ପରସ୍ପର

ନିର୍ଭରଶୀଳ ତଥା ସେମାନଙ୍କର ସମନ୍ୱୟ ସୁଦୃଢ଼ ହେବା ସଙ୍ଗେ ସଙ୍ଗେ ପରବର୍ତ୍ତୀ କିମ୍ବଦନ୍ତୀ ତାହାକୁ ବୈଷ୍ଣବଧର୍ମ ସହିତ ସଂପୃକ୍ତ କରି ତାହାର ସମନ୍ୱୟ ଆଣିବାର ଉଦ୍ୟମ ଦର୍ଶାଏ । ଏହା ହିଁ ପରବର୍ତ୍ତୀ ପର୍ଯ୍ୟାୟରେ ଜୈନ, ଶୈବ ଓ ବୈଷ୍ଣବ ଧର୍ମର ସଂଘର୍ଷ ସ୍ଥାନରେ ସମନ୍ୱୟର ପ୍ରଚେଷ୍ଟା ରୂପେ ଗୃହୀତ ହୋଇପାରେ । ଓଡ଼ିଶାର ଧର୍ମ ଜୀବନରେ ମୁଖ୍ୟତଃ ବୌଦ୍ଧଧର୍ମ ସହିତ ପର୍ଯ୍ୟାୟକ୍ରମେ ଜୈନ, ଶୈବ ଓ ବୈଷ୍ଣବଧର୍ମର ସଂଘର୍ଷ ଏହି ସମନ୍ୱୟର ସୂଚକ ଏବଂ ଏହି ତନ୍ତ୍ରଧର୍ମର ମୁଖ୍ୟ ଦେବତା ବ୍ରହ୍ମା, ଶିବ ଓ ବିଷ୍ଣୁଙ୍କ ତ୍ରିଗୁଣାତ୍ମକ ସ୍ଥିତିର ପ୍ରଚାର କିମ୍ବା ଭିତ୍ତି ହୋଇଥିବାର ମନେହୁଏ । ଫଳରେ ଓଡ଼ିଶାର ପରବର୍ତ୍ତୀ ଧର୍ମଜୀବନର ସଂଘର୍ଷ କେବଳ ବୈଷ୍ଣବ ଓ ବୌଦ୍ଧ ଧର୍ମର ସଂଘର୍ଷ ରୂପେ ପ୍ରତିଭାତ ହୋଇଥାଏ ।

ଅଶୋକଙ୍କ (ଖ୍ରୀଷ୍ଟପୂର୍ବ ୨୬୧)ପରେ ବୌଦ୍ଧଧର୍ମ ପ୍ରତି ଓଡ଼ିଶାର ଆନୁଗତ୍ୟ ନଥିଲେ ମଧ୍ୟ ଏହାର ଦନ୍ତପୂଜା ଓ ମୃତାବଶେଷର ପୂଜା ଆଦିବାସୀଙ୍କ ମଧ୍ୟରେ ପ୍ରଚଳିତ ଶ୍ମଶାନ ବା ଅନ୍ୟାନ୍ୟ ପିତୃପୂଜାର ପ୍ରଥା ବହନ କରୁଥିବାରୁ ବିଶେଷ ପରିମାଣରେ ତାହାର ବିରୋଧ ହୋଇନଥିଲା । ତେଣୁ ଅଶୋକ ଓ ତାଙ୍କ ପରବର୍ତ୍ତୀ ବୌଦ୍ଧଶାସକମାନଙ୍କ ଦ୍ୱାରା ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାରରେ ଏକ ସୁଦୃଢ଼ ଭିତ୍ତି ପ୍ରତିଷ୍ଠିତ ହୋଇ ଜଗନ୍ନାଥଙ୍କ କ୍ଷେତ୍ରରେ ବୁଦ୍ଧଙ୍କର ମୃତାବଶେଷ ପୂଜିତ ହେଉଥିଲା । ଏହି ସମୟରେ ଜୀନନାଥ ବା ପରବର୍ତ୍ତୀକାଳର ଜଗନ୍ନାଥଙ୍କ ଅବସ୍ଥାନ କ୍ଷେତ୍ରରେ ଗୋଟିଏ ସ୍ତୂପ ବା ମହାବେଦୀ ନିର୍ମିତ ହୋଇଥିବା ଅସମ୍ଭବ ନୁହେଁ । ମନେହୁଏ, ଏହି ସମୟରେ ସୃଷ୍ଟି ହୋଇଥିବା ନବ୍ୟ ବୌଦ୍ଧଧର୍ମର ପ୍ରସାର ଓ ପ୍ରାଚୀନ ଜୈନଧର୍ମର ସଂରକ୍ଷଣରେ ଉପୁଜିଥିବା ସଂଘର୍ଷ ଖାରବେଳଙ୍କ ପର୍ଯ୍ୟନ୍ତ ଚାଲିଥିଲା । କିନ୍ତୁ ଏହା ସତ୍ତ୍ୱେ ଭସ୍ମାବଶେଷ ଓ ପିତୃପୂଜା କରୁଥିବା ଆଦିବାସୀମାନଙ୍କ ଧର୍ମରେ କୌଣସି ପ୍ରଭାବ ପଡ଼ିନଥିଲା । ଫଳତଃ ଏପରି ପୂଜା ଆଦି ସହିତ ଆଦିବାସୀ, କନ୍ଧ ଓ ଶବରମାନେ ସେମାନଙ୍କର ଶବ ସତ୍କାର ଏହା ନିକଟରେ ଯଥାବିଧି କରିପାରୁଥିଲେ । କୋଇଲି ବୈକୁଣ୍ଠର ଅଦୂରରେ ଥିବା ଶବରପଲ୍ଲୀରୁ କୋଇଲି ବୈକୁଣ୍ଠକୁ ଶବ ଆନୀତ ହୋଇ ସତ୍କାର କରାଯିବାରେ କୌଣସି ବାଧା ନଥିଲା । କିନ୍ତୁ ଏହା ସହିତ ବୌଦ୍ଧାବଶେଷର ପୂଜା ଓ ଜୈନ ସାଂସ୍କୃତିକ କେନ୍ଦ୍ରର ବିକାଶ ବାଧାପ୍ରାପ୍ତ ହୋଇନଥିଲା । ଜୈନ ଓ ବୌଦ୍ଧମାନେ ମଧ୍ୟ ପରସ୍ପର ମଧ୍ୟରେ ସୃଷ୍ଟି ହୋଇଥିବା ଧର୍ମ ସଂଘର୍ଷରେ ଶବର ଓ କନ୍ଧମାନଙ୍କୁ ପକ୍ଷଭୁକ୍ତ କରିବାପାଇଁ ଉଦ୍ୟମ କରୁଥିବାରୁ ସେମାନଙ୍କୁ ଏପରି ସୁବିଧା ଦେଇଥିବା ସମ୍ଭବ । ଏ ପ୍ରସଙ୍ଗରେ ନବକଳେବର ସମୟରେ କୋଇଲି ବୈକୁଣ୍ଠରେ ଲୌକିକ ମତରେ ଅନୁଷ୍ଠିତ ଠାକୁରମାନଙ୍କ ପୁରାତନ ବିଗ୍ରହ-ଗୁଡ଼ିକର ସତ୍କାର ସ୍ମରଣ କରାଯାଇପାରେ ।

କଳିଙ୍ଗ ସମ୍ରାଟ ଖାରବେଳ ଖ୍ରୀଷ୍ଟପୂର୍ବ ୧ମ ଶତକରେ ନନ୍ଦର ଅମିତ ବିକ୍ରମ ବଳରେ ଜୀନନାଥଙ୍କୁ ମଗଧରୁ ଆଣି ପୁନଃ ପ୍ରତିଷ୍ଠା କରିଥିବା ବିଷୟ ଖାରବେଳଙ୍କ ଶିଳାଲିପିରୁ ମିଳିଥାଏ । ତେଣୁ ସେହି ସମୟରେ ଜଗନ୍ନାଥଙ୍କ ମନ୍ଦିରର ଆସ୍ଥାନରେ ଥିବା ସ୍ତୂପର ଧ୍ୱଂସସାଧନ କରି ଖାରବେଳ ଏକ ଜୈନ ମନ୍ଦିର ନିର୍ମାଣ କରାଇ ମହା ଆଡ଼ମ୍ବର ସହକାରେ ଜୀନନାଥଙ୍କ ପ୍ରତିଷ୍ଠା ତଥା ପୂଜାର ବ୍ୟବସ୍ଥା କରିଥିଲେ । ଖାରବେଳ ପ୍ରାଚୀନ ଚେଦିରାଜ ବସୁଉପରିଚରଙ୍କ ଉତ୍ତରାଧିକାରୀ ଥିଲେ । ତେଣୁ ଏହି ବସୁବଂଶଜ ଖାରବେଳଙ୍କ ଜୀନନାଥ ପୂଜା ପରେ କମ୍ବୁଦନ୍ତୀରେ ଶବରରାଜ ବିଶ୍ୱାବସୁଙ୍କ ନୀଳମାଧବ ପୂଜା ରୂପେ ପୁରୁଷୋତ୍ତମ ଅଞ୍ଚଳରେ ମାଧବ ପୂଜାର ପ୍ରବର୍ତ୍ତନ ସେପର୍ଯ୍ୟନ୍ତ ହୋଇଥିବା ଖୁବ ସମ୍ଭବ । ଐତରେୟ ବ୍ରାହ୍ମଣରେ (ଖ୍ରୀଷ୍ଟପୂର୍ବ ୫୦୦) ଆନ୍ଧ୍ର, ପୁଣ୍ଡ୍ର, ଶବର, ପୁଳିନ୍ଦ ଓ ମୁତିବ ବା ମାଟିଆ-ମାନଙ୍କୁ ଏକତ୍ର ବର୍ଣ୍ଣନା କରାଯାଇଥିବାରୁ ସେମାନଙ୍କର ସଂସ୍କୃତିଗତ ସାମ୍ୟ ସୂଚିତ ହୁଏ । ଆନ୍ଧ୍ର ବା ସାତବାହନ ଓ ମେଘବାହନଙ୍କୁ ଏକ ବଂଶୋଦ୍ଭବ ରୂପେ ଗ୍ରହଣ କରାଯାଇଛି । ତେଣୁ ଚେଦିରାଜ ବା ମହାମେଘବାହନ ଖାରବେଳଙ୍କ ଜୀନନାଥ ପୂଜା ବିଶ୍ୱାବସୁ ଶବରଙ୍କ ଜଗନ୍ନାଥ ବା ନୀଳମାଧବ ପୂଜାରୂପ ପରବର୍ତ୍ତୀକାଳରେ ପ୍ରଚଳିତ ହେବାରେ କୌଣସି ବ୍ୟତିକ୍ରମ ହୋଇନାହିଁ ।

ମେଘବାହନମାନଙ୍କ ପରେ ସାତବାହନମାନେ ଖ୍ରୀଷ୍ଟୀୟ ୨ୟ ଶତକରେ ଓଡ଼ିଶା ଜୟ କରିଥିଲେ । ସେମାନଙ୍କ ଦ୍ୱାରା ବେଦୋକ୍ତ ଯଜ୍ଞାଦି ହେଉଥିଲା । ଏଥିରେ ଧର୍ମ, ଇନ୍ଦ୍ର, ସଙ୍କର୍ଷଣ, ବାସୁଦେବ, ଚନ୍ଦ୍ର, ସୂର୍ଯ୍ୟ, ଯମ, ବରୁଣ, କୁବେର ଓ ବାସବ (ଇନ୍ଦ୍ରଙ୍କଠାରୁ ପୃଥକ୍) ପୂଜିତ ହେଉଥିଲେ । ସାତବାହନମାନେ ପୁରୁଷୋତ୍ତମ କ୍ଷେତ୍ରରେ ଯମ, କୁବେର, ବରୁଣ ଆଦିଙ୍କ ପୂଜା ସହିତ ବାସୁଦେବ (ବିଷ୍ଣୁ)ଙ୍କ ପୂଜା ପ୍ରବର୍ତ୍ତନ କରିଥିବାର ସମ୍ଭାବନା ଅଧିକ ରହିଅଛି । ଯମଙ୍କ ପୂଜା ଶ୍ମଶାନରେ ଶିବପୂଜାର ସ୍ଥାନ ଅଧିକାର କରିଥିବା ଅସମ୍ଭବ ନୁହେଁ । ସାତବାହନ ଦେବତା ବାସୁଦେବ, କେଶବ (ବାସୁଦେବକୃଷ୍ଣ) ଓ ସଂକର୍ଷଣ ଆଦି ଭାଗବତ ଧର୍ମର ଅଙ୍ଗରୂପେ ଓଡ଼ିଶାରେ ଏବଂ ବିଶେଷକରି ପୁରୀଧାମରେ ପୂଜା ପାଇଥିବା ଅନୁମିତ ହୁଏ ।

ସାତବାହନଙ୍କ ପରେ ମାଦଳାପାଞ୍ଜି ବର୍ଣ୍ଣିତ ଓଡ଼ିଶାର ଯବନ ରାଜତ୍ୱକୁ କୁଷାଣ-ମୁରୁଣ୍ଡ ରାଜତ୍ୱ ରୂପେ ପ୍ରମାଣ କରାଯାଏ । ଶ୍ରେଷ୍ଠ କୁଷାଣ ନୃପତି କନିଷ୍କ ବୌଦ୍ଧ ଥିଲେ । ତାଙ୍କର ମାଠର ନାମଧାରୀ ଜଣେ ଅସାଧାରଣ ଧୀଶକ୍ତି ସମ୍ପନ୍ନ ମନ୍ତ୍ରୀ ଥିଲେ । କୁଶାଣ-ମାନଙ୍କ ପ୍ରଭାବ ବଙ୍ଗ, ଓଡ଼ିଶା ଓ ନେପାଳ ଆଦିରେ ବିସ୍ତୃତ ଥିବାର ପ୍ରମାଣ ମୁଦ୍ରା, ଶାସନ ତଥା କନିଷ୍କାଦି ସମ୍ବଳିତ ମୁଦ୍ରାମାନଙ୍କରୁ ମିଳିଥାଏ । ଏହି ରାଜ୍ୟଗୁଡ଼ିକ କୁଷାଣମାନଙ୍କର ମିତ୍ର କିମ୍ବା କରଦ ରାଜ୍ୟ ଥିଲା । ଓଡ଼ିଶାରେ ରାଜତ୍ୱ କରୁଥିବା ମାଠର ବଂଶର ଅବସ୍ଥିତିରୁ କୁଷାଣ ଅମାତ୍ୟ ମାଠରଙ୍କ ଅଧୀନରେ ଶାସିତ ହେଉଥିବା

ଓଡ଼ିଶାରେ କାଳକ୍ରମେ ମାଠରବଂଶ ବିକାଶଲାଭ କରିଥିବାର ମନେହୁଏ । କୁଷାଣ ରାଜତ୍ୱରେ ଶୈବ, ମିହିର ବା ସୂର୍ଯ୍ୟ ଏବଂ ବାସୁଦେବ-କୃଷ୍ଣଙ୍କ ପୂଜାର ପ୍ରଚଳନ ହୋଇଥିବା ଅଶ୍ୱଘୋଷ ଓ ନାଗାର୍ଜ୍ଜୁନ-ଆଦିଙ୍କ ଲେଖାରୁ ଜଣାଯାଏ । ହୁବିଷ୍କ (ଖ୍ରୀଷ୍ଟୀୟ ୧୧୯) ଓ ବାସୁଦେବ (ଖ୍ରୀଷ୍ଟୀୟ ୧୪୫ରୁ ୧୭୬) ବିଷ୍ଣୁ ଓ ଶିବଙ୍କ ପୂଜକ ଥିଲେ । ହୁବିଷ୍କଙ୍କ ସିଲ୍‌ମୋହରରୁ ଜଣାଯାଏ ଯେ ସେ ବିଷ୍ଣୁଙ୍କ ଭକ୍ତରୂପେ ସେଥିରେ ପ୍ରତିନିଧିତ୍ୱ କରୁଛନ୍ତି । ଚତୁର୍ଭୁଜ ବିଷ୍ଣୁଙ୍କ ପୂଜା ସର୍ବପ୍ରଥମେ ହୁବିଷ୍କ ଓ ପାଞ୍ଚାଳର ରାଜା ବିଷ୍ଣୁମିତ୍ର ଚଳାଇଥିଲେ ; ଆଉମଧ୍ୟ ଶଙ୍ଖ, ଚକ୍ର, ଗଦା, ପଦ୍ମ ପରିବର୍ତ୍ତେ ଗୋଟିଏ ମୁଦ୍ରିକା ସଦୃଶ ପଦାର୍ଥ ଧରିଥିବା ବିଷ୍ଣୁମୂର୍ତ୍ତି ହୁବିଷ୍କଙ୍କ ମୋହରରେ ଦେଖିବାକୁ ମିଳିଥାଏ । ମାଠରଙ୍କ ଅଧୀନରେ ଓଡ଼ିଶାରେ ବିଷ୍ଣୁ, ଶିବଆଦି ଉପାସନାର ବିକାଶ ଓ କୁଷାଣ ମାନଙ୍କ ଅଧୀନରେ ଏହି ପୂଜାର ବିକାଶରୁ ମନେହୁଏ ଯେ ତାହା କୁଷାଣମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା । ମାଠରମାନେ ପରମ ଦୈବତ, ପରମ ଭାଗବତ, ପରମ ମାହେଶ୍ୱର, ନାରାୟଣସ୍ୱାମୀ ଓ ଭଗବତ ସ୍ୱାମୀ ନାରାୟଣପାଦାନୁଧ୍ୟାତ ଆଦି ଉପାଧିରେ ଭୂଷିତ ହୋଇଥିବାରୁ ଏହା ସମର୍ଥିତ ହୁଏ । ତେଣୁ କୁଷାଣମାନଙ୍କ ପ୍ରଭାବରେ ମାଠରମାନେ ଚତୁର୍ଭୁଜ ବିଷ୍ଣୁଙ୍କ ପୂଜା ପୁରୁଷୋତ୍ତମରେ ଆରମ୍ଭ କରିଥିବା ଖୁବ୍ ସମ୍ଭବ । ମାଠରମାନେ କନିଷ୍କ ବା ବୌଦ୍ଧ-ଧର୍ମାନୁଗତ ପ୍ରସାଦରୁ ରାଜ୍ୟଲାଭ କରିଥିବାରୁ ଭଟ୍ଟାରକପାଦପ୍ରସାଦ ଏବଂ ଅମାତ୍ୟ ମାଠରଙ୍କ ବଂଶୋଦ୍ଭବ ହୋଇଥିବାରୁ ପିତୃପାଦାନୁଧ୍ୟାତ ରୂପେ ତାମ୍ରଶାସନମାନଙ୍କରେ ନିଜକୁ ପରିଚିତ କରାଇଛନ୍ତି । ଏଠାରେ ଓଡ଼ିଶାରେ ପ୍ରଚଳିତ ସଂକଳ୍ପ କାଳର ବିଷ୍ଣୁଙ୍କ ବର୍ଣ୍ଣନାର ଦୃଷ୍ଟାନ୍ତ ଦିଆଯାଇପାରେ । ତାହା—"ଓଁ ବିଷ୍ଣୁଃ, ବିଷ୍ଣୁଃ, ବିଷ୍ଣୁଃ, ଶୁକ୍ଳାମ୍ବରଧର ବିଷ୍ଣୁଃ, ଶଶିବର୍ଣ୍ଣଂ ଚତୁର୍ଭୁଜଂ, ପ୍ରସନ୍ନ ବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ, ସୂଚିତ ସକଳ କଲ୍ୟାଣଂ, ଭଜନଂ ଯତ୍ର ଯାସ୍ୟତେ, ପୁରୁଷୋତ୍ତମଜଂ ନିତ୍ୟଂ ବ୍ରଜାମିଶରଣଂ ହରିଂ, ଶଙ୍ଖ ଚକ୍ର ଗଦାପାଣେ ଦ୍ୱାରକା ନିଳୟାଚ୍ୟୁତଂ, ଗୋବିନ୍ଦ ପୁଣ୍ଡରିକାକ୍ଷଃ ରକ୍ଷମାଂ ଶରଣାଗତଂ ।—" ଏଥିରେ ବିଷ୍ଣୁଙ୍କୁ ନୀଳବର୍ଣ୍ଣ ରୂପେ ବର୍ଣ୍ଣନା କରାନଯାଇ ଶଶିବର୍ଣ୍ଣ ବା ଶୁଭ୍ରବର୍ଣ୍ଣ ଓ ଶଙ୍ଖଚକ୍ର ଗଦାପଦ୍ମ ପାଣି ରୂପେ ବର୍ଣ୍ଣନା କରାନଯାଇ ଶଙ୍ଖଚକ୍ର ଗଦା ପାଣି ରୂପେ ବର୍ଣ୍ଣନା କରାଯାଇ ଥିବାରୁ ତାଙ୍କୁ ଶ୍ୱେତକାନ୍ତ କୁଷାଣମାନଙ୍କର ଦେବତା ରୂପେ ଗ୍ରହଣ କରିବା ସମୀଚୀନ ହେବ । ତେଣୁ କୁଷାଣମାନଙ୍କର ଦୀର୍ଘ ରାଜତ୍ୱରେ ତଥା ମାଠରମାନଙ୍କ ସମୟରେ ଏହା ବିକଶିତ ହୋଇଥିବା ମନେହୁଏ । ପରେ ବିଗ୍ରହର ରୂପ ବା ରଙ୍ଗରେ ପରିବର୍ତ୍ତନ ହେଲେ ମଧ୍ୟ ସଙ୍କଳ୍ପରେ ସେହି ପରମ୍ପରା ସୁରକ୍ଷିତ ଅଛି । ଆଉମଧ୍ୟ ଏହାକୁ ଲକ୍ଷ୍ୟ କରି ପରବର୍ତ୍ତୀ କାଳରେ ପାପୀ କାକ ରୋହିଣୀ କୁଣ୍ଡରେ ସ୍ନାନ କରିବା ପରେ ବିଷ୍ଣୁ ବା ନୀଳମାଧବଙ୍କୁ ଦର୍ଶନ କରି ଚତୁର୍ଭୁଜ ହୋଇ ଦେବଲୋକକୁ ଗମନ କରିଥିବା କିମ୍ବଦନ୍ତୀ ପ୍ରଚଳିତ ହୋଇଥିବାର ସ୍ଥିର କରାଯାଇପାରେ । ଏଠାରେ ପରୋକ୍ଷରେ ବିଦେଶୀୟ କୁଷାଣମାନଙ୍କୁ ଅଥବା ସେମାନଙ୍କ ଅନୁଗତ ଦେଶଦ୍ରୋହୀ ମାଠରମାନଙ୍କୁ ପାପୀ

କାକ ରୂପରେ ବର୍ଣ୍ଣନା କରାଯାଇଅଛି । ସେଥିରେ ସେମାନଙ୍କ ବିଷ୍ଣୁଭକ୍ତ ଅଳୀକ ଓ ସେମାନେ ପାପୀ, ଏହାହିଁ ସମ୍ଭବତଃ ଶୈଳୋଦ୍ଭବମାନଙ୍କ ରାଜତ୍ୱରେ ପ୍ରସ୍ଫୁରିତ ହୋଇଅଛି । ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟରୁ ମଧ୍ୟ ସୂଚିତ ହୁଏ ଯେ ଶ୍ୱେତଗଙ୍ଗାରେ ସ୍ନାନ କରି ମତ୍ସ୍ୟ ଓ ଶ୍ୱେତମାଧବ ହରିଙ୍କ ମୂର୍ତ୍ତି ଦର୍ଶନ କଲେ ବାଜପେୟ ଯଜ୍ଞର ଫଳ ମିଳେ । ଏପରିକି କୈବଲ୍ୟକୁ ଅବଜ୍ଞା କରିବାର ଫଳ ମଧ୍ୟ ନିରାକୃତ ହୁଏ । ଏହାଦ୍ୱାରା ଶ୍ୱେତକାୟ କୃଷାଣମାନଙ୍କ ଦ୍ୱାରା ମତ୍ସ୍ୟ ଅବତାରର ସୃଷ୍ଟି ସହିତ ଜୈନ ଓ ଆଦ୍ୟ ବୈଷ୍ଣବ ବା ଭାଗବତ ଧର୍ମର ସଂଘର୍ଷ ସୂଚିତ ହୁଏ । ଆହୁରିମଧ୍ୟ ସେମାନଙ୍କ ପ୍ରତିଷ୍ଠିତ ବିଷ୍ଣୁ ଓ ଶ୍ୱେତଗଙ୍ଗା ପୁଷ୍କରିଣୀର ବର୍ଣ୍ଣନାରେ ଜୈନଧର୍ମର କୈବଲ୍ୟ ଦ୍ରୋହ ମଧ୍ୟ ବିଦୂଷିତ ହେଉଥିବାର ସୂଚନା ଏଥିରୁ ମିଳେ । ଏହି ସମୟରୁ ଆଦିବାସୀଙ୍କ ଦ୍ୱାରା ପୁରୁଷୋତ୍ତମର ମହାଶ୍ମଶାନରେ ପିତୃପୂଜା ତଥା ଶବ ସତ୍କାରର ପରିସମାପ୍ତି ହୋଇଥିବା ସ୍ଥିର କରାଯାଇପାରେ । ତେଣୁ ପୁରାଣକାରମାନେ ଯମଙ୍କର ବିଷ୍ଣୁଙ୍କୁ ଏ କ୍ଷେତ୍ରରେ ଶବ ସତ୍କାର କରିବା ଅଧିକାରରୁ ବଞ୍ଚିତ ନ କରିବା ପାଇଁ ପରୋକ୍ଷ ଅନୁରୋଧ କରିଥିବା ମନେହୁଏ । ଏହାମଧ୍ୟ ଦୁଇଗୋଟି ସଂସ୍କୃତିର ସଂଘର୍ଷ ଏବଂ ବିଜିତ ସଂସ୍କୃତିର ବିଜୟୀ ସଂସ୍କୃତି ନିକଟରେ ଅଧିକାର ରକ୍ଷା ପାଇଁ ବିନୀତ ନିବେଦନ ଭଳି ମନେହୁଏ ।

ଶିଶୁପାଳଗଡ଼ ଭୂଖୋଦନରୁ ମିଳିଥିବା ମହାରାଜ ରାଜାଧିରାଜ ଧର୍ମଦାମଧରଙ୍କ ଦ୍ୱାରା ପ୍ରଚଳିତ କୁଷାଣମୁଦ୍ରାକୃତ ସ୍ୱର୍ଣ୍ଣମୁଦ୍ରାରୁ ବାସୁଦେବଙ୍କ ପୂଜା ସମର୍ଥିତ ହୁଏ । ଏ ପ୍ରସଙ୍ଗରେ ପଦ୍ମପୁରାଣୋକ୍ତ କାର୍ତ୍ତିକ ମାହାତ୍ମ୍ୟକୁ ବିଚାରକୁ ନିଆଯାଇପାରେ । ସେଥିରେ ସାଗର ଗର୍ଭରୁ ଜାତ ରାକ୍ଷସରାଜ ଜଳନ୍ଧରଙ୍କ ଦ୍ୱାରା ବିଷ୍ଣୁ ଓ ଲକ୍ଷ୍ମୀ ବନ୍ଦୀ ଭାବରେ ପୂଜିତ ହେଉଥିବା ଉଲ୍ଲେଖ ଅଛି । ଜଳନ୍ଧରଙ୍କୁ ଧର୍ମଦାମଧର ତଥା ମାଦଳାପାଞ୍ଜି ବର୍ଣ୍ଣିତ ରକ୍ତବାହୁଙ୍କ ସହିତ ଏକୀକୃତ କରାଯାଇପାରେ । ଆଉମଧ୍ୟ ଏହି ଧର୍ମଦାମଧର ମୁରୁଣ୍ଡ ରାଜ ରୂପେ ଚିହ୍ନିତ ହୋଇ ପାରନ୍ତି । ଏହାର ଗୁସ୍ତା କାର୍ତ୍ତିକ ମାସରେ ବିଧବାମାନେ ତୁଳସୀ ମୂଳରେ ଲେଖୁଥିବା ଓ ପୂଜା କରୁଥିବା ଦାମୋଦରଙ୍କ ପ୍ରତିକୃତିରେ ପ୍ରତିଫଳିତ ହୁଏ । ସମ୍ଭବତଃ ତାଙ୍କ ସମୟରେ ସାଗର ଦୁହିତା ଲକ୍ଷ୍ମୀଙ୍କ ପୂଜାର ପ୍ରଚଳନ ହୋଇଥିଲା ଓ ରାଧା ଦାମୋଦରଙ୍କ ପୂଜାର ପ୍ରବର୍ତ୍ତନ ପର୍ଯ୍ୟନ୍ତ ଲକ୍ଷ୍ମୀ ଦାମୋଦରଙ୍କ ପୂଜା ପ୍ରଚଳିତ ଥିଲା ।

ଅଶନପାଟ ଶିଳାଲିପିର ଶତ୍ରୁଭଞ୍ଜ ଶତ ଶତ ଯୁଦ୍ଧରେ ଦେବପୁତ୍ର ବ କୁଷାଣମାନଙ୍କୁ ପରାଭୂତ କରିଥିବାରୁ ସେମାନଙ୍କ ସହିତ ସମ୍ପୃକ୍ତ ଥିବା ମାଠର ଓ ଚତୁର୍ଭୁଜ ବିଷ୍ଣୁ ପୂଜାର ଉଚ୍ଛେଦ ତାଙ୍କଦ୍ୱାରା ହୋଇଥିବା ଖୁବ୍ ସମ୍ଭବ । କାରଣ ସେ ନିଜକୁ

ସୂର୍ଯ୍ୟଭଳି ତେଜସ୍ୱୀ, ଧନଦ ବା କୁବେର ଓ କଳ୍ପବଟ ସଦୃଶ ଅଶେଷ ଗୁଣର ଅଧିକାରୀ ଏବଂ ମୃଗାନ୍ତଚଳ— କୀର୍ତ୍ତିର ପ୍ରବର୍ତ୍ତକ ରୂପେ ବ୍ୟକ୍ତ କରିଥିବାରୁ ଏହା ଅନୁମିତ ହୋଇପାରେ । ମନେହୁଏ ତାଙ୍କ ସମୟରେ ଶଶିବର୍ଣ୍ଣ ବିଷ୍ଣୁଙ୍କ ପୂଜାର ପରିସମାପ୍ତି ଘଟିଥିଲା । ସେ ନିଜେ ମାହେଶ୍ୱର ଥିବା ଅଣନପାଟ ଶିଳାଲେଖ ଉପରେ ପ୍ରସ୍ତୁତ ଦେବତା 'ନଟରାଜ ଶିବ'ଙ୍କ ବିଗ୍ରହରୁ ସ୍ଥିର କରାଯାଇପାରେ । ସେ ପୁରୁଷୋତ୍ତମରେ କଳ୍ପବଟ ମୂଳରେ ଥିବା ଶିବ ମନ୍ଦିରର ପ୍ରତିଷ୍ଠାତା ହୋଇପାରନ୍ତି । ସେ ଶିବ ଉପାସନା ସହିତ କଳ୍ପବୃକ୍ଷ ସଦୃଶ ଅଶେଷ ଗୁଣର ଅଧିକାରୀ ରୂପେ ନିଜକୁ କହୁଥିବାରୁ ଏପରି ଅନୁମାନ ସମୀଚୀନ ମନେହୁଏ । ଶିଶୁଭଞ୍ଜ ଉଭୟ ତୋଷଳୀରେ ଲକ୍ଷ ଲକ୍ଷ ସଂଖ୍ୟାରେ ଗୋରୁ ଓ ସ୍ୱର୍ଣ୍ଣମୁଦ୍ରା ଦାନ କରିଥିବାରୁ ତାହାକୁ ପୁରୀର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ନିକଟରେ ଇନ୍ଦ୍ରଦ୍ୟୁମ୍ନଙ୍କ ଗୋଦାନ କିଂବଦନ୍ତୀରେ ପରବର୍ତ୍ତୀ କାଳରେ ରୂପାୟିତ କରାଯାଇଛି । କାରଣ ଅନ୍ୟ କୌଣସି ରାଜା ତୋଷଳୀରେ ଏତେ ଅଧିକ ସଂଖ୍ୟାରେ ଗୋରୁ ଦାନ କରିଥିବାର ଲେଖାଗତ ପ୍ରମାଣ ମିଳିନାହିଁ । ଏହି ସମୟରେ ମଧ୍ୟ ବାକାଟକମାନଙ୍କ ସାହାଯ୍ୟରେ (ବିନ୍ଧ୍ୟ ଶକ୍ତିଙ୍କ ସାହାଯ୍ୟରେ) ନାଗମାନେ ସାତବାହନମାନଙ୍କୁ ପରାଜିତ କରିଥିବାର ଜଣାଯାଏ । ସମ୍ଭବତଃ ସେହି ନାଗମାନଙ୍କ ଦ୍ୱାରା ପୁରୁଷୋତ୍ତମ କ୍ଷେତ୍ରରେ ସାତବାହନ ଦେବତାମାନଙ୍କ ସ୍ଥାନରେ ଯମେଶ୍ୱର ଓ କୁଷ୍ମାଣ ଦେବତା ଈଶାନଙ୍କ ସ୍ଥାନରେ ଈଶାନେଶ୍ୱର ଆଦି ଶିବଙ୍କ ସ୍ଥାପନା ଏବଂ ବିନ୍ଧ୍ୟବାସିନୀଙ୍କ ମନ୍ଦିରାଦିର ପ୍ରତିଷ୍ଠା ହୋଇଥିଲା ।

ନାଗମାନଙ୍କ ପରେ ଓଡ଼ିଶାରେ ବିଗ୍ରହ, ମୁଦ୍‌ଗଲ, ରଣଦୁର୍ଜୟ ଓ ଶୈଳୋଦ୍ଭବମାନେ ଗୁପ୍ତ ରାଜତ୍ୱ କାଳରେ ବା ତାର ଅବ୍ୟବହିତ ପରେ ଶାସନ ଗାଦିରେ ଅଧିଷ୍ଠିତ ଥିଲେ । ଦୁର୍ଜୟ ଓ ମୁଦ୍‌ଗଲ ବଂଶର ରାଜତ୍ୱ ଏତେ କ୍ଷୀଣସ୍ଥାୟୀ ଥିଲା ଯେ ଧର୍ମ ଜୀବନରେ ବିଶେଷ କିଛି ପ୍ରଭାବ ପକାଇଥିବା ସମ୍ଭବ ନୁହେଁ । ତେଣୁ ତୋଷଳୀର ଅଧିପତି ବିଗ୍ରହମାନେ ଓ ସେମାନଙ୍କ ସମସାମୟିକ ଶଶାଙ୍କଙ୍କ ରାଜତ୍ୱ ଓଡ଼ିଶାର ଧର୍ମ ଜୀବନରେ କିଛି ପ୍ରଭାବ ପକାଇଥିବାର ଅନୁମିତ ହୁଏ । ବିଗ୍ରହମାନେ ଧର୍ମ ଜୀବନରେ ଏକ ନିରପେକ୍ଷ ଭୂମିକା ଗ୍ରହଣ କରିଥିଲେ ମଧ୍ୟ ତାଙ୍କ ସମୟରେ ନାଗ, ମହେଶ୍ୱର ଓ ବରାହ (ବିଷ୍ଣୁ)ଙ୍କ ପୂଜା ପ୍ରଚଳିତ ହୋଇଥିବାର ସୂଚନା ମିଳେ । ସମ୍ଭବତଃ ଲୋକବିଗ୍ରହ ନିଜର ନାମାନୁସାରେ ପୁରୀର ଲୋକନାଥ (ଶିବ) ମନ୍ଦିର ପ୍ରତିଷ୍ଠା କରି ସେଠାରେ ସରନ୍ତ ସୋମବାର (ବୈଶାଖ ମାସ ଶୁକ୍ଳ ପକ୍ଷର ଶେଷ ସୋମବାର) ବା ଲୋକନାଥ ମେଳାର ପ୍ରଚଳନ ଏହି ପ୍ରତିଷ୍ଠା ଦିବସ ଉପଲକ୍ଷେ ପ୍ରଚଳନ କରାଇଥିଲେ । ସୋମଦତ୍ତ ମଧ୍ୟ ଏହି ସମୟରେ ତାଙ୍କର ମେଦିନୀପୁର ତାମ୍ରଶାସନରେ ବରାହ (ବିଷ୍ଣୁ)ଙ୍କ ପରାକ୍ରମ ବିଷୟ ପ୍ରକାଶ କରିଛନ୍ତି । ଏହାପରେ ଶୈଳୋଦ୍ଭବମାନେ ଓଡ଼ିଶାର ଶାସନ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ସେମାନେ ମହାନଦୀଠାରୁ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ରାଜ୍ୟର ଅଧିପତି ଥିଲେ ।

ଶୈଳୋଦ୍ଭବ ରାଜାମାନଙ୍କ ସମୟରେ ନଳମାନେ ଦକ୍ଷିଣ ପଶ୍ଚିମ ଓଡ଼ିଶାରେ କ୍ଷମତାଶାଳୀ ଥିଲେ । ତାମ୍ର ଶାସନମାନଙ୍କରେ ସେମାନେ ମହେଶ୍ୱର ପାଦଭକ୍ତ ରୂପେ ପରିଚିତ । ଆଉ ମଧ୍ୟ ପରବର୍ତ୍ତୀ କାଳରେ ଭଞ୍ଜ, ଶୁଲ୍କି, ତୁଙ୍ଗ ଆଦି ରାଜବଂଶ ନିଜକୁ ମହେଶ୍ୱର ପାଦଭକ୍ତ ରୂପେ ପରିଚିତ କରାଇଛନ୍ତି । ଆମ୍ଭେମାନେ ଦେଖୁଁ ଯେ ଆଦିବାସୀ ଗୋଷ୍ଠୀ ଅନ୍ତର୍ଭୁକ୍ତ କନ୍ଧମାନେ ସ୍ତମ୍ଭ ଦେବତାଙ୍କୁ ଧରଣୀ ଦେବତାଙ୍କ ପ୍ରତୀକ ରୂପେ କୃଷିକ୍ଷେତ୍ରରେ ପୂଜା କରନ୍ତି । ତେଣୁ ସେମାନଙ୍କୁ କନ୍ଧ ବଂଶୋଦ୍ଭବ ରୂପେ ସାଂସ୍କୃତିକ ଦୃଷ୍ଟିକୋଣରୁ ଗ୍ରହଣ କରାଯାଇପାରେ । ନଳମାନେ ବିଷ୍ଣୁଙ୍କ ଭକ୍ତ ଥିବାର ତାମ୍ରଶାସନମାନଙ୍କରୁ ଜଣାଯାଏ । ସେମାନେ ବିଷ୍ଣୁଙ୍କୁ ହରି, ବାସୁଦେବ ଓ ତ୍ରିବିକ୍ରମ ବା ବାମନରୂପେ ପୂଜା କରିଥିବାର ସଂକେତ ମଧ୍ୟ ତାମ୍ରଶାସନ ତଥା ଅଭିଲେଖମାନଙ୍କରୁ ମିଳିଥାଏ । କାଳକ୍ରମେ ଏହି ସ୍ତମ୍ଭଦେବତାଙ୍କ ଅନୁକୃତିରେ ବିଷ୍ଣୁଙ୍କ ଅବତାରମାନଙ୍କ ପ୍ରଭାବ ତଥା ଅଭ୍ୟୁଦୟର କଳ୍ପନା କରାଯାଇ କନ୍ଧମାନଙ୍କ ସଂସ୍କୃତିକୁ ବଜାୟ ରଖାଯାଇଥିବାର ମନେହୁଏ । ସମ୍ଭବତଃ ଶରଭପୁରୀୟ, ପାଣ୍ଡୁବଂଶୀ-ଆନ୍ଧ୍ର ରାଜବଂଶର ପ୍ରାଧାନ୍ୟ କାଳରେ କନ୍ଧମାନଙ୍କର ଦୃଢ଼ ସମର୍ଥନ ନିମିତ୍ତ ଏହା ହୋଇଥିଲା ।

ଶୈଳୋଦ୍ଭବମାନେ କଂଗୋଦମଣ୍ଡଳର ଶାସନ କ୍ଷମତାରେ ପ୍ରାୟ ଦୁଇଶତ ବର୍ଷ ଧରି ରହିଥିଲେ । ସେମାନଙ୍କ ବଂଶର ଲୋକମାନେ ବୈଦର୍ଭୀ ଓ ଦଣ୍ଡକ ଜାତିର ପ୍ରତିବେଶୀ ରୂପେ ରହିଥିଲେ । ସେମାନଙ୍କ ସହିତ ପୁଳିନ୍ଦ ଓ ଶୈଳଜମାନେ ମଧ୍ୟ ରହିଥିଲେ । ପୂର୍ବେ ପୁଳିନ୍ଦ ଓ ଶୈଳଜମାନଙ୍କୁ ଶୈଳୋଦ୍ଭବ ରୂପେ ତାମ୍ରଶାସନ-ମାନଙ୍କରେ କୁହାଯାଇଛି । ବିଶେଷକରି ପୁଳିନ୍ଦସେନ ଶୈଳୋଦ୍ଭବ ବଂଶର ଆଦ୍ୟ ସଂଗଠକ ଥିଲେ । ଶୈଳଜମାନଙ୍କୁ ଶୈଳୋଦ୍ଭବ ରୂପେ ଚିହ୍ନିତ କରାଯାଏ । ମନେହୁଏ ପୁଳିନ୍ଦ ଓ ଶୈଳଜମାନେ ମୁଖ୍ୟ ଶବର ଗୋଷ୍ଠୀର ଉପଗୋଷ୍ଠୀ ଅଟନ୍ତି । ତେଣୁ ଅନ୍ୟମାନଙ୍କ ନିକଟରେ ସେମାନେ କେବଳ ଶବର ନାମରେ ପରିଚିତ ହୁଅନ୍ତି ।

ଶୈଳୋଦ୍ଭବ ରାଜାମାନଙ୍କ ସମୟରେ ମାଧବ ବିଗ୍ରହର ପୂଜା ତଥା ପ୍ରତିଷ୍ଠା ପୁରୁଷୋତ୍ତମ ଅଞ୍ଚଳରେ ହୋଇଥିବା । ମାଧବରାଜ ପୁରୁଷୋତ୍ତମ ଅଞ୍ଚଳରେ ନୀଳମାଧବ ମୂର୍ତ୍ତି ପୂଜା କରିଥିବାର ମନେହୁଏ । ଏହା ମଧ୍ୟ ଶ୍ୱେତଗଙ୍ଗାଠାରେ ପୂଜିତ ଶ୍ୱେତମାଧବ ଓ ମତ୍ସ୍ୟମାଧବ ନାମରୁ ଏବଂ ଇନ୍ଦ୍ରଦ୍ୟୁମ୍ନ ନିକଟରେ ପୂଜିତ ତଥା ଗାଲଙ୍କ ମାଧବ ମୂର୍ତ୍ତି ନାମରେ ଆଖ୍ୟାୟିତ ମାଧବ ବିଗ୍ରହରୁ ସୂଚିତ ହୋଇଥାଏ । ଏହା ବ୍ୟତୀତ ପୁରୀ ଅଞ୍ଚଳର କାକଟପୁର ନିକଟରେ ଥିବା ନିଆଳି ମାଧବ, କଣ୍ଟିଲୋର ନୀଳମାଧବ ଆଦିର ପ୍ରତିଷ୍ଠା ଏହି ସମୟରେ ହୋଇଥିବାର ଅନୁମିତ ହୁଏ । ମାଧବରାଜ ନିଜକୁ ଭଗବାନ ଚକ୍ରଧର ମାଧବଙ୍କ ସହିତ ତୁଳନା କରିଥିବାରୁ ଏପରି ଅନୁମାନ ସର୍ବଥା ଗ୍ରହଣୀୟ । ତାଙ୍କର

ଖୋରଧା ତାମ୍ରଶାସନରେ ଲିଖିତ "...ସକଳ କଳାବାପ୍ତ କୌମୁଦୀ—ଇବ ଜଗତା ପ୍ରମଦଃ ପ୍ରବୃତ୍ତଚନ୍ଦ୍ର ଶ୍ଚନ୍ଦ୍ରଧର ଇବ ଭଗବାନ ମାଧବଃ..."ରୁ ଏହା ସ୍ଥିରକୃତ ହୋଇପାରେ । ଏହା ବ୍ୟତୀତ ଶୈଳୋଦ୍ଭବମାନେ ତାଙ୍କର ବିଭିନ୍ନ ତାମ୍ରଶାସନର ବିଷ୍ଣୁ ଓ ତ୍ରିବିକ୍ରମ ବା ବାମନ ଅବତାର ଏବଂ ଲକ୍ଷ୍ମୀ ଆଦିଙ୍କ ବର୍ଣ୍ଣନା କରିଥିବାରୁ ସେମାନେ ପରମବୈଷ୍ଣବ ରୂପେ ଗୃହୀତ ହୋଇଥାନ୍ତି । ସେମାନେ ଅଶ୍ୱମେଧ, ବାଜପେୟ ଆଦି ଯଜ୍ଞ ସକଳର ପ୍ରବର୍ତ୍ତକ ତଥା ଅବଭୃଥ ସ୍ନାନ ସହିତ ଚତୁର୍ଭୁଜ ବିଷ୍ଣୁ ବିଗ୍ରହମାନ ପ୍ରତିଷ୍ଠା କରିବାର ସୂଚନାରୁ ସ୍ଥିର କରାଯାଇ ପାରେ ଯେ ସେମାନେ ଶୈବଧର୍ମ ଅପେକ୍ଷା ବୈଷ୍ଣବ ଧର୍ମର ପୋଷକତା କରିବା ସଙ୍ଗେ ସଙ୍ଗେ ଚନ୍ଦ୍ରଧର ମାଧବ ବିଗ୍ରହମାନ ପୁରୁଷୋତ୍ତମ ଓ ଏହାର ଅଦୂରବର୍ତ୍ତୀ ଅଞ୍ଚଳମାନଙ୍କରେ ପ୍ରତିଷ୍ଠା କରିଥିଲେ । ତେଣୁ ଜଗନ୍ନାଥଙ୍କ ଆଦି ବିଗ୍ରହ ନୀଳମାଧବ ରୂପରେ ଶୈଳୋଦ୍ଭବ ବା ଶବରମାନଙ୍କ ଦ୍ୱାରା ପୂଜିତ ହେଉଥିବାର କିଂବଦନ୍ତୀ ଏହି'ପରଠାରୁ ସୃଷ୍ଟି ହୋଇଥିବାର ମନେହୁଏ । ଏହାମଧ୍ୟ ପୂର୍ବରୁ ବିଶ୍ୱାବସୁ କିଂବଦନ୍ତୀ ସହିତ ମିଶି ବଶୁ ଶବର ନୀଳମାଧବ ମୂର୍ତ୍ତି ପୂଜାକରୁଥିବା ଉପାଖ୍ୟାନ ପ୍ରଚଳିତ ହୋଇଥିଲା । ଆଉମଧ୍ୟ ମଧ୍ୟମରାଜ ତୃତୀୟଙ୍କ ଟେକାଲି ତାମ୍ରଶାସନରୁ ପର୍ଯ୍ୟବେକ୍ଷଣବରେ ଜଣାଯାଏ ଯେ ଲକ୍ଷ୍ମୀ ଓ ମଧୁସୂଦନଙ୍କ ପୂଜା ତାଙ୍କ ସମୟରେ ପ୍ରଚଳିତ ଥିଲା । ତାଙ୍କର ସ୍ତ୍ରୀ ଅଲ୍ଲବ ରାଜଙ୍କୁ ଭଗବାନ ନାରାୟଣଙ୍କ ସହିତ ତୁଳନା କରାଯିବା ସଙ୍ଗେ ସଙ୍ଗେ ସେ ମଧ୍ୟ ଇନ୍ଦ୍ରଙ୍କ ତୁଲ୍ୟ ଅଶେଷ ଧନଶାଳୀ ଓ ପରାକ୍ରମୀ ଥିବା ବର୍ଣ୍ଣନା କରାଯାଇଅଛି । ସେ ଓଡ୍ରଦେଶର ଗୋଟିଏ ଦୁର୍ଗ ମଧ୍ୟରେ ଅଭିଷିକ୍ତ ହୋଇଥିବାର ଜଣାଯାଏ । ସମ୍ଭବତଃ ତାଙ୍କ ସମୟରେ ବ୍ରହ୍ମଗିରିର ଅଲ୍ଲବର ନାଥ ବା ଅଲ୍ଲାର ନାଥ ମନ୍ଦିର ତଥା ବିଗ୍ରହର ନିର୍ମାଣ ଏବଂ ପ୍ରତିଷ୍ଠା ହୋଇଥିଲା । ସେଥିପାଇଁ ପୁରୀର ଜଗନ୍ନାଥ ମନ୍ଦିର ସହିତ ବ୍ରହ୍ମଗିରିର ଅଲ୍ଲାରନାଥ ମନ୍ଦିରର ସଂପର୍କ ପ୍ରତିଷ୍ଠିତ ହୋଇଛି । ପରେ ଅଲଓ୍ୱାର ସଂପ୍ରଦାୟ ସହିତ ସଂପର୍କରେ ଆସି ଏହି ମନ୍ଦିର ଗଙ୍ଗରାଜାମାନଙ୍କ ଦ୍ୱାରା ପୁନଃ ନିର୍ମିତ ହୋଇଥିବା ଓ ବୈଷ୍ଣବ ଧର୍ମର ଏକ ପ୍ରଧାନ କେନ୍ଦ୍ର ରୂପେ ଖ୍ୟାତିଲାଭ କରିଥିବାର ସ୍ଥିର କରାଯାଇପାରେ । ଚୈତନ୍ୟଙ୍କ ଆଗମନ ପରେ ଏହା ବୈଷ୍ଣବ ଧର୍ମର କେନ୍ଦ୍ର ଏବଂ ବିଶେଷକରି ରାମାନନ୍ଦ (ରାଜମହେନ୍ଦ୍ରୀର ଶାସକଙ୍କ ଗୃହ ନିକଟରେ ଏହାର ଅବସ୍ଥାନ ହେତୁ ଜଗନ୍ନାଥ ମନ୍ଦିରରେ ଦେବବିଗ୍ରହ ପରିବର୍ତ୍ତିତ ହୋଇଥିଲେ ମଧ୍ୟ ପ୍ରାଚୀନ ଅଲ୍ଲାରନାଥ ବିଗ୍ରହ ବ୍ରହ୍ମଗିରିରେ କୃଷ୍ଣ ବିଗ୍ରହ ରୂପେ ପୂଜିତ ହେଲେ ଓ ଜଗନ୍ନାଥ ମନ୍ଦିର ସହିତ ତାହାର ଘନିଷ୍ଠ ସଂପର୍କ ପୁନଃ ସ୍ଥାପିତ ହେଲା । ଏହି ମନ୍ଦିର ମଧ୍ୟରେ ନିକଟରେ ଆବିଷ୍କୃତ ହୋଇଥିବା ଗଙ୍ଗଯୁଗୀୟ କାରୁକାର୍ଯ୍ୟ ମଣ୍ଡିତ ବିଶାଳକାୟ ପ୍ରସ୍ତର ଖଣ୍ଡରୁ ଏହା ଏକଦା ଅତି ଉଚ୍ଚକୋଟୀର ମନ୍ଦିର ଥିବାର ପ୍ରମାଣିତ ହୋଇପାରେ । ବର୍ତ୍ତମାନର ମନ୍ଦିର ଚୈତନ୍ୟଙ୍କ ଆଗମନ ପରେ ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ପୁନଃ-ନିର୍ମିତ ହୋଇଥିବା ତାହାର ଗଠନ ଶୈଳୀରୁ ମନେହୁଏ ।

ଶୈଳୋଦ୍ଭବ ବଂଶର ମାଧବରାଜ ୨ୟ କର୍ଣ୍ଣ ସୁବର୍ଣ୍ଣର ଶଶାଙ୍କଙ୍କ ଅଧୀନରେ ଏକ ସାମନ୍ତ ରାଜା ଥିଲେ । ଶଶାଙ୍କ ଏକ ବୌଦ୍ଧ ବିଦ୍ୱେଷୀ ତଥା ଶୈବଧର୍ମର ପୃଷ୍ଠ-ପୋଷକ ସମ୍ରାଟ ଥିଲେ । ସେ ହର୍ଷବର୍ଦ୍ଧନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିବାରୁ ଏବଂ ହର୍ଷଙ୍କ ଭ୍ରାତା ରାଜ୍ୟବର୍ଦ୍ଧନ ତାଙ୍କଦ୍ୱାରା ନିହତ ହୋଇଥିବାରୁ ସେ ଶଶାଙ୍କଙ୍କ ବିରୁଦ୍ଧରେ ଏକ ଧର୍ମ-ଯୁଦ୍ଧ ଚଳାଇ ଥିଲେ । ସେଥିପାଇଁ କାମରୂପର ବୌଦ୍ଧରାଜା ଭାସ୍କରବର୍ମା ଉତ୍ତର-ପୂର୍ବ ଦିଗରୁ ଓ ହର୍ଷବର୍ଦ୍ଧନ ଉତ୍ତର-ପଶ୍ଚିମ ଦିଗରୁ ଶଶାଙ୍କଙ୍କୁ ଆକ୍ରମଣ କରିଥିଲେ । ମାତ୍ର ମାଧବରାଜଙ୍କ ଯୋଗୁଁ ସେ ଶଶାଙ୍କଙ୍କୁ ପରାଭୂତ କରିବାପାଇଁ ଦୀର୍ଘ ସମୟ ନେଇଥିଲେ । ତେଣୁ ହର୍ଷବର୍ଦ୍ଧନ କଂଗୋଦ ଜୟକରିବା ପାଇଁ ଉଦ୍ୟମୀ ଥିଲେ । ପୁଲକେଶୀଙ୍କ ଅବସାନ ପରେ ସେ କଂଗୋଦ ଅଧିକାର କରିଥିଲେ । ହର୍ଷବର୍ଦ୍ଧନ ଶଶାଙ୍କଙ୍କୁ ପରାଜିତ କରିବାପାଇଁ ସୋନପୁରର ରାଜା ଇନ୍ଦ୍ରଭୂତିଙ୍କ ସାହାଯ୍ୟ ନେଇଥିବା ସମ୍ଭବ । ଇନ୍ଦ୍ରଭୂତି ବୌଦ୍ଧ ବଜ୍ରଯାନର ଜଣେ ବିଶିଷ୍ଟ ପ୍ରବକ୍ତା ହିସାବରେ ବିଦିତ । ସେ ମଧ୍ୟ ଏହାର ପ୍ରଚାରରେ ମନୋନିବେଶ କରିଥିଲେ । ତେଣୁ ଏହି ଧର୍ମ ଯୁଦ୍ଧରେ ହର୍ଷବର୍ଦ୍ଧନ ତାଙ୍କର ସାହାଯ୍ୟ ନେଇଥିବାର ମନେହୁଏ; କିମ୍ବା ସେ ତାଙ୍କର ସାମନ୍ତ ରାଜାରୂପେ ଏଥିରେ ଯୋଗ ଦେଇ-ଥିଲେ । ହର୍ଷବର୍ଦ୍ଧନ କଂଗୋଦ ଅଧିକାର କରିବା ପରେ ଇନ୍ଦ୍ରଭୂତି ହିଁ ପୁରୀରେ ଜଗନ୍ନାଥଙ୍କ ପ୍ରତୀକ ବିଗ୍ରହ ପ୍ରତିଷ୍ଠା କରିଥିବାର ମନେହୁଏ । ଇନ୍ଦ୍ରଭୂତି ଜଗନ୍ନାଥ ଅଥବା ଶ୍ରେଷ୍ଠ-ଜ୍ଞାନ ବା ବୁଦ୍ଧଙ୍କ ଭକ୍ତ ଥିବାରୁ ଏପରି ଅନୁମାନ ଯୁକ୍ତିଯୁକ୍ତ ମନେ ହୁଏ । ସମ୍ଭବତଃ ତାଙ୍କ ଦ୍ୱାରା ଶୈଳୋଦ୍ଭବମାନଙ୍କ ଦ୍ୱାରା ପ୍ରତିଷ୍ଠିତ ନୀଳମାଧବ ବିଗ୍ରହ ସ୍ଥାନରେ ବୁଦ୍ଧ, ଧର୍ମ ଓ ସଂଘର ପ୍ରତୀକ ପୂଜିତ ହୋଇଥିଲେ । କିନ୍ତୁ ଏହା ଖୁବ୍ ଶୀଘ୍ର କରିବାକୁ ପଡ଼ିଥିବାରୁ ପ୍ରସ୍ତର ପ୍ରତୀକର ପୂଜା ହଠାତ୍ ପ୍ରବର୍ତ୍ତିନ କରିବା ସମୟସାପେକ୍ଷ-ମଣି ସେ ତାକୁ କାଠର ପ୍ରତୀକରେ ସ୍ଥାପନ କରିଥିଲେ । ମାତ୍ର ଅତି ଅଳ୍ପ ସମୟ ପରେ ହର୍ଷବର୍ଦ୍ଧନଙ୍କ ମୃତ୍ୟୁ ପରେ ମାଧବରାଜ ସ୍ୱାଧୀନ ହେବାଫଳରେ ଏହି ଜଗନ୍ନାଥ ପୂଜା ତଥା ଇନ୍ଦ୍ରଭୂତିଂକ ଶାସନର ପରିସମାପ୍ତି ହୋଇଥିଲା । ମନେହୁଏ ଏହି ସ୍ୱାଧୀନତା ଲାଭପାଇଁ ମାଧବରାଜଙ୍କୁ ଇନ୍ଦ୍ରଭୂତିଂକ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା ଓ ସେଥିରେ ଇନ୍ଦ୍ରଭୂତି ନିହତ ହୋଇ ଥିଲେ । ଏହାର ଫଳସ୍ୱରୂପ ମାଧବରାଜ ଅଶ୍ୱମେଧାଦି ଯଜ୍ଞ କରିଥିଲେ । ସେ ତାଙ୍କର ଓଡ଼ିଶା ମ୍ୟୁଜିୟମ୍ ତାମ୍ରଶାସନରେ ବଳବାନ ଶତ୍ରୁପକ୍ଷଙ୍କୁ ପ୍ରତିହତ କରି ଦେବତା ମାନଂକର ତୃପ୍ତି ବର୍ଦ୍ଧନ କରିଥିବା ଓ ମାଧବପୁର ଚନ୍ଦ୍ରଙ୍କୁ ଘୋଟିଥିବା ମେଘରୁ ମୁକ୍ତ କରି କଳଂକହୀନ କୀର୍ତ୍ତି ଅର୍ଜନ କରିଥିବା ଓ ରିପୁମାନଙ୍କ କାଳିମାମାନ ଭଗ୍ନ କରିଥିବା ମାଧବବର୍ମା କୁଶଳୀ' ରୂପେ ବ୍ୟକ୍ତ କରିଥିବାରୁ ଏଭଳି ଅନୁମାନ କରିବା ସର୍ବଦା ଯୁକ୍ତିଯୁକ୍ତ ମନେହୁଏ । କିନ୍ତୁ ଏହା ବେଶୀଦିନ ପାଇଁ ତିଷ୍ଠି ନଥିଲା । ପ୍ରଥମ ଭୌମରାଜା ଶିବକର ଦେବ କଂଗୋଦ ଅଧିକାର କରିବା ପରେ ପୁରୁଷୋତ୍ତମରେ ମାଧବ ପୂଜାର ଅବସାନ ହୋଇଥିଲା । ସମ୍ଭବତଃ ଭୌମମାନଂକ ସମୟରେ ନୀଳମାଧବ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ନିକଟକୁ ଶ୍ରୀ ମନ୍ଦିରରୁ ସ୍ଥାନାନ୍ତରିତ ହୋଇଥିଲେ ।

ଭୌମବଂଶୀଙ୍କର ନୃପତିମାନେ ବୌଦ୍ଧଥିଲେ । ସେମାନେ ତାମ୍ରଶାସନ ମାନଙ୍କରେ ନିଜକୁ ପରମ ସୌଗତ, ପରମ ଭଟ୍ଟାରକ ଆଦି ଉପାଧିରେ ଭୂଷିତ କରିଥିବାରୁ ପୁରୁଷୋତ୍ତମରେ ବିଷ୍ଣୁପୂଜାର ପ୍ରାଧାନ୍ୟ ହ୍ରାସକରି ପୁନଶ୍ଚ ବିଷ୍ଣୁ କିମ୍ବା ନୀଳମାଧବ ପୂଜାର ପ୍ରଚଳନ କରି ନଥିବା ଯୁକ୍ତିଯୁକ୍ତ ମନେହୁଏ । ମାତ୍ର ଏହି ବଂଶର ତ୍ରିଭୁବନ ମହାଦେବୀ ନିଜକୁ ପରମ ବୈଷ୍ଣବୀ ରୂପେ ତାଙ୍କର ବୌଦ୍ଧ ତାମ୍ରଶାସନରେ ବ୍ୟକ୍ତ କରିଥିବାରୁ ତାଙ୍କୁ ବୈଷ୍ଣବ ଧର୍ମ ତଥା ବିଷ୍ଣୁ ପୂଜାର ପୁନଃ ପ୍ରବର୍ତ୍ତିକା ରୂପେ ଗ୍ରହଣ କରାଯାଇପାରେ । ସେ ପୁରୁଷୋତ୍ତମରେ ବିଷ୍ଣୁ ପୂଜାର ପ୍ରଚଳନ କରିଥିଲେ କି ନାହିଁ ତାହା ଜଣାଯାଇନାହିଁ । ତ୍ରିଭୁବନ ମହାଦେବୀଙ୍କ ଶୁଭାକର ଦେବଙ୍କ ହିନ୍ଦୋଳ ତାମ୍ରଶାସନରେ ନାଗବଂଶୋଦ୍ଭବ ରୂପେ ବ୍ୟକ୍ତ କରାଯାଇ ଥିବାରୁ ଏବଂ ଏହି ତାମ୍ରଶାସନରେ ପୁଳିନ୍ଦରାଜଙ୍କ ଅନୁରୋଧରେ ପୁଳିନ୍ଦେଶ୍ୱର ମନ୍ଦିରର ବୈଦ୍ୟନାଥ ଭଟ୍ଟାରକଙ୍କୁ ସେ ଦୈନିକ ବଳି, ଚରୁ, ଦୀପ, ଗନ୍ଧ, ପୁଷ୍ପ ଆଦି ପ୍ରଦାନ ନିମିତ୍ତ ଗ୍ରାମଦାନ କରିଥିବାରୁ ମନେହୁଏ ଯେ ଶୁଭାକର ଦେବଙ୍କ ସମୟରୁ ପୁଳିନ୍ଦମାନଙ୍କ ସହିତ ସେ ଉତ୍ତମ ସଂପର୍କ ରକ୍ଷା କରିବାକୁ ଉଦ୍ୟମ କରିଥିଲେ । ଏହା ବିଭିନ୍ନ ସ୍ଥାନରେ ବିଷ୍ଣୁ ପୂଜା ଏବଂ ବିଶେଷ ଭାବରେ ପୁଳିନ୍ଦ ବା ଶବରମାନଙ୍କ ମଧ୍ୟରେ ପ୍ରତିହତ ହୋଇଥିବା ବିଷ୍ଣୁ ପୂଜାର ପୁନଃ ପ୍ରଚଳନର ସୂଚନା ଦିଏ । ସମ୍ଭବତଃ ପୁରୁଷୋତ୍ତମ ଅଞ୍ଚଳରେ ପରିତ୍ୟକ୍ତ ହୋଇଥିବା ମାଧବପୂଜାର ପୁନରାରମ୍ଭ ଏହି ସମୟରେ ହୋଇଥିଲା । କିନ୍ତୁ ସୋମବଂଶୀ ରାଜା ଯଯାତି ଏ ଅଞ୍ଚଳର ଶାସକ ହେବା ପୂର୍ବରୁ ଏଠାରେ ବିଷ୍ଣୁ ପୂଜା ତଥା ଜଗନ୍ନାଥ ପୁରୁଷୋତ୍ତମଙ୍କ ପୂଜାର ପୁନଃ ପ୍ରଚଳନ ହୋଇପାରି ନଥିଲା । ଭୌମମାନଙ୍କ ସମୟରେ ଶାକ୍ତପୀଠର ପ୍ରତିଷ୍ଠା ଓ ଶାକ୍ତ ପୂଜାର ପ୍ରବର୍ତ୍ତନ ସେମାନଙ୍କ ରାଜତ୍ୱର ଶେଷ ଆଡକୁ ହୋଇଥିବାର ମନେହୁଏ । ତେଣୁ ପୁରୁଷୋତ୍ତମର ବିମଳା ଓ କାକଟପୁରର ମଙ୍ଗଳା ଏବଂ ତ୍ରିଭୁବନ ମହାଦେବୀଙ୍କ ନାମାନୁସାରେ ଲିଙ୍ଗରାଜ ମନ୍ଦିରର ଭୁବନେଶ୍ୱରୀ ବା ତ୍ରିଭୁବନେଶ୍ୱରୀଙ୍କ ପୂଜାର ପ୍ରଚଳନ ହୋଇଥିବା ଖୁବ୍ ସମ୍ଭବ । ଅତି ମଧ୍ୟ ଭୌମମାନଙ୍କ ସମୟରେ ଜଗନ୍ନାଥଙ୍କ ମନ୍ଦିରରେ ବୌଦ୍ଧ ତ୍ରିରତ୍ନଙ୍କ ନୂତନ ସଂସ୍ଥାପନା ସହିତ ରଥଯାତ୍ରାର ପ୍ରଚଳନ ହୋଇଥିବା ମନେହୁଏ । ତେଣୁ କାକଟପୁର ମଙ୍ଗଳାଙ୍କ ନିର୍ଦ୍ଦେଶରେ ଜଗନ୍ନାଥଙ୍କ ଦାରୁ ବିଗ୍ରହର ଅନ୍ୱେଷଣ ଓ ପରେ ପରେ ଇନ୍ଦ୍ରଭୂତିଙ୍କ ଦାରୁ ବିଗ୍ରହ ପ୍ରତିଷ୍ଠାର ସ୍ମାରକୀ ରୂପେ ଦେବତାଂକ ନବ ବିଗ୍ରହ ନିର୍ମାଣ ସହିତ ରଥଯାତ୍ରାର ପ୍ରବର୍ତ୍ତନ ହୋଇଥିବା ମନେହୁଏ । ମଙ୍ଗଳା ଇନ୍ଦ୍ରଭୂତିଂକ ରାଣୀଙ୍କ ଦ୍ୱାରା ପୂଜିତା ଅଥବା ତାଙ୍କ ନାମରେ ପ୍ରତିଷ୍ଠିତା ଦେବୀ ହୋଇପାରନ୍ତି । ତେଣୁ ନବକଳେବରରେ ମଙ୍ଗଳାଂକ ଆଜ୍ଞାର ଆବଶ୍ୟକତା ଉପଲବ୍‌ଧ ହୋଇଥିବା ମନେହୁଏ । ବୌଦ୍ଧ ଧର୍ମାବଲମ୍ବୀ ଭୌମମାନେ ଇନ୍ଦ୍ରଭୂତିଂକ ପ୍ରତିଷ୍ଠିତ ଜଗନ୍ନାଥ ବିଗ୍ରହ ତଥା ମଙ୍ଗଳାଂକର ସମ୍ମାନାର୍ଥେ ଏହି ଉଦ୍ୟମ କରିଥିବା ଅନୁମିତ ହୁଏ । ତ୍ରିରତ୍ନଙ୍କ

ରଥଯାତ୍ରାର ଏକ ଫଳକ (ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ)ରୁ ଜଗନ୍ନାଥଙ୍କ ରଥଯାତ୍ରାର ପ୍ରାଚୀନ ସ୍ୱରୂପ ପ୍ରକାଶିତ ହୋଇଥାଏ । ଭୌମମାନେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରୁ ଦଶମ ଶତାବ୍ଦୀ ମଧ୍ୟରେ ରାଜତ୍ୱ କରିଥିବାର ଜଣାଯାଇଅଛି । ଏହି ଫଳକ ସେମାନଙ୍କ ସମୟରେ ନିର୍ମିତ ହୋଇଥିବା ମନେହୁଏ । ଭୌମମାନେ ଭୂୟାଁ ବଂଶଜ ଆଦିବାସୀ ଥିବାରୁ ସେମାନଙ୍କ ସମୟରେ ଦେବୀପୂଜା ଓ ରଥଯାତ୍ରା ପ୍ରଚଳନକୁ ଆଦିବାସୀଙ୍କ ସାଂସ୍କୃତିକ ପୃଷ୍ଠଭୂମିରୁ ଅନୁମାନ କରିବା ମଧ୍ୟ ସମୀଚୀନ ମନେହୁଏ ।

ଭୌମମାନଙ୍କ ଅବସାନ ପରେ ସୋମବଂଶୀ ଯଯାତି ଉତ୍କଳର ଶାସନ କ୍ଷମତା ଲାଭ କରିଥିଲେ । ସେ କୋଶଳ, ଉତ୍କଳ ସହିତ ସମଗ୍ର ଆଦିବାସୀ ଅଧ୍ୟୁଷିତ ଓଡ଼ିଶାର ଶାସକ ହୋଇଥିଲେ । ତେଣୁ ତାଙ୍କ ସମୟରେ ଏହି ବିଭିନ୍ନ ପୂଜାର ସମନ୍ୱୟ ନିମିତ୍ତ ଉଦ୍ୟମ ହୋଇଥିଲା । ବିଶେଷକରି ତାଙ୍କର ଶାସନକୁ ଓଡ଼ିଶାରେ ସୁଦୃଢ଼ କରିବାପାଇଁ ସେ ଶବର ଓ ପୁଳିନ୍ଦ ଆଦିଙ୍କ ବିଷ୍ଣୁ ବା ଚକ୍ରଧର ବିଷ୍ଣୁ ବା ମାଧବ, ନାଗ ତଥା ଶୈବମାନଙ୍କ ସଙ୍କର୍ଷଣ ବା ଶିବ, ଭୂୟାଁ ବା ଭୌମ ତଥା ବୌଦ୍ଧମାନଙ୍କ ଧର୍ମ ତଥା ଶକ୍ତିଙ୍କ ସୂଚକ ସୁଭଦ୍ରା, ଏବଂ କନ୍ଧ, ସ୍ତମ୍ଭ, ଶୁଲ୍କି, ନଳ ଓ ଭଞ୍ଜମାନଙ୍କ ସ୍ତମ୍ଭେଶ୍ୱରୀ ତଥା ଚକ୍ରଧର ବିଷ୍ଣୁଙ୍କ ପ୍ରତୀକ ସୁଦର୍ଶନଙ୍କ ପୂଜାର ପ୍ରଚଳନ ସହିତ ତାହାର ସମନ୍ୱୟ କରିବାପାଇଁ ଉଦ୍ୟମ କରିଥିଲେ । ସୋମବଂଶୀମାନେ ବୈଷ୍ଣବ ଥିବାରୁ ଏବଂ ସେମାନେ କୃଷ୍ଣ-ବାସୁଦେବଙ୍କ ପୂଜାର ପାରମ୍ପରିକ ସମର୍ଥକ ଥିବାରୁ ନୀଳମାଧବ ବିଷ୍ଣୁଙ୍କୁ କୃଷ୍ଣ ବାସୁଦେବଙ୍କ ପ୍ରତୀକ ରୂପେ ଗ୍ରହଣକରି ତାଂକ ପୂଜାର ପ୍ରାଧାନ୍ୟ ପ୍ରତିଷ୍ଠା କରିଥିବା ମନେହୁଏ । ଏହା ସହିତ ଇନ୍ଦ୍ରଭୂତିଂକ ନାମର ସମନ୍ୱୟ ଘଟାଇ ସେ ଓଡ଼ିଶାର ଧର୍ମ ଜୀବନରେ ସଙ୍ଘର୍ଷର ସୂତ୍ରପାତ କରିଥିଲେ । ତେଣୁ ଯଯାତିଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାରେ ଆଖ୍ୟାୟିତ କରାଯାଇଥିବାର ପରମ୍ପରା ଓଡ଼ିଶାରେ ପ୍ରଚଳିତ ଥିଲା । ଯଯାତି ଜଗନ୍ନାଥଙ୍କ ପ୍ରତିମାଶୂନ୍ୟ ମନ୍ଦିରରେ ତ୍ରିରତ୍ନ ସ୍ଥାନରେ ଏହି ବିଗ୍ରହ ପ୍ରତିଷ୍ଠାକରି ଓଡ଼ିଶାର ସମସ୍ତ ଧର୍ମାବଲମ୍ବୀ ତଥା ଆଦିବାସୀ ସମାଜ, ଏବଂ ବିଶେଷକରି ଶବର ସମାଜର ସହଯୋଗ ଲାଭ କରିଥିବାରୁ ଜଗନ୍ନାଥ ଓ ଚତୁର୍ଦ୍ଧାମୂର୍ତ୍ତିଙ୍କ ବିଗ୍ରହ ସମଗ୍ର ଓଡ଼ିଶାରେ ଧର୍ମପ୍ରତୀକ ରୂପେ ଗୃହୀତ ତଥା ପୂଜିତ ହୋଇଆସୁଛନ୍ତି ।

# ଜଗନ୍ନାଥ ସଂସ୍କୃତିର କ୍ରମବିକାଶ

କୁଷାଣ ଯୁଗରେ (ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ) ଏକ ପ୍ରସ୍ତର ଫଳକରେ ବଳରାମ, ସୁଭଦ୍ରା (ଏକାନଂଶା) ଓ କୃଷ୍ଣ ବିଗ୍ରହ ପ୍ରକଟିତ ହୋଇଥିବାର ଦେଖାଯାଏ । ଦ୍ୱିହସ୍ତ ବଳରାମଙ୍କର ଦକ୍ଷିଣ ହସ୍ତରେ ହଳ ଓ ଦ୍ୱିହସ୍ତ ଏକାନଂଶା ବା ସୁଭଦ୍ରାଙ୍କ ଦକ୍ଷିଣ ହସ୍ତରେ ବରଦମୁଦ୍ରା ଓ ବାମହସ୍ତ କଟି ଉପରେ ନ୍ୟସ୍ତ । ଚତୁର୍ଭୁଜ କୃଷ୍ଣଙ୍କ ଊର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ଗଦା, ଊର୍ଦ୍ଧ୍ୱ ବାମ ହସ୍ତରେ ଚକ୍ର, ଅଧୋ ବାମ ହସ୍ତରେ ପଦ୍ମ ଓ ନିମ୍ନ ଦକ୍ଷିଣ ହସ୍ତରେ ଅଭୟମୁଦ୍ରା ବିଦ୍ୟମାନ । ଦୁଃଖର ବିଷୟ ଏହି ପ୍ରାଚୀନତମ ପ୍ରସ୍ତର ଫଳକଟି ବର୍ତ୍ତମାନ ଭରତ ସଂଗ୍ରହାଳୟରେ ସଂରକ୍ଷିତ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଏକ ପିତ୍ତଳ ଫଳକରେ (3X3") ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ (କୃଷ୍ଣ) ଏକ ପାଦ ପୀଠରେ ଦଣ୍ଡାୟମାନ । ବଳରାମଙ୍କ ମସ୍ତକ ଉପରେ ତ୍ରିଫଣାଯୁକ୍ତ ନାଗ, ଦକ୍ଷିଣ ହସ୍ତରେ ମୂଷଳ ଓ ବାମହସ୍ତରେ ଫଳକ; ସୁଭଦ୍ରା ଦକ୍ଷିଣ ହସ୍ତରେ ଏକ ବିକଚ ପଦ୍ମ ଧାରଣ କରିଛନ୍ତି ଓ ତାଙ୍କ ବାମ ହସ୍ତ ବରଦ ମୁଦ୍ରାରେ ପ୍ରଦର୍ଶିତ । ଦ୍ୱିହସ୍ତ ଜଗନ୍ନାଥ (କୃଷ୍ଣ)ଙ୍କ ଦକ୍ଷିଣ ହସ୍ତ ଗଦା ଉପରେ ନ୍ୟସ୍ତ ଓ ବାମହସ୍ତରେ ପଦ୍ମ ଥିବାର ଦେଖାଯାଏ । ମୂର୍ତ୍ତିଗୁଡ଼ିକ କିରୀଟ ମୁକୁଟଧାରୀ । ଏହି ଫଳକଟି କ୍ଷୁଦ୍ର ହେଲେ ମଧ୍ୟ ଇତିହାସ ଦିଗରୁ ଗୁରୁତ୍ୱପୂର୍ଣ୍ଣ । ଗଠନ ପ୍ରଣାଳୀ ବିଚାରରେ ଏହାକୁ ଷଷ୍ଠ ବା ସପ୍ତମ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ ।

ବିହାରର ପାଳବଂଶୀୟ ରାଜା ମହୀପାଳଙ୍କ ଏକ ଅଭିଲେଖଯୁକ୍ତ ପ୍ରସ୍ତର ଖଣ୍ଡରେ ବଳଭଦ୍ର, ସୁଭଦ୍ରା ଓ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ । ଚତୁର୍ହସ୍ତ ବଳରାମ ସପ୍ତଫଣା ବିଶିଷ୍ଟ ନାଗତଳେ ଦଣ୍ଡାୟମାନ । ପୁଷ୍ପ ଉପରେ ଦଣ୍ଡାୟମାନା ସୁଭଦ୍ରାଙ୍କ ଦକ୍ଷିଣ ହସ୍ତରେ ବରଦମୁଦ୍ରା ଓ ବାମହସ୍ତରେ ଦର୍ପଣ ବିଦ୍ୟମାନ । ଉତ୍ତର ପ୍ରଦେଶର ଲକ୍ଷ୍ନୌ ସଂଗ୍ରହାଳୟର ଏକ ପ୍ରସ୍ତର ଫଳକରେ ବଳରାମ, ସୁଭଦ୍ରା ଓ କୃଷ୍ଣଙ୍କ ମୂର୍ତ୍ତିତ୍ରୟ ଖୋଦିତ ହୋଇଛି । ଉଭୟ କୃଷ୍ଣ ଓ ବଳରାମ ଚତୁର୍ଭୁଜ ଏବଂ ସୁଭଦ୍ରା ଦକ୍ଷିଣ ହସ୍ତରେ ବିକଚପଦ୍ମ ଓ ବାମ ହସ୍ତରେ ଅଭୟମୁଦ୍ରା ଧାରଣ କରିଛନ୍ତି । କୁଷାଣ ରାଜତ୍ୱ କାଳରୁ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କର କନକସ୍ଥ ପାଷାଣ ବିଗ୍ରହ

ପୂଜା ପ୍ରଚଳିତ ଥିବା ସତ୍ତ୍ୱେ ଶ୍ରୀକ୍ଷେତ୍ରସ୍ଥ ବଳଭଦ୍ର, ସୁଭଦ୍ରା ଓ ଶ୍ରୀଜଗନ୍ନାଥଙ୍କ ବିଗ୍ରହତ୍ରୟ ଦାରୁନିର୍ମିତ ହେବାର କାରଣ ଏପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ଭାବରେ ଜଣା ଯାଇନାହିଁ । ବେଶନଗର ନାମକ ଏକ ସ୍ଥାନରେ ଆବିଷ୍କୃତ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଏକ ସ୍ତମ୍ଭ ଗାତ୍ରରେ ଉତ୍କୀର୍ଣ୍ଣଥିବା ମୂର୍ତ୍ତିରୁ ସେ ସମୟରେ ସଙ୍କର୍ଷଣ ଓ ବାସୁଦେବ ପୂଜା ପ୍ରଚଳିତ ଥିବାର ପ୍ରମାଣ ମିଳେ । ଏ ପର୍ଯ୍ୟନ୍ତ ବାସୁଦେବ ବା ଶ୍ରୀକୃଷ୍ଣଙ୍କର ଜଗନ୍ନାଥ ନାମକରଣ ସମ୍ବନ୍ଧରେ ଶଙ୍କରାଚାର୍ଯ୍ୟଙ୍କ ପର୍ଯ୍ୟନ୍ତ କୌଣସି ଉଲ୍ଲେଖ ମିଳେ ନାହିଁ ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଆବିର୍ଭୂତ ଅମରସିଂହଙ୍କ ଦ୍ୱାରା ସଂକଳିତ ଓ ଭାରତର ସର୍ବାଞ୍ଚଳରେ ପ୍ରଚଳିତ "ନାମଲିଙ୍ଗାନୁ ଶାସନମ୍" ନାମକ କୋଷ ଗ୍ରନ୍ଥରେ ବିଷ୍ଣୁଙ୍କ ପର୍ଯ୍ୟାୟରେ ଶ୍ରୀ ଜଗନ୍ନାଥଂକ ନାମ ପରିଦୃଷ୍ଟ ହୁଏ ନାହିଁ । କିନ୍ତୁ ଭଗବାନ୍ ଶ୍ରୀ ଶଂକରାଚାର୍ଯ୍ୟ (୭୮୮-୮୨୦ ଖ୍ରୀଷ୍ଟାବ୍ଦ) ବିରଚିତ 'ବିଷ୍ଣୁ ସହସ୍ର ନାମ ଭାଷ୍ୟମ୍'ରେ ବିଷ୍ଣୁଂକ ଜଗନ୍ନାଥ ନାମକୁ ବିଶେଷ ପ୍ରାଧାନ୍ୟ ଦିଆଯାଇ ଥିବାର ଜଣାଯାଏ । ଯଥା—

"ତସ୍ୟ ଲୋକପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ ।
ବିଷ୍ଣୋର୍ନାମସହସ୍ରଂ ମେ ଶୃଣୁ ପାପଭୟାପହମ୍ ।"
(ଦ୍ୱାଦଶ ଶ୍ଳୋକ)

ତତ୍‌କାଳୀନ ଭାରତର ଅନ୍ୟ କୌଣସି ତୀର୍ଥରେ ଶ୍ରୀ ଜଗନ୍ନାଥ ପୂଜାର ପ୍ରଚଳନ ସମ୍ବନ୍ଧରେ ପ୍ରମାଣର ଅଭାବ ଯୋଗୁଁ ମହାପୁରୁଷ ଶ୍ରୀଶଂକର ଶ୍ରୀକ୍ଷେତ୍ର ପ୍ରତିଷ୍ଠିତ ଜଗନ୍ନାଥଙ୍କୁ ଲକ୍ଷ୍ୟକରି ଏହି ଶ୍ଳୋକ ରଚନା କରିଥିବା ସ୍ୱତଃସିଦ୍ଧ । ଶ୍ରୀଶଂକର ଶ୍ରୀକ୍ଷେତ୍ରରେ ମଠ ପ୍ରତିଷ୍ଠାକରି ସ୍ୱୀୟ ପ୍ରିୟ ଶିଷ୍ୟ ଶ୍ରୀ ପଦ୍ମପାଦାଚାର୍ଯ୍ୟଙ୍କୁ ସ୍ୱଧର୍ମମତ ପ୍ରଚାର କରିବା ପାଇଁ ଅବସ୍ଥାପିତ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ଶ୍ରୀଶଂକର ଓ ଶ୍ରୀ ପଦ୍ମପାଦାଚାର୍ଯ୍ୟଙ୍କ ଦୁଇଟି ପ୍ରତିମା ରତ୍ନସିଂହାସନ ଉପରେ ଚତୁର୍ଦ୍ଧାମୂର୍ତ୍ତି ନିକଟରେ ପୂଜିତ ହେଉଥିବାର ମାଦଳାପାଞ୍ଜିରୁ ଜଣାଯାଏ । ଶ୍ରୀଶଂକରଂକ ସମୟରୁ ଶ୍ରୀମନ୍ଦିରର ପରିଚାଳନାରେ ତାଂକ ସମ୍ପ୍ରଦାୟର ସନ୍ନ୍ୟାସୀମାନଂକ ବିଶେଷ କର୍ତ୍ତୃତ୍ୱ ପ୍ରତିଷ୍ଠିତ ହୋଇଥିଲା । ମହାତ୍ମା ଶଂକରଂକ ଦ୍ୱାରା ଶ୍ରୀଜଗନ୍ନାଥଂକ ବିଷ୍ଣୁତ୍ୱ ବା ପୁରୁଷୋତ୍ତମତ୍ୱ ପ୍ରତିପାଦିତ ହେଲା ପରେ ପରବର୍ତ୍ତୀ କାଳରେ ଏହା ସୁଧୀ ସମାଜରେ ସ୍ୱୀକୃତ ହୋଇଥିଲା ।

ଏତଦ୍ଭିନ୍ନ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଉତ୍କଳରେ ଆବିର୍ଭୂତ ବୌଦ୍ଧ କୋଷକାର ପୁରୁଷୋତ୍ତମ ବିଖ୍ୟାତ 'ଅମରକୋଷ'ର ପରିପୂରକ ଭାବରେ ରଚନା କରିଥିବା ସ୍ୱୀୟ କୋଷଗ୍ରନ୍ଥ 'ତ୍ରିକାଣ୍ଡଶେଷ'ରେ ବିଷ୍ଣୁ ପର୍ଯ୍ୟାୟରେ ଜଗନ୍ନାଥଙ୍କୁ ସ୍ଥାନ ଦେଇଛନ୍ତି । ଯଥା—

"ହେମ ଶଙ୍ଖ-ଶଗବଟ୍ଟୋ-ମନୁ-ଶାଶ୍ୱତ-ବାସ୍ପଶାଃ ।
ବର୍ଦ୍ଧମାନ-ସତାନନ୍ଦୋ-ଜଗନ୍ନାଥଃ-ସୂଯାମୁନଃ ।"

ଗ୍ରନ୍ଥ ଆରମ୍ଭରେ କୋଷକାର ପୁରୁଷୋତ୍ତମ ଲେଖିଛନ୍ତି ଯେ ତାଙ୍କ ସମୟକୁ ଅମରସିଂହଙ୍କ ଦ୍ୱାରା ଅନୁଲ୍ଲିଖିତ କେତେକ ନାମର ବିଶେଷ ପ୍ରଚାର ଯୋଗୁଁ ସେ ସ୍ୱୀୟ କୋଷ 'ତ୍ରିକାଣ୍ଡଶେଷ'ରେ ସେଗୁଡ଼ିକୁ ସ୍ଥାନ ଦେଇଛନ୍ତି । ଯଥା—

"ଅଲୌକିକତ୍ୱାଦମର ସ୍ୱକୋଷେ
ନ ଯାନି ନା ମାନି ସମୁଲ୍ଲିଲେଖ ।
ବିଲୋକ୍ୟତେ ତତ୍ପ୍ରଥୁନା ପ୍ରଚାର
ମସ୍ୟଂ ପ୍ରଯତ୍ନଃ ପୁରୁଷୋତ୍ତମସ୍ୟ ।"

ଉଦ୍ଧୃତ ଶ୍ଲୋକରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଜଗନ୍ନାଥ ଉକ୍ତ କୋଷ ପର୍ଯ୍ୟେନ ସମୟକୁ ସମଗ୍ର ଭାରତରେ ପୁରୁଷୋତ୍ତମ-ବିଷ୍ଣୁ ରୂପେ ଖ୍ୟାତି ଲାଭ କରିଥିଲେ ।

ସେହିପରି ନବମ ଶତାବ୍ଦୀରେ ପଶ୍ଚିମ ଭାରତରେ ଆବିର୍ଭୂତ ପ୍ରସିଦ୍ଧ ଜୈନ କବି ସିଦ୍ଧସେନ ଦିବାକର ମଧ୍ୟ ସ୍ୱକୃତ ଦ୍ୱାତ୍ରିଂଶଶ୍ଲୋକ ବିଶିଷ୍ଟ 'ବର୍ଦ୍ଧମାନ ଦ୍ୱାତ୍ରିଂଶିକା' ନାମକ ସ୍ତୁତିରେ ସ୍ୱୀୟ ଆରାଧ୍ୟ ମହାବୀର ବର୍ଦ୍ଧମାନଙ୍କୁ ହିନ୍ଦୁମାନଙ୍କ ଦ୍ୱାରା ଉପାସିତ ଶିବ, ବ୍ରହ୍ମା, ବିଷ୍ଣୁ, ଜଗନ୍ନାଥ ପଭୃତି ପ୍ରସିଦ୍ଧ ଦେବତାଙ୍କ ସହିତ ସମାନ ଆସନ ପ୍ରଦାନ କରିଛନ୍ତି ।

ଏଥିରୁ ପ୍ରତିପାଦିତ ହୁଏ ଯେ, ଶ୍ରୀକ୍ଷେତ୍ର ପ୍ରତିଷ୍ଠିତ ଜଗନ୍ନାଥଙ୍କ ମାହାତ୍ମ୍ୟ ନବମ ଶତାବ୍ଦୀ ବେଳକୁ ଭାରତର ପଶ୍ଚିମାଞ୍ଚଳରେ ମଧ୍ୟ ପରିବ୍ୟାପ୍ତ ହୋଇଥିଲା । ଦିବାକରଙ୍କ ପଦାଙ୍କ ଅନୁସରଣ କରି ଗୁଜୁରାଟର ଭାରତ ପ୍ରସିଦ୍ଧ ଜୈନ କବି ଓ କୋଷକାର ହେମଚନ୍ଦ୍ର (୧୦୮୮-୧୧୭୨) ସ୍ୱୀୟ 'ଅଭିଧାନ ଚନ୍ତାମଣି' ଗ୍ରନ୍ଥରେ ଜଗନ୍ନାଥଙ୍କୁ ବିଷ୍ଣୁ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରିଛନ୍ତି ।

"ସୋମସିନ୍ଧୁ ଜଗନ୍ନାଥୋ ଗୋବର୍ଦ୍ଧନଧରୋଽପି ଚ ।"

ଭାରତର ପୂର୍ବ ପ୍ରାନ୍ତରେ ପ୍ରାୟ ୧୦୦୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ବିରଚିତ ଓ ସମଗ୍ର ଭାରତରେ ତନ୍ତ୍ରମତର ଏକ ପ୍ରାମାଣ୍ୟ ଗ୍ରନ୍ଥ ରୂପେ ସ୍ୱୀକୃତ 'କାଳିକାପୁରାଣ'ରେ ଜଗନ୍ନାଥ 'ଓଡ୍ରେଶ' ବା ଓଡ୍ର (ଉତ୍କଳ) ର ଶ୍ରେଷ୍ଠ ଦେବତା ରୂପେ ପ୍ରଚାରିତ ହୋଇଛନ୍ତି । ଯଥା—

"ଓଡ୍ରାଖ୍ୟଂ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଲଶୈଳକମ୍
ତୃତୀୟଂ ପୂର୍ଣ୍ଣପୀଠନ୍ତୁ କାମ ରୂପଂ ଚତୁର୍ଥକମ୍ ।
ଓଡ୍ରପୀଠଂ ପଶ୍ଚିମେ ତୁ ତଥୈବୋଡ୍ରେଶ୍ୱରୀଂ ଶିବାମ୍,
କାତ୍ୟାୟିନୀଂ ଜଗନ୍ନାଥମୋଡ୍ରେଶଂ ଚ ପ୍ରପୂଜୟେତ୍ ।"

ଗ୍ରନ୍ଥକାର କାମରୂପବାସୀ ହେଲେ ମଧ୍ୟ 'ଓଡ୍ରପୀଠ'କୁ ତନ୍ତ୍ରପୀଠ ଚତୁଷ୍ଟୟ ମଧ୍ୟରେ ପ୍ରଥମ ସ୍ଥାନ ଏବଂ କାମରୂପକୁ ଚତୁର୍ଥ ସ୍ଥାନ ପ୍ରଦାନ କରି ସ୍ୱୀୟ ନିରପେକ୍ଷତା ପ୍ରକାଶ କରିଛନ୍ତି । ଦଶମ ଶତାବ୍ଦୀରେ ମଧ୍ୟପ୍ରଦେଶର ସତନା ଜିଲ୍ଲାର ମହୀୟର ନାମକ ସ୍ଥାନରେ ପର୍ବତଶିଖରରେ ନିର୍ମିତ ସରସ୍ୱତୀ ମନ୍ଦିରରେ ଥିବା ଏକ ବିସ୍ତୃତ ଶିଳାଲେଖରୁ ସ୍ପଷ୍ଟ ଜଣାଯାଏ ଯେ, ସେ ଯୁଗରେ ମଧ୍ୟ ସମୁଦ୍ରସ୍ନାନ ପରେ ଓଡ୍ର ଦେଶର ସମୁଦ୍ର କୂଳରେ ଅବସ୍ଥିତ ପୁରୁଷୋତ୍ତମ (ଜଗନ୍ନାଥ)ଙ୍କର ଦର୍ଶନ ପରମବ୍ରହ୍ମଙ୍କ ପଦପ୍ରାପ୍ତିର ପ୍ରଧାନ ସୋପାନ ରୂପେ ବିବେଚିତ ହେଉଥିଲା । ଯଥା—

"ସମୁଦ୍ରମଜ୍ଜନାନ୍ନୂନମୋଡ୍ରେଷୁ ପୁରୁଷୋତ୍ତମମ୍ ।
ଦୃଷ୍ଟ୍ୱା ତଦାନ୍ତିକେ ଭୂୟଃ ପୁର ଟଚ୍ଛତ୍ୟୟଂ ଶିଶୁଃ ।" ୩୬ ।

× × ×

ତତଶ୍ଚ ଗଣିତୈରେବ ଦିବସୈର୍ଦେବଦୁର୍ଲଭଃ ।
ପ୍ରାପ୍ତବାନ୍ ଜଲଧେସ୍ତୀରଂ ଦୃଷ୍ଟଶ୍ଚ ପୁରୁଷୋତ୍ତମଃ ।। ୩୯ ।।
ତେନୈବ ଗଚ୍ଛତା ଭୂୟଂ ପରମଂ ବ୍ରହ୍ମଣଃ ପଦମ୍ ।
ଆଖ୍ୟାତମିଦମାଖ୍ୟାନଂ ଲୋକାନାଂ ତନ୍ନିବାସିନାମ୍ ।" ।। ୪୦ ।।

ସୁଦୂର କାଶ୍ମୀର ରାଜ୍ୟରେ ଦଶମ ଶତାବ୍ଦୀରେ ଆବିର୍ଭୂତ ପ୍ରଖ୍ୟାତ ପଣ୍ଡିତ ମହାମହେଶ୍ୱରାଚାର୍ଯ୍ୟ ଅଭିନବ ଗୁପ୍ତ, 'ରୁଦ୍ରାକ୍ଷମାଳ' ନାମକ ପ୍ରସିଦ୍ଧ ପ୍ରାଚୀନ ତନ୍ତ୍ର ଗ୍ରନ୍ଥର ଭାଷ୍ୟ ରଚନା କରିଥିଲେ । ଏହି ତନ୍ତ୍ର ଗ୍ରନ୍ଥରେ 'କମଳୋରୁଗତ' ଜଗନ୍ନାଥଙ୍କ ମାହାତ୍ମ୍ୟ କୀର୍ତ୍ତିତ ହୋଇଅଛି ।

"ଏତେଷାଂ ସ୍ତବନଂ କୁର୍ଯ୍ୟାତ୍ତୁ ଦରଦେବଦମନ୍ୱିତମ୍ ।
ଏତତ୍ତୁ ପ୍ରକାରକରଣେ ଯଷ୍ଟ ପ୍ରଞ୍ଜ୍ୟଦ୍ରମାଶୁଗଃ ।।
ନିତ୍ୟାନବେଷ୍ଟଃ ସର୍ବଜ୍ଞ ଭାବନାଗର୍ଦ୍ଧରୂପଧୃକ୍ ।
ସ ପଶ୍ୟେତ୍ ଜଗନ୍ନାଥଂ କମଳୋରୁଗତଂ ହରମ୍ ।"

ଉକ୍ତ ଶ୍ଳୋକଦ୍ୱୟରୁ ନବମ ଶତାବ୍ଦୀ ବେଳକୁ ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କ ସହିତ ଲକ୍ଷ୍ମୀ ମଧ୍ୟ ପୂଜିତ ହେଉଥିବାର ନିଃସନ୍ଦେହରେ ପ୍ରତିପାଦିତ ହୁଏ । ତେଣୁ

ଶ୍ରୀକ୍ଷେତ୍ରର ପଣ୍ଡିତ ସମାଜ ସମ୍ମୁଖରେ ରଥଯାତ୍ରା ସମୟରେ ଅଭିନୀତ ଭାରତ ପ୍ରସିଦ୍ଧ କବି ମୁରାରି (ନବମ ଶତାବ୍ଦୀ) କୃତ ଅନର୍ଘ ରାଘବ ନାଟକର ଆରମ୍ଭରେ କମଳାଲିଙ୍ଗିତ ପୁରୁଷୋତ୍ତମଙ୍କ ସ୍ତୁତିଗାନ କରାଯାଇଛି । ଯଥା—

"ସୂତ୍ରଧାରଃ—ଅଲମତି ବିସ୍ତରେଣ । ଭୋ ଭୋ ଲବଣୋଦ-ବେଲା···ବନାଳୀ ତମାଳ ତଳ୍ପକନ୍ଦଳସ୍ୟ ତ୍ରିଭୁବନ ମୌଳିମଣ୍ଡନ ମହାନୀଳମଣେଃ କମଳାକୁଚ କଳଶ-କେଳି କସ୍ତୁରିକାପତ୍ରାଙ୍କୁରସ୍ୟ ଭଗବତଃ ପୁରୁଷୋତ୍ତମସ୍ୟ ଯାତ୍ରାୟାମୁପସ୍ଥାନୀୟା ସଭାସଦଃ ।"

ଉକ୍ତ ଉଦ୍ଧୃତରେ ମହାନୀଳମଣି ଭଗବାନ ପୁରୁଷୋତ୍ତମଙ୍କ 'ଇନ୍ଦ୍ରନୀଳମଣି ସ୍ୱରୂପତ୍ୱ' ବା କୃଷ୍ଣବର୍ଣ୍ଣ ପ୍ରଖ୍ୟାପିତ ହୋଇଅଛି । ନାଟକର ପ୍ରଥମ ମଙ୍ଗଳାଚରଣ ଶ୍ଳୋକରେ ମହାକବି ମୁରାରି ସ୍ୱଆରାଧ୍ୟ ପୁରୁଷୋତ୍ତମଙ୍କ "ପୁଣ୍ଡରୀକମୁକୁଳକମ୍ବୋ-ସନ୍ନିଭୀକୃତଃ" ବା ଶ୍ୱେତପଦ୍ମ ମୁକୁଳ ଓ ଶଙ୍ଖସଦୃଶ ଶୁକ୍ଳବର୍ଣ୍ଣ । "ଜ୍ୟୋତିଷ୍ମତାଲୋଚନେ" ବା ଦେଦୀପ୍ୟମାନ ଗୋଲାକାର ଲୋଚନ ଦ୍ୱୟର ସ୍ତୁତିଗାନ କରିଛନ୍ତି ।

ମଙ୍ଗଳାଚରଣରେ କେବଳ ଲୋଚନଦ୍ୱୟର ସ୍ତୁତିଗାନ କରିବା ସଂସ୍କୃତ ସାହିତ୍ୟରେ ମଧ୍ୟ କ୍ୱଚିତ ପରିଦୃଷ୍ଟ ହୁଏ । ଏହି ଶ୍ଳୋକରେ ଇନ୍ଦ୍ରନୀଳମଣି ସଦୃଶ କୃଷ୍ଣବର୍ଣ୍ଣ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଲୋକମୁଖରେ ପ୍ରସିଦ୍ଧି ଲାଭ କରିଥିବା 'ଚକାନୟନ' ପ୍ରସ୍ତୁତ ହୋଇଥିବା ବିଷୟ ପ୍ରଥମେ ସଂସ୍କୃତ ସାହିତ୍ୟବିତ୍ ଶ୍ରୀ ବିମଳ କିଶୋର ମିଶ୍ର ଆଇ. ଏ. ଏସ୍, ମୋର ହୃଦ୍‌ବୋଧ କରାଇ ଥିବାରୁ ମୁଁ ତାଂକଠାରେ ଋଣୀ । କାରଣ ଇତିହାସ ଦୃଷ୍ଟିରୁ ଏହି ଶ୍ଳୋକର ବିଶେଷ ଗୁରୁତ୍ୱ ରହିଛି । ଯେହେତୁ "ଚକାନୟନ"ର ପ୍ରଶସ୍ତି ଗାନଦ୍ୱାରା ପ୍ରକାରାନ୍ତରେ ଶ୍ରୀ ଜଗନ୍ନାଥ ପୁରୁଷୋତ୍ତମଂକ ଦାରୁମୟବିଗ୍ରହତ୍ୱ ପ୍ରମାଣିତ ହେଉଅଛି । ପାଷାଣ ପ୍ରତିମାରେ 'ଚକାନୟନ' ପ୍ରକଟିତ ହୁଏନାହିଁ । ମହାକବି ଦ୍ୱିତୀୟ ମଙ୍ଗଳାଚରଣ ଶ୍ଳୋକଟି 'ତସ୍ମୈ ଜଗନ୍ନିଧୟେ ନମଃ'ରେ ସମାପ୍ତ କରି ନାଟକ ଆରମ୍ଭ କରିଥିବାରୁ ତାଂକର ଆରାଧ୍ୟ ଦେବତା 'ଜଗନ୍ନିଧି' ଯେ 'ଜଗନ୍ନାଥ' ତାହା ସ୍ପଷ୍ଟ ପ୍ରତିପାଦିତ ହେଉଅଛି । ନାଟକର ଷଷ୍ଠ ଶ୍ଳୋକର ଶେଷ ପଂକ୍ତି 'ଜଗଦାନନ୍ଦକାସ୍ତ ସନ୍ଦର୍ଭସ୍ୟ ତୃଗମହେ'ରେ 'ଜଗଦାନନ୍ଦକନ୍ଦ' ପଦ ଦ୍ୱାରା ଶ୍ରୀଜଗନ୍ନାଥ ସୂଚିତ ହୋଇଛନ୍ତି । 'ରୁଦ୍ରଯାମଳ' ସଦୃଶ ପ୍ରାଚୀ 'ତନ୍ତ୍ରଯାମଳ' ଗ୍ରନ୍ଥରୁ ମଧ୍ୟ ଜଣାଯାଏ ଯେ ଭାରତବର୍ଷରେ ଉତ୍କଳ ଦେଶରେ ଶ୍ରୀକ୍ଷେତ୍ର ରୂପ ଭୂସ୍ୱର୍ଗରେ ପୁରୁଷୋତ୍ତମ ରୂପେ ପ୍ରଖ୍ୟାତ ଦାରୁରୂପୀ ଜଗନ୍ନାଥ ଭକ୍ତମାନଙ୍କୁ ଅଭୟ ପ୍ରଦାନ କରୁଛନ୍ତି । ଯଥା—

"ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମଃ ।
ଦାରୁରୂପୀ ଜଗନ୍ନାଥଃ ଭକ୍ତାନାମଭୟପ୍ରଦଃ ।"

ଅତଏବ ଉପରୋକ୍ତ ପ୍ରମାଣଗୁଡ଼ିକ ସାହାଯ୍ୟରେ ନବମ ଶତାବ୍ଦୀ ବେଳକୁ ଶ୍ରୀକ୍ଷେତ୍ରସ୍ଥ ଦାରୁରୂପୀ ଜଗନ୍ନାଥ ପୁରୁଷୋତ୍ତମ ରୂପେ ସମସ୍ତ ଭାରତରେ ପ୍ରଖ୍ୟାତ ଓ ସମ୍ମାନିତ ହୋଇଥିବାର ନିର୍ବିବାଦରେ ନିର୍ଦ୍ଧାରଣ କରାଯାଇପାରେ ।

ମାଦଳାପାଞ୍ଜିର ଐତିହାସିକତା ସମ୍ବନ୍ଧରେ ବାଦାନୁବାଦ ରହିଥିଲେ ମଧ୍ୟ ସୋମବଂଶୀୟ ଶ୍ରେଷ୍ଠ ସମ୍ରାଟ ଯଯାତିଙ୍କ ଦ୍ୱାରା ଶ୍ରୀକ୍ଷେତ୍ରରେ ଏକ ମନ୍ଦିର ସମ୍ପର୍କରେ ଖ୍ରୀଷ୍ଟାବ୍ଦ ୧୦୫୦ରେ ରଚିତ କୃଷ୍ଣମିଶ୍ରଙ୍କ ପ୍ରବୋଧ ଚନ୍ଦ୍ରୋଦୟ ନାଟକର ମଙ୍ଗଳାଚରଣରୁ କେତେକ ପ୍ରମାଣ ମିଳେ ।

"ପୁରୁଷଃ-ଅସ୍ତ୍ୟୁତ୍କଳ ଦେଶାଗତୋଽପି । ଅସ୍ତି ତତ୍ର ସାଗରତୀର-ସନ୍ନିବେଶେ ପୁରୁଷୋତ୍ତମଶବ୍ଦିତଂ ଦେବାୟତନମ୍ ।

× × ×

ପୁରୁଷୋତ୍ତମାୟତନାତ୍ତୁ ମଦମାନୌ ସାଷ୍ଟାଙ୍ଗପାତଂ ପ୍ରଣମ୍ୟ ବିଜ୍ଞାପୟତଃ ।"

ଏ ପର୍ଯ୍ୟନ୍ତ ଉତ୍କଳର ଚୋଳଗଙ୍ଗଙ୍କ ପରବର୍ତ୍ତୀ ଗଙ୍ଗସମ୍ରାଟମାନଙ୍କର ଏଗାରଟି ତାମ୍ରଶାସନ ଆବିଷ୍କୃତ ହେଲଣି । ପ୍ରତ୍ୟେକ ତାମ୍ରପତ୍ରରେ ତାଙ୍କ ପୂର୍ବପୁରୁଷ ଗଙ୍ଗେଶ୍ୱରଦେବ ତତ୍ପୂର୍ବବର୍ତ୍ତୀ ନୃପତିମାନଙ୍କଦ୍ୱାରା ଉପେକ୍ଷିତ ପ୍ରାସାଦକୁ ନୂତନଭାବେ ନିର୍ମାଣ କରିଥିବାର ଉକ୍ତି ସଗର୍ବେ ଉଦ୍‌ଘୋଷିତ ହୋଇଛି ।

× × ×

"ପ୍ରାସାଦଂ ପୁରୁଷୋତ୍ତମସ୍ୟନୃପତିଃ କୋ ନାମ କର୍ତ୍ତୁଂକ୍ଷମସ୍ତସ୍ୟ
ତଦାଦ୍ୟ ନୃପୈରୁପେକ୍ଷିତ ମୟଂ
ଚକ୍ରେଽଥଗଙ୍ଗେଶ୍ୱରଃ ।।"

ଏହି ଜଗନ୍ନାଥମନ୍ଦିର ନିର୍ମାଣ ପରେ ପୁରୁଷୋତ୍ତମକ୍ଷେତ୍ର ସମଗ୍ର ଭାରତରେ ବିଶିଷ୍ଟ ସ୍ଥାନ ଅଧିକାର କଲା । ଏଠାରେ 'ପଣ୍ଡିତମଣ୍ଡଳୀ ଦ୍ୱାରା ସ୍ୱୀକୃତ ନହେଲେ କୌଣସି ନୂତନ ଧର୍ମମତ ସମଗ୍ର ଭାରତରେ ଆଦୃତ ଓ ପ୍ରଚାରିତ ହୋଇପାରୁ ନଥିଲା । ତେଣୁ ଦକ୍ଷିଣ ଭାରତରେ ଦ୍ୱାଦଶ ଶତାବ୍ଦୀରେ ଆବିର୍ଭୂତ ଚାରିଜଣ ପ୍ରଧାନ ବୈଷ୍ଣବ ଧର୍ମପ୍ରଚାରକ ଶ୍ରୀରାମାନୁଜାଚାର୍ଯ୍ୟ, ଆଚାର୍ଯ୍ୟ ନିମ୍ବାର୍କ, ଆଚାର୍ଯ୍ୟ ବିଷ୍ଣୁସ୍ୱାମୀ ଓ ଶ୍ରୀ ମାଧବାଚାର୍ଯ୍ୟ ସ୍ୱସ୍ୱ-ଧର୍ମମତର ସ୍ୱୀକୃତି ଓ ପ୍ରଚାରପାଇଁ ଶ୍ରୀକ୍ଷେତ୍ରରେ ନିଜ ନିଜ ସମ୍ପ୍ରଦାୟର ମଠ ପ୍ରତିଷ୍ଠା କରିଥିଲେ । ଭାରତ ପ୍ରସିଦ୍ଧ ଉତ୍କଳୀୟ କବିରାଜ ଶ୍ରୀଜୟଦେବ, ଶ୍ରୀଜଗଦୀଶ ବା ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ସ୍ୱୀୟ ଅମରକୃତି ଶ୍ରୀ ଗୀତଗୋବିନ୍ଦର ରଚନା ଓ ନିତ୍ୟ ଆବୃତ୍ତିଦ୍ୱାରା ଦେଶ ବିଦେଶରେ ତଦୀୟ କୃତିର ଖ୍ୟାତି ସହିତ

ଶ୍ରୀ ଜଗନ୍ନାଥଙ୍କ ମାହାତ୍ମ୍ୟ ମଧ୍ୟ ପ୍ରଗୃଣିତ ହୋଇଥିଲା । ତେଣୁ ଭାରତର ଶେଷ ସ୍ୱାଧୀନ ସମ୍ରାଟ୍ ପୃଥ୍ୱୀରାଜଙ୍କ ସଭାକବି 'ଚନ୍ଦବରଦାଇ' ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ ମହାକାବ୍ୟ 'ପୃଥ୍ୱୀରାଜରାସୋ' ଗ୍ରନ୍ଥରେ କବିସ୍ତୁତି ପ୍ରସଙ୍ଗରେ ଶ୍ରୀ ଗୀତଗୋବିନ୍ଦକାର ଶ୍ରୀ ଜୟଦେବଂକ ସ୍ତୁତିଗାନରେ ସନ୍ତୁଷ୍ଟ ନ ହୋଇ କାନ୍ୟକୁବ୍ଜରାଜ ବିଜୟପାଳଂକ ଦିଗ୍ବିଜୟ ବର୍ଣ୍ଣନା ସମୟରେ ସମୁଦ୍ରତୀରବର୍ତ୍ତୀ କଟକରେ ପୂଜିତ ଶ୍ରୀ ଜଗନ୍ନାଥଙ୍କ ମାହାତ୍ମ୍ୟ ଗାନ କରିଛନ୍ତି । ଯଥା—

'କନ୍‌ବଜ୍‌ଜନ୍ଦ କାମଧ୍ୱଜ । ରାଜା ବିଜପାଲ ନୃପବର ।

× × ×

ସରିତ ସମୁଦ୍ରତଟହ । କଟକମସ୍ସ ମାର୍ଗ ନୟନନନ୍ଦା !

— — —

ଦବଦ୍ଦବସ ଖଣ୍ଡ ମଣ୍ଡଳପତି, ଜଗନ୍ନାଥ ପୂଜିତ ଦିନନ୍ଦ,
ଦିଗ୍‌ବିଜନ୍ଦକରନ୍ ବିଜୟପାଲନୃପ, ସପତକୋଟିଭିଦ
ଯୋତନନ୍ଦ ।”

ହିନ୍ଦୀ ଭାଷାରେ ୧୨୧୨ ସମ୍ବତ୍ ବା ୧୧୫୬ ଖ୍ରୀଷ୍ଟାବ୍ଦରେ କବି ନରପତି ନାଲ୍ହଙ୍କ ଦ୍ୱାରା ରଚିତ ପ୍ରାଚୀନତମ ରାସୋ ମହାକାବ୍ୟ 'ବିସଲଦେବ ରାସୋ'ର ମଧ୍ୟ ଦୁଇଟି ସ୍ଥାନରେ ଶ୍ରୀ ଜଗନ୍ନାଥଂଙ୍କ ମାହାତ୍ମ୍ୟ କୀର୍ତ୍ତିତ ହୋଇଥିବାର ଦେଖାଯାଏ । ଉକ୍ତ 'ରାସୋ'ରେ ଦିଗ୍ବିଜୟୀ ମହାବୀର ସଲଦେବଙ୍କ ବିଜୟବୃତ୍ତାନ୍ତ ବର୍ଣ୍ଣନା ପ୍ରସଙ୍ଗରେ 'ଯାଦବପତି' ଶ୍ରୀଜଗନ୍ନାଥଂକ କ୍ଷେତ୍ର ପରିଦର୍ଶନ ଓ ଉପାସନା ଏବଂ ଉତ୍କଳରାଜ ଓ ତାଂକର 'ପାଟମହାଦେବୀ' (ପାଟରାଣୀ)ଙ୍କ ଦ୍ୱାରା ସମ୍ମାନିତ ହୋଇଥିବା ବିଷୟର ଉଲ୍ଲେଖ ଦେଖାଯାଏ । ଅତଏବ ୧୧୯୨ ଖ୍ରୀଷ୍ଟାବ୍ଦରେ ତାରାୟଣ ଯୁଦ୍ଧକ୍ଷେତ୍ରରେ ପୃଥ୍ୱୀରାଜଙ୍କ ପରାଜୟ ଓ ଉତ୍ତର ଭାରତରେ ମୁସଲମାନ ସାମ୍ରାଜ୍ୟ ପ୍ରତିଷ୍ଠା ବେଳକୁ ମହୋଦଧିତୀରବାସୀ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ଦେଶ ସୁବିଦିତ ହୋଇଥିଲା ।

ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ଭାରତ ଇତିହାସରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଥିଲା । ଦିଲ୍ଲୀର ପୃଥ୍ୱୀରାଜ ଓ କନୌଜର ଜୟଚନ୍ଦ୍ରଙ୍କ ନିଧନ ପରେ ରଣଦୃପ୍ତବିଜୟୀ ମୁସଲମାନ ସେନା ପ୍ରାୟ ଦଶ ବର୍ଷ ମଧ୍ୟରେ ଉତ୍କଳର ଉତ୍ତର ସୀମା ଗଙ୍ଗା ନଦୀ ପର୍ଯ୍ୟନ୍ତ ନିଜର ଆଧିପତ୍ୟ ବିସ୍ତାର କରିନେଲେ । ତତ୍ପରେ ସେମାନେ ଉତ୍କଳ ଅଧିକାର କରିବା ପାଇଁ ବାରମ୍ବାର ଉଦ୍ୟମ ଚଳାଇଲେ । କିନ୍ତୁ ରଣନିପୁଣ ସାହାସୀ ଓଡ଼ିଆ ପାଇକ ସେନାର ପ୍ରବଳ ପ୍ରତିରୋଧ ଯୋଗୁଁ ସେମାନଙ୍କ ଉଦ୍ୟମ ବ୍ୟର୍ଥ ହେଲା । ପ୍ରଖ୍ୟାତଯଶା ଅନଙ୍ଗଭୀମ ଦେବ (୧୧୧୨-୧୧୩୮) ଆତ୍ମରକ୍ଷାମୂଳକ ନୀତି

ବର୍ଜ୍ଜନ କରି ବଙ୍ଗ ଦେଶ ଆକ୍ରମଣ କରି ମୁସଲମାନ ସେନାଙ୍କୁ ପରାସ୍ତ କଲେ । ସେ ସମଗ୍ର ଓଡ଼ିଆ ଜାତିକୁ ଦେଶପ୍ରାଣତାରେ ଉଦ୍‌ବୁଦ୍ଧ କରିବା ପାଇଁ ସ୍ୱୀୟ ବିରାଟ ସାମ୍ରାଜ୍ୟକୁ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ପାଦରେ ଉତ୍ସର୍ଗ କରି ନିଜକୁ ତାଙ୍କର 'ରାଉତ' ବା ପ୍ରତିନିଧି ବୋଲି ଘୋଷଣା କଲେ । ସେହି ସମୟରୁ ଆଗଙ୍ଗାଗୋଦାବରୀ ବିସ୍ତୃତ ଉତ୍କଳଭୂମି ହେଲା 'ପୁରୁଷୋତ୍ତମ ସାମ୍ରାଜ୍ୟ ।'

ଅନଙ୍ଗ ଭୀମଦେବଙ୍କ ପାଞ୍ଚୋଟି ଅଭିଲେଖ ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିରର ଜଗମୋହନରେ ଖୋଦିତ ହୋଇଥିବାର ଦେଖାଯାଏ । ସେଥିମଧ୍ୟରୁ ଦୁଇଟି ଅଭି-ଲେଖରେ ତାଙ୍କ ଶାସିତ ସାମ୍ରାଜ୍ୟ ପୁରୁଷୋତ୍ତମ ସାମ୍ରାଜ୍ୟ ଏବଂ ସେ ନିଜେ ତାହାର ପରିଚାଳକ ବା ରାଉତ ବୋଲି ଘୋଷଣା କରିଛନ୍ତି ।

ସ୍ୱସ୍ତି ଶ୍ରୀ ଭଗବତ୍ ପୁରୁଷୋତ୍ତମ ପୁତ୍ର ଚତୁଃସାଗର ପର୍ଯ୍ୟନ୍ତାଧିପତିଃ ସକଳ ବିଦ୍ୱଜ୍ଜନାଳଂକୃତ ରାଉତ ଭୀମଦେବାବ୍ଦେ × × × ୧୨୩୦ ଖ୍ରୀଷ୍ଟାବ୍ଦ ।

× × ×

ସ୍ୱସ୍ତି ଶ୍ରୀମଦନୀୟଙ୍କ ଭୀମଦେବସ୍ୟ ପ୍ରବର୍ଦ୍ଧମାନେ ପୁରୁଷୋତ୍ତମ ସାମ୍ରାଜ୍ୟେ ଚତୁର୍ସ୍ତ୍ରିଂଶତମେ ଅଙ୍କେ × × × ୧୨୩୮ ଖ୍ରୀଷ୍ଟାବ୍ଦ"

ଏଣୁ ଶ୍ରୀକ୍ଷେତ୍ରସ୍ଥ ଜଗନ୍ନାଥ ହେଲେ ସମଗ୍ର ରାଷ୍ଟ୍ରର ରାଷ୍ଟ୍ରଦେବତା । ସମ୍ରାଟଙ୍କ ନାମରେ ସୁନିଆ ଦିନ ଅଙ୍କ କଟା ନ ଯାଇ ପୁରୁଷୋତ୍ତମ ବିଗ୍ରହଙ୍କ ନାମରେ ଅଙ୍କ କଟାଗଲା । ଏହା ଫଳରେ ସମଗ୍ର ସାମ୍ରାଜ୍ୟରେ ଆସିଲା ନବ ଜାଗରଣ । ଶ୍ରୀଜଗନ୍ନାଥଙ୍କ ପ୍ରତି ଅତୁଳ ଭକ୍ତିମାନ ଦୁର୍ଦ୍ଧର୍ଷ ଓଡ଼ିଆ ପାଇକବାହିନୀ ନରସିଂହଙ୍କ ରାଜତ୍ୱ କାଳରେ ୧୨୪୫-୪୬ ଖ୍ରୀଷ୍ଟାବ୍ଦରେ ଇତିହାସ ପ୍ରସିଦ୍ଧ ଲକ୍ଷ୍ମଣାବତୀ ଯୁଦ୍ଧରେ ବଙ୍ଗର ମୁସଲମାନ ଶାସକ ଓ ଦିଲ୍ଲୀର ସୁଲତାନଙ୍କ ମିଳିତ ବିଶାଳ ବାହିନୀକୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରି ଦେଲେ । ଉତ୍ତରଭାରତରେ ପ୍ରାୟ ଅର୍ଦ୍ଧଶତ ବର୍ଷ ମଧ୍ୟରେ (୧୧୯୨—୧୨୪୬) ମୁସଲମାନ ବାହିନୀର ଏପରି ଘୋର ବିପର୍ଯ୍ୟୟ କେବେ ଘଟି ନଥିଲା । ଶ୍ରୀଜଗନ୍ନାଥଙ୍କ ଅପାର କରୁଣା ବଳରେ ଏପରି ଅଭୂତପୂର୍ବ ବିଜୟ ଘଟିଲା ବୋଲି ହିନ୍ଦୁମାନଙ୍କ ମନରେ ଧାରଣା ବଦ୍ଧମୂଳ ହୋଇଗଲା । ସମଗ୍ର ପୂର୍ବଖଣ୍ଡ ବା ଉତ୍କଳ ଅନ୍ଧ୍ରର ଉତ୍ତରାଂଶ, ମଧ୍ୟପ୍ରଦେଶର ପୂର୍ବାଂଶ, ବିହାର ପ୍ରଦେଶର ଦକ୍ଷିଣାଂଶ, ସମଗ୍ର ବଙ୍ଗଦେଶ, କାମରୂପ ବା ଆସାମ ଓ ମଣିପୁର ପ୍ରଭୃତି ରାଜ୍ୟରେ କାଳକ୍ରମେ ଶତ ଶତ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା । ସମଗ୍ର ବଙ୍ଗଦେଶରେ ଜଗନ୍ନାଥ ମହାପ୍ରଭୁଙ୍କ ଦ୍ୱାଦଶଯାତ୍ରା ବଙ୍ଗବାସୀଙ୍କ ଜାତୀୟ ଯାତ୍ରା ରୂପେ ସ୍ୱୀକୃତ ପାଳିତ ହୋଇଥିବା ବଙ୍ଗର

ଶ୍ରେଷ୍ଠ ସ୍ମୃତିକାର ରଘୁନନ୍ଦନ ଭଟ୍ଟାଚାର୍ଯ୍ୟକୃତ 'ଯାତ୍ରାତତ୍ତ୍ୱ' (ପ୍ରାୟ ୧୫୬୦) ଗ୍ରନ୍ଥ ପାଠରୁ ଜଣାଯାଏ ।

ଶ୍ରୀ ଜଗନ୍ନାଥ ମନ୍ଦିର ନିର୍ମାଣ ପରେ ପୂର୍ବଖଣ୍ଡରେ ଉଲ୍ଲେଖିତ ଛଅ ଶହ ଜଗନ୍ନାଥ ଓ ଦଧିବାମନ ମନ୍ଦିରଗୁଡ଼ିକ ମଧ୍ୟରୁ କେତେକ ମୁସଲମାନ ରାଜତ୍ୱ କାଳରେ (୧୫୬୮-୧୭୫୧ ଖ୍ରୀଷ୍ଟାବ୍ଦ) ଧ୍ୱଂସ କରିଯାଇଥିଲା । ଅନ୍ୟ କେତେକ କାଳକ୍ରମେ ଭଗ୍ନ, ପତନୋନ୍ମୁଖ ବା ବିଲୁପ୍ତ ହୋଇଗଲା । ମୁସଲମାନ ଆକ୍ରମଣ ଫଳରେ ନଷ୍ଟ ହୋଇଥିବା ମନ୍ଦିରଗୁଡ଼ିକ ହେଉଛି ଚୋଡ଼ଗଙ୍ଗଦେବଙ୍କ ରାଣୀ କସ୍ତୁରୀ କାମୋଦିନୀଙ୍କ ଦ୍ୱାରା ଟିକିକାଲିଠାରେ ୧୦୭୨ ଶକାବ୍ଦ ବା ୧୧୫୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ଜଗନ୍ନାଥମନ୍ଦିର ଅନଙ୍ଗଭୀମଦେବଙ୍କ ଦ୍ୱାରା ୧୧୫୨ଶକାବ୍ଦ ବା ୧୨୨୦ଖ୍ରୀଷ୍ଟାବ୍ଦରେ ରାଜଧାନୀ ଅଭିନବ ବାରାଣସୀ-କଟକ ବା ବର୍ତ୍ତମାନ କଟକ ସହରରେ ନିର୍ମିତ ପୁରୁଷୋତ୍ତମ ମନ୍ଦିର ବିରଜା କ୍ଷେତ୍ର ବା ଯାଜପୁରର ଜଗନ୍ନାଥ ମନ୍ଦିର ଓ ମୁକ୍ତିମଣ୍ଡପ, କେନ୍ଦ୍ରାପଡ଼ାର ପ୍ରସିଦ୍ଧ ବଳଦେବଜୀ ମନ୍ଦିର । ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ ରାଣୀ ଚାନ୍ଦଲ ଦେବୀ ବାଲିପାଟଣା ନିକଟବର୍ତ୍ତୀ ବାଗଲପୁର ଗ୍ରାମ ସ୍ଥାପନ କରି ଏହା ନିକଟରେ ଏକ ଇଷ୍ଟକନିର୍ମିତ ମନ୍ଦିରଟିରେ ବଳରାମ, ସୁଭଦ୍ରା ଓ ଜଗନ୍ନାଥଙ୍କ ପାଷାଣ ପ୍ରତିମା ସ୍ଥାପନ କରିଥିଲେ (ପ୍ରାୟ ୧୧୯୫ ଖ୍ରୀଷ୍ଟାବ୍ଦ) । ବର୍ତ୍ତମାନ ମନ୍ଦିରଟିର ନିମ୍ନାଂଶ ମଧ୍ୟରେ ବିଗ୍ରହତ୍ରୟ ପରିତ୍ୟକ୍ତ ଅବସ୍ଥାରେ ରହିଅଛି ।

ଲିଙ୍ଗରାଜ ମନ୍ଦିର ବେଢ଼ା ମଧ୍ୟରେ ଦକ୍ଷିଣ ଅଡ଼କୁ ଏକ କ୍ଷୁଦ୍ର ମନ୍ଦିର ଅନନ୍ତେଶ୍ୱର ନାମରେ ପରିଚିତ । ଏଥିରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କର ମୁଗୁନି ପଥରରେ ଖୋଦିତ ତିନୋଟି କମନୀୟ ମୂର୍ତ୍ତି ଅକ୍ଷୁଣ୍ଣ ଅବସ୍ଥାରେ ଥିବାର ଦେଖାଯାଏ । ଖୁବ୍ ସମ୍ଭବତଃ ଏହା ଅନଙ୍ଗଭୀମ ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହେବାର ମନେହୁଏ । "ଅମ୍ରା-ରାମ ଶତାଶ୍ରିତ । ଲିଙ୍ଗକୋଟି ସମାବୃତ" । ଏକାମ୍ର କାନନ ବା ଭୁବନେଶ୍ୱରରେ ନରସିଂହ ଦେବଙ୍କ ଭଗିନୀ ଚନ୍ଦ୍ରିକାଦେବୀ ୧୨୦୦ ଶକାବ୍ଦ ବା ୧୨୭୮ ଖ୍ରୀଷ୍ଟାବ୍ଦରେ, 'ବଳ, କୃଷ୍ଣ ଓ ସୁଭଦ୍ରା'ଙ୍କ ପାଇଁ କାରୁକାର୍ଯ୍ୟଖଚିତ ଏକ ସୁନ୍ଦର ମନ୍ଦିର ନିର୍ମାଣ କରିଥିଲେ । ଉତ୍କଳର ପ୍ରସିଦ୍ଧ ଶୈବ କ୍ଷେତ୍ର ଭୁବନେଶ୍ୱରର ଏହା ଅନ୍ୟତମ ବିଷ୍ଣୁମନ୍ଦିର ଏବଂ ଏହା ଅନନ୍ତ ବାସୁଦେବ ମନ୍ଦିର ନାମରେ ବିଖ୍ୟାତ । ଗଙ୍ଗ ରାଜତ୍ୱ-କାଳରେ ସାଲେପୁର ଥାନା ଅନ୍ତର୍ଗତ 'କଟରପା' ଓ 'ଅସୁରେଶ୍ୱର କୋଇଲି' ନାମକ ଦୁଇଟି ଗ୍ରାମରେ ନିର୍ମିତ ଦୁଇଟି ଜଗନ୍ନାଥ ମନ୍ଦିର ଜରାଜୀର୍ଣ୍ଣ ଅବସ୍ଥାରେ ଅଦ୍ୟାପି ବିଦ୍ୟମାନ । ସମଗ୍ର ଦାକ୍ଷିଣାତ୍ୟ ବିଜେତା ଗଜପତି କପିଳେଶ୍ୱର ଦେବଙ୍କ ସେନାପତି ଗୋପୀନାଥ ମହାପାତ୍ର ସ୍ୱ-ନାମରେ ଗୋପୀନାଥପୁର ଶାସନ ପ୍ରତିଷ୍ଠା ପୂର୍ବକ (୧୪୫୦ ଖ୍ରୀଷ୍ଟାବ୍ଦ) ସେଠାରେ ଏକ ମନ୍ଦିରରେ ବଳରାମ, ଜଗନ୍ନାଥ ଓ ସୁଭଦ୍ରା ମୂର୍ତ୍ତି ସ୍ଥାପନ

କରିଥିଲେ । ଯଥା — 'ରାମଂ ଶ୍ରୀପୁରୁଷୋତ୍ତମଂ ଭଗବନ୍ତାମସ୍ମିନ୍ ସୁଭଦ୍ରାଂ ତଥା' । ମନ୍ଦିରଟି ବର୍ତ୍ତମାନ ଭଗ୍ନଦଶାପନ୍ନ । ତାଙ୍କର ପୁତ୍ର କାଞ୍ଚିବିଜେତା ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ-କାଳରେ ମହାନଦୀ କୂଳରେ ଷୋଳଟି ଶାସନ ପ୍ରତିଷ୍ଠିତ ହୋଇଥିଲା । ସେଥିମଧ୍ୟରୁ ପାଟ ମହାଦେବୀଙ୍କ ପ୍ରତିଷ୍ଠିତ ପାଟପୁର, ରାଣୀ ଶ୍ରୀସ୍ନାଦେବୀ ସ୍ଥାପିତ ଶ୍ରୀସ୍ନାପୁର, ରାଣୀ ଏଲମାଦେବୀ ସ୍ଥାପିତ 'ଏଲମାପୁର', ରାଣୀ ସତ୍ୟଭାମାଦେବୀ ସ୍ଥାପିତ 'ସତ୍ୟଭାମାପୁର' ଶାସନରେ 'ଦଧିବାମନ' (ଜଗନ୍ନାଥ) ମନ୍ଦିର ନିର୍ମିତ ହୋଇଥିଲା । କାଞ୍ଚିବିଜୟର ସ୍ମୃତିକୁ ଚିରସ୍ମରଣୀୟ କରିବା ପାଇଁ ପୁରୁଷୋତ୍ତମଦେବ ଉତ୍ତର ବାଲେଶ୍ୱରର ରାଇବଣିଆ ଦୁର୍ଗର ଅଦୂରରେ ଦେଉଳ ଗାଁ ନାମକ ଗ୍ରାମରେ ଏକ ମନ୍ଦିରରେ ମୁଗୁନି ପଥରରେ ଖୋଦିତ ଅଶ୍ୱାରୋହୀ ଜଗନ୍ନାଥ ଓ ବଳରାମଙ୍କ ଦୁଇଟି ବିଗ୍ରହ ସ୍ଥାପନ କରିଥିଲେ । ମହାନଦୀ ତୀରବର୍ତ୍ତୀ କଣ୍ଟିଲୋର ନୀଳମାଧବଙ୍କ ବେଢ଼ା ମଧ୍ୟରେ ଥିବା ଜଗନ୍ନାଥ ମନ୍ଦିର ଓ ରଣପୁର ଗଡ଼ସ୍ଥ ଜଗନ୍ନାଥ ମନ୍ଦିର ଦ୍ୱୟ ଏଯୁଗରେ ନିର୍ମିତ ।

ଓଡ଼ିଶା ବାହାରେ ମଧ୍ୟପ୍ରଦେଶର ବିଳାସପୁର ଅନ୍ତର୍ଗତ ବହୁ ପ୍ରାଚୀନ କୀର୍ତ୍ତି ମଣ୍ଡିତ 'ରତ୍ନପୁର'ର ଜଗନ୍ନାଥ ମନ୍ଦିର ମହାନଦୀ ତୀରବର୍ତ୍ତୀ 'ଶୌରିନାରାୟଣ'ର ଜଗନ୍ନାଥ ମନ୍ଦିର । ବସ୍ତରର ଜଗନ୍ନାଥ ମନ୍ଦିର ଗଙ୍ଗଯୁଗର କୀର୍ତ୍ତି । ବସ୍ତରର ଅଧିବାସୀମାନେ 'ଦନ୍ତେଶ୍ୱରୀ' ଓ ଜଗନ୍ନାଥ ଉଭୟଙ୍କୁ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ମଧ୍ୟପ୍ରଦେଶରେ ବସ୍ତର ରାଜ୍ୟ ସମସ୍ତ ଦେଶୀୟ ରାଜ୍ୟଗୁଡ଼ିକ ମଧ୍ୟରେ ବୃହତ୍ତମ ଥିଲା । ଜଗନ୍ନାଥ ଏ ରାଜ୍ୟର ରାଷ୍ଟ୍ରଦେବତା ଥିଲେ । ପ୍ରାୟ ୧୭୯୦ ଖ୍ରୀଷ୍ଟାବ୍ଦରେ ଖୋଦିତ ଏକ ଶିଳାଲିପିରୁ ଜଗନ୍ନାଥ ମହାପ୍ରଭୁଂକ ପ୍ରଭାବ କିପରି ଅକ୍ଷୁଣ୍ଣ ଥିଲା ତାହାର ପ୍ରମାଣ ମିଳେ—

"ଶ୍ରୀ ଜଗନ୍ନାଥ, ଶ୍ରୀ ବଳଭଦ୍ର, ଶ୍ରୀ ସୁଭଦ୍ରା ସହିତ ଏହି କଥା ନିମିତ୍ତକୁ ହେ ସାକ୍ଷି । ଶ୍ରୀ ରକ୍ଷାପାଳ ଦେବ ରାଜା ଗ୍ଭଲକ୍ୟ ବଂଶ ।

× × ×

ପାପଡ଼ା ହାଣ୍ଡି ବ୍ରହ୍ମପୁରା ଘର ଉଜନ ଶହ ଜୀବନ୍ତ ଦଣ୍ଡ ନାହିଁ । ମରଣେ ମୁଣ୍ଡାଇ ନାହିଁ । ଶରଣ ମାର ନାହିଁ × × × ।"

ଏଥିରୁ ସୂଚିତ ହୁଏ ଯେ ଏହି ଉଜନଶହ ବ୍ରାହ୍ମଣଙ୍କୁ କୌଣସି ଦଣ୍ଡ ଦିଆଯିବ ନାହିଁ । ନିରଂଶ ହୋଇ ମଲେ ସେମାନଂକ ସମ୍ପତ୍ତି ବ୍ୟାଜ୍ୟାପ୍ତ ହେବନାହିଁ । ଦୋଷକରି ଶରଣ ପଶିଲେ କୌଣସି ଦଣ୍ଡ ଦିଆଯିବ ନାହିଁ । ଏମାନଂକର ମୁଖ୍ୟଂକ ଉପାଧି ଥିଲା ପାତ୍ରୀ ।

ବସ୍ତରର ଜଗଦଲପୁର ଜଗନ୍ନାଥ ମନ୍ଦିରରେ ପୂଜାରୀମାନେ ଥିଲେ ଷାଠିଏ ଘରିଆ ବ୍ରାହ୍ମଣ । ସେମାନଙ୍କ ସଙ୍ଗେ ଥିଲେ ପାଣିଗ୍ରାହୀ ।

ମଧ୍ୟପ୍ରଦେଶର ସାରଙ୍ଗଗଡ଼ (୧୬୯୨ ଖ୍ରୀଷ୍ଟାବ୍ଦ), ରାଯ଼ଗଡ଼ (୧୬୯୨ ଖ୍ରୀଷ୍ଟାବ୍ଦ), ରାଜନନ୍ଦ ଗାଁ (ପ୍ରାଚୀନ), ରାଜିମ୍ (ପ୍ରାଚୀନ) ପ୍ରଭୃତି ସ୍ଥାନରେ ପ୍ରାଚୀନ ଜଗନ୍ନାଥ ମନ୍ଦିର ଥିଲା ।

ମେଦିନୀପୁର ସଦରରେ କାଂସବତୀ ନଦୀକୂଳରେ ଗଙ୍ଗ ବା ସୂର୍ଯ୍ୟବଂଶୀ ରାଜତ୍ୱକାଳରେ ଏକ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା; କିନ୍ତୁ କାଳକ୍ରମେ ଏହା ନଦୀସ୍ରୋତରେ ବିଧ୍ୱସ୍ତ ହେଲା । ହିଜଳୀର ମନ୍ଦିରରେ ଥିବା ଏକ ଶିଳାଲେଖରୁ ଜଣାଯାଏ ଯେ —"ଶକାବ୍ଦେ ରସଶୂନ୍ୟବାଣ ଧରଣୀମାନେ" ଅର୍ଥାତ୍ ରସ (୬) ଶୂନ୍ୟ (୦) ବାଣ (୫) ଧରଣୀ (୧) ବା ୧୫୦୬ ଶକାବ୍ଦ ବା ୧୮୮୪ ଖ୍ରୀଷ୍ଟାବ୍ଦରେ ଉକ୍ତ ମନ୍ଦିରର ପ୍ରତିଷ୍ଠା କାର୍ଯ୍ୟ ସମାପ୍ତ ହୋଇଥିଲା । ଜଗନ୍ନାଥ ସଡ଼କ ନିକଟବର୍ତ୍ତୀ ଦାନ୍ତନର ଜଗନ୍ନାଥ ମନ୍ଦିରରେ ମହାପ୍ରଭୁ ଶ୍ରୀଚୈତନ୍ୟ ବିଶ୍ରାମ ନେଇଥିବାରୁ (୧୫୦୯) ଏହା ତତ୍ପୂର୍ବବର୍ତ୍ତୀ ସୂର୍ଯ୍ୟବଂଶୀ ରାଜତ୍ୱକାଳରେ କେଶିଆଡ଼ିଗଡ଼ରେ ଓ ୧୬୮୮ରେ ମହିଷାଦଳରେ ଜଗନ୍ନାଥ ମନ୍ଦିର ଉତ୍ତୋଳିତ ହୋଇଥିଲା ।

ବାଙ୍କୁଡ଼ାର ଜଗନ୍ନାଥ ମନ୍ଦିର ୧୨୮୦ ଶକାବ୍ଦ ବା ୧୩୫୮ ଖ୍ରୀଷ୍ଟାବ୍ଦର କୀର୍ତ୍ତି । ବିଷ୍ଣୁପୁର ରାଜା ପୃଥ୍ୱୀମଲ୍ଲ ୭୫୫ ମଲ୍ଲାବ୍ଦ ବା ୧୪୫୦ ଖ୍ରୀଷ୍ଟାବ୍ଦରେ ବିଷ୍ଣୁପୁରରେ ଏକ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଏହା ବଙ୍ଗଳାର ଏକ ପ୍ରାଚୀନତମ ଜଗନ୍ନାଥ ମନ୍ଦିର । ବର୍ତ୍ତମାନ ବାଂଲାଦେଶ ନାମରେ ପରିଚିତ ଭୂଖଣ୍ଡରେ ମଧ୍ୟ କେତେକ ଜଗନ୍ନାଥ ମନ୍ଦିରର ଅସ୍ତିତ୍ୱ ସମ୍ବନ୍ଧରେ ତଥ୍ୟ ମିଳେ ; ସେଥିମଧ୍ୟରୁ ଢାକାର ଜଗନ୍ନାଥ ମନ୍ଦିର ଉଲ୍ଲେଖ ଯୋଗ୍ୟ ।

ଢାକାରେ ଥିବା ଜଗନ୍ନାଥ ମନ୍ଦିର ସମ୍ପର୍କରେ ଯେଉଁ କିମ୍ବଦନ୍ତୀ ପ୍ରଚଳିତ ଅଛି ସେଥିରୁ ଜଣାଯାଏ ଯେ ଯଶପାଳ ନାମକ ଜଣେ ପାଳ ବଂଶୀୟ ରାଜା (ଦ୍ୱାଦଶ ଶତାବ୍ଦୀ) ଏହି ମନ୍ଦିର ନିର୍ମାଣ କରିଥିଲେ । ତାଙ୍କ ସମୟରେ ନିର୍ମିତ ହେଉଥିବା ରଥର ଉଚ୍ଚ ପଚିଶ ଫୁଟ ଥିଲା ଏବଂ ତାହା ବହୁସଂଖ୍ୟକ ଶିଳ୍ପୀଙ୍କ ଦ୍ୱାରା ନିର୍ମିତ ହେଉଥିଲା । ଏହି ରଥଯାତ୍ରା ସେହି ସମୟରୁ ଆଜି ପର୍ଯ୍ୟନ୍ତ ନାନା ଉତ୍ଥାନପତନ ମଧ୍ୟରେ ମହା ଆଡ଼ମ୍ବରରେ ଅନୁଷ୍ଠିତ ହେଉଅଛି ।

ମଣିପୁରର ରାଜଧାନୀ ଇମ୍ଫାଲରେ ପରମ ବୈଷ୍ଣବ ରାଜର୍ଷି ଭାଗ୍ୟଚନ୍ଦ୍ର (୧୭୬୪-୯୮ ଖ୍ରୀଷ୍ଟାବ୍ଦ) ଜଗନ୍ନାଥଙ୍କ ରଥ ଯାତ୍ରାରେ ଗୀତଗୋବିନ୍ଦ ଗାନ ପ୍ରଚଳନ ସହିତ ସେଥିରେ ଦଶାବତାର ସ୍ତୁତିର ପ୍ରଚଳନ କରିଥିଲେ । ବର୍ତ୍ତମାନ ସେହି ରଥଯାତ୍ରା ଜୟଦେବ ଯାତ୍ରା ନାମରେ ପରିଚିତ ।

ଛୋଟ ନାଗପୁରର ନାଗବଂଶୀ ରାଜାମାନେ ଜଗନ୍ନାଥଙ୍କ ପରମଭକ୍ତ ଥିଲେ। ସେମାନଙ୍କ ରାଜଧାନୀ ଦୋଏସାଗଡସ୍ଥ ପ୍ରାଚୀନ ଜଗନ୍ନାଥ ମନ୍ଦିର ଭାଙ୍ଗିଯିବାରୁ ସେଠାରେ ଏକ ନୂତନ ଜଗନ୍ନାଥ ମନ୍ଦିର ୧୭୩୯ ବିକ୍ରମସମ୍ବତ୍ ୧୬୮୩ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା। ଜଗନ୍ନାଥପୁରର ଜଗନ୍ନାଥ ମନ୍ଦିରର ସମୟ ହେଉଛି ୧୭୪୮ ସମ୍ବତ୍ ବା ୧୬୯୧ ଖ୍ରୀଷ୍ଟାବ୍ଦ। ଏହି ଦୁଇଟି ସ୍ଥାନରେ ଅଦ୍ୟାପି ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ମହାସମାରୋହରେ ସମ୍ପନ୍ନ ହୁଏ।

ଅନ୍ଧ୍ର ପ୍ରଦେଶର ସୋମପେଣ୍ଠାରୁ ୧୨ ମାଇଲ ଦୂରବର୍ତ୍ତୀ 'ସାନକୋଠା' ନାମକ ସ୍ଥାନରେ ଥିବା ଜଗନ୍ନାଥ ମନ୍ଦିରଟି ପ୍ରାୟ ସପ୍ତଦଶ ଶତାବ୍ଦୀରେ ନିର୍ମିତ ହୋଇଥିବା ଐତିହାସିକ ରବର୍ଟ ସୁଏଲ(Rubert Swell) ମତ ପ୍ରକାଶ କରନ୍ତି। ଶ୍ରୀକାକୋଲ ନିକଟରେ ୧୧୦୫ ହିଜିରା ବା ୧୬୯୩ ଖ୍ରୀଷ୍ଟାବ୍ଦରେ ନିର୍ମିତ ଜଗନ୍ନାଥ ମନ୍ଦିର ଅତି ପ୍ରସିଦ୍ଧ। ଏହି ମନ୍ଦିର ପାଇଁ ପାରଲାଖେମୁଣ୍ଡିର କେତେକ ଗଜପତି ରାଜା, ସିକାକୋଲର ନବାବ ମାଫୁଜ୍ ଖାଁ, କମିସ୍ବାରୀ ବଦୁଲ ଖାଁ, ଦିଲ୍ଲୀର ମୋଗଲ ଦରବାର ୧୭୨୮ରୁ ୧୭୫୭ ମଧ୍ୟରେ ବହୁତ ଭୂସମ୍ପତ୍ତି ଦାନ କରିଥିଲେ।

ଉତ୍ତର ପ୍ରଦେଶର ପ୍ରସିଦ୍ଧ ଜନୈକ ଐତିହାସିକ ଜଗନ୍ନାଥ ମାହାତ୍ମ୍ୟ ସମ୍ପର୍କରେ ଆଲୋଚନା କରି ମତପ୍ରକାଶ କରିଛନ୍ତି ଯେ, ସମଗ୍ର ଉତ୍ତରଭାରତରେ ମୁସଲମାନ ସେନା ଗୋଟିକ ପରେ ଗୋଟିଏ ପ୍ରସିଦ୍ଧ ହିନ୍ଦୁମନ୍ଦିରକୁ ଭାଙ୍ଗି ଧୂଳିସାତ୍ କରିଦେଲେ। କିନ୍ତୁ ଜଗନ୍ନାଥ ନାମରେ ଉତ୍ସର୍ଗୀକୃତ ଉତ୍କଳସାମ୍ରାଜ୍ୟର ସୀମା ଗଙ୍ଗାନଦୀ କୂଳରେ ଉପନୀତ ହେବା ମାତ୍ରେ ପ୍ରତ୍ୟେକ ଦୁର୍ଗରେଥିବା ଉତ୍କଳସେନା ଓ ଜନସାଧାରଣ ଅକ୍ରମଣକାରୀ-ମାନଙ୍କର ପ୍ରବଳ ପ୍ରତିରୋଧ କରୁଥିଲେ। ଫଳରେ ମୁସଲମାନ ସେନା ବାହିନୀ ଖୋର୍ଦ୍ଧା-ରାଜ୍ୟର ସୀମାରେ ପହଞ୍ଚିବା ବେଳକୁ ହତୋତ୍ସାହ ହୋଇ ପଡୁଥିଲେ। ଖୋର୍ଦ୍ଧା ରାଜ୍ୟରେ ପ୍ରବେଶ କଲାମାତ୍ରେ ଦୁର୍ଦ୍ଧର୍ଷ ପାଇକ ସେନା ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇ ଆକ୍ରମଣକାରୀ-ମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଉ ଥିଲେ। ତେଣୁ ଜଗନ୍ନାଥ ମନ୍ଦିରକୁ ଭାଙ୍ଗିବା ସମ୍ଭବ-ପର ହୋଇ ପାରି ନଥିଲା। ଅନେକ ସମୟରେ ସେମାନେ ଦିଲ୍ଲୀ ପରିବାରକୁ ଶ୍ରୀଜଗନ୍ନାଥ ମନ୍ଦିର ଧ୍ୱଂସ କରିଥିବାର ମିଥ୍ୟା ବିବରଣୀ ପଠାଉଥିଲେ।

୧୫୭୦ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାରାଜ୍ୟ ପ୍ରତିଷ୍ଠିତ ହେବାପରେ ଉତ୍କଳର ବିଭିନ୍ନ ସ୍ଥାନରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହୋଇଥିବାର ପ୍ରମାଣ ମିଳେ। ଏହା ପରେ ପରେ ସମଗ୍ର ଉତ୍କଳଦେଶରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି ଚତୁର୍ଦ୍ଧାମୂର୍ତ୍ତି ହେଉ କିମ୍ବା ଦଧିବାମନ ମୂର୍ତ୍ତି ହେଉ ଅଧିଷ୍ଠିତ କରାଇବାର ଅପୂର୍ବ ଉତ୍ସାହ ଜନସାଧାରଣଙ୍କ ମଧ୍ୟରେ ଦେଖା ଦେଇଥିଲା। ସେହି ପ୍ରୋତ୍ସାହନ ଫଳରେ ସମଗ୍ର ଦେଶ ଓ ପଡୋଶୀ

ରାଜ୍ୟରେ ଯେଉଁ ଜଗନ୍ନାଥ ମନ୍ଦିରଗୁଡ଼ିକ ନିର୍ମିତ ହୋଇଥିଲା ତା'ର ଗୋଟିଏ ବିବରଣୀ ଏଠାରେ ପ୍ରଦତ୍ତ ହେଲା—

ଖଣ୍ଡପଡ଼ା (୧୬୫୦), ନୟାଗଡ (୧୭୭୮), ନୀଳାଦ୍ରି ପ୍ରସାଦ, ବାଣପୁର (୧୬୯୨), ବଡ଼ମୂଲ ଘାଟିରେ ଅବସ୍ଥିତ ବେଲପଡ଼ା (ଦଧିବାମନ ମନ୍ଦିର), ପ୍ରାଚୀକୂଳବର୍ତ୍ତୀ ଅନ୍ତର୍ବେଦୀଗ୍ରାମ, କାକଟପୁର, ମହାବିନାୟକ, ବାଲି ଆଠଗଡ଼, (୧୬୦୦ ଶତାବ୍ଦୀ), ବଡ଼ମ୍ବା ଗଡ଼, ନରସିଂହପୁର (୧୮୦୦ ଶତାବ୍ଦୀ), ବାଲିଗୁଡା, ଜଗତସିଂହପୁର, ଯଶୋବନ୍ତ ଦାସଙ୍କ ଗାଦୀ ନିକଟସ୍ଥ ଅଡଙ୍ଗ ଗଡ ୧୬୦୦ ଶତାବ୍ଦୀ, ବାଙ୍କୀ (ବଳଭଦ୍ର-ମନ୍ଦିର-୧୭୯୦), ବଡ଼ଗାଁ (ବଳଭଦ୍ର ମନ୍ଦିର—ଷୋଡଶ ଶତାବ୍ଦୀ), ଅଗରପଡ଼ା (୧୭୮୦) ନିର୍ମଳଝର (୧୭୦୦) ଖଲ୍ଲିକୋଟ (୧୮୦୦), କୋଦଳା ଆଠଗଡ଼ (୧୭୨୮), ମେରଦା (୧୭୩୬), ବାଲିଛେଲ (ଆଠଗଡ) ୧୬୮୦, ବଡଖେମୁଣ୍ଡି ରାଜଧାନୀ ବିଜୟନଗର (୧୭୦୦), ଦିଗପହଣ୍ଡି (୧୭୯୦), ପାରଳାଖେମୁଣ୍ଡି (୧୭୦୦), କୁଳଡ (୧୬୫୦), ହୁମାଗଡ଼ (୧୭୮୨), ବୁଗୁଡ଼ା (୧୮୦୦), ଜଗନ୍ନାଥ ପ୍ରସାଦ (ଦଧିବାମନ ମନ୍ଦିର, ୧୬୮୦). ନନ୍ଦପୁର (କୋରାପୁଟ-୧୫୮୦), ନାରାୟଣ ପାଟଣା (୧୫୭୦), ରାୟଗଡ଼ା (୧୬୦୦) ପାଇକପଡା (କୋରାପୁଟ ୧୭୫୦), ଜୟପୁର (୧୬୬୦), ଡେରାପେଣ୍ଡୁ (ଗୁଣପୁର ୧୭୮୧), ବାରିପଦା (୧୫୭୫), ପ୍ରତାପପୁର (ଦଧିବାମନ ମନ୍ଦିର-୧୫୭୫), ହରିପୁର (୧୬୩୦), ରତନପୁର (କେନ୍ଦୁଝରର ବଳଦେବ ମନ୍ଦିର ୧୬୦୦), କେନ୍ଦୁଝର ଗଡ (୧୭୯୦), ଆନନ୍ଦପୁର (ଦଧିବାମନ ମନ୍ଦିର-୧୬୭୫), ଢେଙ୍କାନାଳଗଡ (ବଳଭଦ୍ର ମନ୍ଦିର-୧୬୯୦), ଦେବଗ୍ରାମ (କପିଳାସ ପର୍ବତର ପାଦଦେଶରେ ଅବସ୍ଥିତ) ଓ ଅନୁଗୁଳ ପୁରୁଣା ଗଡ (୧୭୫୦), ବଜ୍ରକୋଟ (ତାଳଚେର-୧୫୮୦), ଚକାପାଦୁମାଳ (ବଉଦ-୧୬୨୦), ଉଝଲ (ସମ୍ବଲପୁର-୧୬୦୦), ବରହମପୁର (୧୫୬୭-୧୫୯୧) ଗୋପାଳଜୀ ମଠ (ସମ୍ବଲପୁର-୧୫୯୧), ହୋତାପୋଡ଼ା (୧୬୫୭), ସମ୍ବଲପୁର (ଦଧିବାମନ ମନ୍ଦିର-୧୭୮୨), ମୁଦପଡା (୧୭୦୦), ବରପାଲି (୧୫୮୪-୧୬୦୨), ଦେବଗଡ (୧୭୭୮-୮୮୨), ବରକୋଟ (୧୭୮'ର ପୂର୍ବବର୍ତ୍ତୀ), ପୂଜାରୀପାଲି (୧୬୧୭), ବସ୍ତିପାଲି (୧୬୧୭), ଭବାନୀ-ପାଟଣା, ମଦନପୁର ଦାଦପୁର (କଳାହାଣ୍ଡି-ଅଷ୍ଟାଦଶ ଶତାବ୍ଦୀ) ।

ଏତଦ୍ ବ୍ୟତୀତ ସମଗ୍ର ଓଡ଼ିଶା ଓ ପଡ଼ୋଶୀ ପ୍ରଦେଶମାନଙ୍କରେ ବହୁପ୍ରାଚୀନ ଜଗନ୍ନାଥ ମନ୍ଦିର ଥିବାର ପରିଦୃଷ୍ଟ ହୁଏ । ଏହି ପ୍ରାଚୀନ ମନ୍ଦିରଗୁଡ଼ିକ ମଧ୍ୟରେ ବାଲେଶ୍ୱର ଜିଲ୍ଲାର ନୀଳଗିରି ଜଗନ୍ନାଥ ମନ୍ଦିର (ଖ୍ରୀ:ଅ: -୧୫୦୦), ଢେଙ୍କାନାଳ ଜିଲ୍ଲାର ତାଳଚେର ଜଗନ୍ନାଥ ମନ୍ଦିର (୧୫୧୩), ଫୁଲବାଣୀ ଜିଲ୍ଲାର ବଉଦ ଜଗନ୍ନାଥ ମନ୍ଦିର (୧୫୦୦

ଶତାବ୍ଦୀ), ସମ୍ବଲପୁର ଜିଲ୍ଲାର ବରଗଡ଼ ଜଗନ୍ନାଥ ମନ୍ଦିର ଓ କେନ୍ଦୁଝର ଜିଲ୍ଲାର ଭୈରବସିଂହପୁର ଜଗନ୍ନାଥ ମନ୍ଦିର (ପଞ୍ଚଦଶ ଶତାବ୍ଦୀ). ସମ୍ବଲପୁର ଜିଲ୍ଲାର ଚାମ୍ପରସର ଜଗନ୍ନାଥ ମନ୍ଦିର, ସୁନ୍ଦରଗଡ଼ ଜିଲ୍ଲାର ବଣାଇଗଡ଼ ଜଗନ୍ନାଥ ମନ୍ଦିର (୧୭୦୦), ଗାଙ୍ଗପୁର ଜଗନ୍ନାଥ ମନ୍ଦିର (୧୫୬୮), ବଲାଙ୍ଗୀର ଜିଲ୍ଲାର ପାଟନାଗଡ଼ ଜଗନ୍ନାଥ ମନ୍ଦିର (୧୩୫୦), ହରଶଙ୍କର ଜଗନ୍ନାଥ ମନ୍ଦିର (୧୪୧୩), ପାପନାଶନ ଜଗନ୍ନାଥ ମନ୍ଦିର (ବମାକା ଓ ବମାଡ଼ ପୁର-୧୬୩୦), କଳାହାଣ୍ଡି ଜିଲ୍ଲାର ଜୁନାଗଡ଼ ଦଧିବାମନ ମନ୍ଦିର (୧୫୫୦), ପାତାଳଗଙ୍ଗ ଜଗନ୍ନାଥ ମନ୍ଦିର ପ୍ରାଚୀନ ମନ୍ଦିର ରୂପେ ବିବେଚିତ ହୁଏ ।

ଏତଦ୍ ବ୍ୟତୀତ ଅନ୍ଧ୍ରପ୍ରଦେଶର ବିଜୟନଗରରେ ଅବସ୍ଥିତ ଜଗନ୍ନାଥ ମନ୍ଦିର (୧୬୧୧) ବିଶାଖାପାଟଣା ଜଗନ୍ନାଥ ମନ୍ଦିର (୧୫୧୫-୧୬), ପଶ୍ଚିମବଙ୍ଗର ମେଦିନୀପୁର ସହରରେ ଅବସ୍ଥିତ ଜଗନ୍ନାଥ ମନ୍ଦିର, ହୁଗୁଳି ଜିଲ୍ଲାର ମହେଶ ଅନ୍ତର୍ଗତ ଜଗନ୍ନାଥ ମନ୍ଦିର ତଥା ଚନ୍ଦନନଗରରେ ଅବସ୍ଥିତ ଜଗନ୍ନାଥ ମନ୍ଦିରର ନାମ ପ୍ରାଚୀନ ମନ୍ଦିର ତାଲିକାରେ ଦିଆଯାଇପାରେ ।

ଶ୍ରୀ ଜଗନ୍ନାଥ ଯେ କେବଳ ଆମର ଧର୍ମ ରକ୍ଷା କରୁଥିଲେ ତା' ନୁହେଁ, ସଂସ୍କୃତ, ଓଡ଼ିଆ, ହିନ୍ଦୀ ଓ ବଙ୍ଗଳା ପ୍ରଭୃତି ଭାଷାରେ ଶ୍ରୀ ଜଗନ୍ନାଥଙ୍କ ମହିମା ଗୀତ ହୋଇଥିବାର ଭୂରି ଭୂରି ପ୍ରମାଣ ମିଳେ । ମୁସଲମାନ ରାଜତ୍ୱକାଳରେ 'ନାୟବ ନାଜୀବ' ମହମ୍ମଦ ତକି ଖାଁଙ୍କ ପ୍ରବଳ ଆକ୍ରମଣ ଫଳରେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ପ୍ରାୟ ଦୁଇବର୍ଷ କାଳ ଗଞ୍ଜାମର ମେର୍ଦ୍ଦା ନାମକ ଗ୍ରାମକୁ ସ୍ଥାନାନ୍ତରିତ ହୋଇଥିବାରୁ ସାରା ଭାରତରୁ ଶ୍ରୀକ୍ଷେତ୍ରକୁ ତୀର୍ଥଯାତ୍ରୀମାନଙ୍କ ଆଗମନ ବନ୍ଦ ହୋଇଗଲା । ଏହା ଫଳରେ ତୀର୍ଥଯାତ୍ରୀମାନଙ୍କଠାରୁ ଆଦାୟ ହେଉଥିବା ଲକ୍ଷ ଲକ୍ଷ ଟଙ୍କା ଯାତ୍ରୀକର ହରାଇବାକୁ ପଡ଼ିଲା । ସେ ସମୟରେ ଭୂରାଜସ୍ୱ ପରେ ଯାତ୍ରୀକର ଆୟ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ଏହା ବନ୍ଦ ହୋଇଯିବା ଫଳରେ ଶାସନ ଏକ ପ୍ରକାର ଅଚଳ ହୋଇପଡ଼ିଲା । ତେଣୁ ମହମ୍ମଦ ତକି ଖାଁଙ୍କ ପରବର୍ତ୍ତୀ ଶାସକ (ଦ୍ୱିତୀୟ) ମୁର୍ଶିଦ କୁଲି ଖାଁ ଅଠଗଡ଼ ରାଜାଙ୍କୁ ୧୭୩୫ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥଙ୍କୁ ଶ୍ରୀକ୍ଷେତ୍ରକୁ ଆଣିବା ପାଇଁ ଅନୁରୋଧ କରିଥିଲେ । ସେହି କାଳରୁ ଶ୍ରୀ ଜଗନ୍ନାଥ ମହାପ୍ରଭୁ ଅଦ୍ୟାବଧି ନିଶ୍ଚିନ୍ତରେ ରହିଛନ୍ତି ।

ବ୍ରିଟିଶ ରାଜତ୍ୱର ଆରମ୍ଭରେ ଖ୍ରୀଷ୍ଟଧର୍ମ ପ୍ରଚାରକମାନେ ଶ୍ରୀ ଜଗନ୍ନାଥଙ୍କ ମାହାତ୍ମ୍ୟ କ୍ଷୁଣ୍ଣ କରିବା ପାଇଁ ପ୍ରବଳ ଆନ୍ଦୋଳନ ଚଳାଇଥିଲେ । କିନ୍ତୁ ସେମାନଙ୍କର ସମସ୍ତ

ଚେଷ୍ଟା ବିଫଳ ହୋଇଥିଲା; ପରନ୍ତୁ ବାସ୍ତବରେ ଓଡ଼ିଶା ଶ୍ରୀ ଜଗନ୍ନାଥଙ୍କ ରାଜ୍ୟ ବୋଲି ଇଂରେଜମାନଙ୍କ ମନରେ ବଦ୍ଧମୂଳ ଧାରଣା ଜାତ ହୋଇଥିଲା । ବ୍ରିଟିଶ୍ ପାର୍ଲିଆମେଣ୍ଟରେ, ୧୯୩୭ ମସିହାରେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶଭାବେ ଗଠନ କରିବା ପାଇଁ ତତ୍କାଳୀନ ଭାରତ ସଚିବ 'ସାର ସାମୁଏଲ ହୋର' ଯେଉଁ ଅଧ୍ୟାଦେଶନାମାର ଚଠା ପ୍ରସ୍ତୁତ କରିଥିଲେ ସେଥିରେ ସେ ଘୋଷଣା କରିଥିଲେ—

"Orissa, the land of Jagannath with one language, one religion & one race"

ତେଣୁ ଶ୍ରୀ ଜଗନ୍ନାଥଙ୍କ ନାମରେ ଏ ପ୍ରଦେଶର ସୃଷ୍ଟି ଏବଂ ଶ୍ରୀ ଜଗନ୍ନାଥ ସଂସ୍କୃତି ହିଁ ଏ ଜାତିର ଜାତୀୟ ସଂସ୍କୃତି ।

# ଶ୍ରୀଜଗନ୍ନାଥ ଓ ତାନ୍ତ୍ରିକ ଭାବଧାରା

ଉତ୍କଳଖଣ୍ଡର ପୁରୁଷୋତ୍ତମ କ୍ଷେତ୍ରରେ ପୂଜା ପାଉଥିବା ମହାପ୍ରଭୁ ଜଗନ୍ନାଥ କେଉଁ ଧର୍ମ ବା ସମ୍ପ୍ରଦାୟର ଦେବତା ବୋଲି ବହୁ ଅନୁସନ୍ଧାନ ଚାଲିଛି । ବହୁ ଗବେଷକ ନିଜ ନିଜ ମତ ବ୍ୟକ୍ତ କରି ଶ୍ରୀଜଗନ୍ନାଥ ଶାବର, ବୈଦିକ, ବ୍ରାହ୍ମଣ୍ୟ, ବୌଦ୍ଧ, ଜୈନାଦି ଧର୍ମ ବା ସମ୍ପ୍ରଦାୟର ଦେବତା ବୋଲି ଉଲ୍ଲେଖ କରି ଯାଇଛନ୍ତି । ପ୍ରତ୍ୟେକଙ୍କ ଲେଖା ପଛରେ ଯଥେଷ୍ଟ ଯୁକ୍ତି ମଧ୍ୟ ରହିଛି । ମାତ୍ର ସମସ୍ତଙ୍କ ଯୁକ୍ତି ଠାରୁ ଅଧିକ ଯୁକ୍ତିଯୁକ୍ତ ହେବ, ଯଦି ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ରର ଦେବତା ବୋଲି ଧରାଯାଏ । ପୂର୍ବରୁ ଯେପରି ତନ୍ତ୍ର ଗ୍ରନ୍ଥମାନଙ୍କରେ ଶ୍ରୀଜଗନ୍ନାଥଙ୍କ ନାମ ଲିପିବଦ୍ଧ ହୋଇଛି ସେହିଭଳି ବେଦରେ ଶ୍ରୀଜଗନ୍ନାଥଙ୍କ ନାମ ବା ବିଷୟ ଦୃଷ୍ଟ ହୁଏନାହିଁ ।

ବୈଦିକ ଯୁଗରେ ମୂର୍ତ୍ତି ଉପାସକ ନଥିଲେ । ବେଦରେ ବହୁ ଦେବତାଙ୍କ ନାମ ଉଲ୍ଲେଖ ଥିଲେ ମଧ୍ୟ ସେମାନଙ୍କ ଉପାସନା ଯଜ୍ଞ ମାଧ୍ୟମରେ ହେଉଥିଲା । ଯଜ୍ଞାଗ୍ନି ହିଁ ଦେବତାମାନଙ୍କର ମୁଖ । ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ଯଜ୍ଞାଗ୍ନିରେ ଘୃତାହୁତି ପ୍ରଦାନ କରାଯାଉଥିଲା, ସେହି ଦେବତା ଘୃତାହୁତିରେ ସନ୍ତୁଷ୍ଟ ହେଉଥିଲେ ବୋଲି ବୈଦିକ ଋଷିଙ୍କର ବିଶ୍ୱାସ । କିନ୍ତୁ ତନ୍ତ୍ର ମାର୍ଗରେ ଦେବତା ଉପାସନା ସ୍ୱତନ୍ତ୍ର । ତନ୍ତ୍ର ମତରେ ଦେବତା ଉପାସନା କରିବାକୁ ଗଲେ, ଦେବତାଙ୍କ ମୂର୍ତ୍ତି ବା ପ୍ରତୀକ ନିତାନ୍ତ ଆବଶ୍ୟକ । ତେଣୁ ମୂର୍ତ୍ତି ଉପାସନା ବା ପୂଜା ସମ୍ପୂର୍ଣ୍ଣ ତନ୍ତ୍ରପନ୍ଥା ବ୍ୟତୀତ ଆଉ କିଛି ନୁହେଁ ।

ବର୍ତ୍ତମାନ କାହିଁକି ବହୁ ବର୍ଷ ପୂର୍ବରୁ ଭାରତୀୟ ଧର୍ମଧାରା ଦୁଇଟି ସ୍ରୋତ ଉପରେ ନିର୍ଭରଶୀଳ । ଗୋଟିଏ ନିଗମ ବା ବୈଦିକ, ଅପରଟି ଆଗମ ବା ତନ୍ତ୍ର । ବୈଦିକ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ନାମ ବା ରୂପ ଦୃଷ୍ଟିଗୋଚର ହୁଏ ନାହିଁ । କେବଳ 'ବେଦର ଅନ୍ୟତମ ଭାଷ୍ୟକାର ଆଚାର୍ଯ୍ୟ ସାୟଣ ଋଗ୍‌ବେଦର ୧୦।୧୫୫।୩ ମନ୍ତ୍ରକୁ ଅର୍ଥ କରିବାକୁ ଯାଇ ଲେଖିଲେ, "ଅତଃ ବିପ୍ରକୃଷ୍ଟ ଦେଶେ ବର୍ତ୍ତମାନଂ ପୁରୁଷୋଂ ନିର୍ମିତା ପୁରୁଷେଣ ରହିତଂ ଯଦାରୁ ଦାରୁମୟଂ ପୁରୁଷୋତ୍ତମାଖ୍ୟଂ ଦେବତା ଶରୀରଂ ସିନ୍ଧୋଃପାରେ

ସମୁଦ୍ରତୀରେ ପ୍ଲବତେ ଜଳସ୍ୟୋପରିବର୍ତ୍ତତେ ତତ୍ଦାରୁ । ହେ ଦୁର୍ହଣୋ ଦୁଃଖେନ ହନନୀୟ କେନାପି ହନ୍ତୁଂ ଅଶକ୍ୟ ହେ ସ୍ତୋତଃ ଆରଭସ୍ୱ ଆଲମ୍ବସ୍ୱ ଉପାସ୍ୱେତ୍ୟର୍ଥଃ । ତେନ ଦାରୁମୟେନ ଦେବେନ ନୌ-ପାର୍ଯ୍ୟ-ମାଣେନ ପରସ୍ତରଂ ଅତିଶୟେନ ତରଣୀୟଂ ଉତ୍କୃଷ୍ଟଂ ବୈଷ୍ଣବଂ ଲୋକଂ ଗଚ୍ଛ ।" ଏହି କଥା ଲେଖିଲା ପରେ ସେ ପୁଣି ଅପର ଅଦ୍ଧ ଲେଖି ଅନ୍ୟ କଥା ଲେଖିଛନ୍ତି । ଏଥିରୁ ସ୍ପଷ୍ଟ ମନେ ହୋଇଥାଏ—ବୈଦିକଋଷିବୃନ୍ଦ ସମ୍ଭବତଃ ଶ୍ରୀଜଗନ୍ନାଥଙ୍କ ବିଷୟ ଜାଣି ନଥିଲେ । ଜାଣିଥିଲେ ବା ଯେ ତାଙ୍କର ଦେବତା ହୋଇଥିଲେ ଅନ୍ୟାନ୍ୟ ବୈଦିକ ସାହିତ୍ୟରେ ତାଙ୍କ ବିଷୟ ଲେଖା ହୋଇଥାନ୍ତା ।

ବୈଦିକ ସାହିତ୍ୟରେ ଉଲ୍ଲେଖ ନଥିଲେ ଜଗନ୍ନାଥ ଯେ ବେଦର ପରବର୍ତ୍ତୀ ଏଭଳି ଧାରଣା କରିବା ଠିକ୍ ନୁହେଁ । କାରଣ ବେଦରେ ବୈଦିକ ଯୁଗରେ ଥିବା ସମସ୍ତ ବିଷୟ ଯେ ଲିପିବଦ୍ଧ ହୋଇଛି ଏହା କେବେ ନୁହେଁ । ପୁଣି ବେଦକୁ ବୈଦିକ-ମାନେ ଶୁଣି ଶୁଣି ମନେ ରଖୁଥିଲେ । ବର୍ତ୍ତମାନ ଦେଖାଯାଉଛି, ଗୋଟିଏ ଗ୍ରନ୍ଥରୁ ଅନ୍ୟ ଗ୍ରନ୍ଥକୁ ଉଦ୍ଧାର କଲେ ବହୁ ତ୍ରୁଟି ରହିଯାଉଛି । ତେଣୁ ଶୁଣି ଶୁଣି ମନେ ରଖୁଥିବା ଶାସ୍ତ୍ର ଲେଖାହେବା ଯୁଗକୁ ଠିକ୍ ସେହି କଥା ପୁରା ଲେଖା ହୋଇଥିବା ସମ୍ଭବ ନୁହେଁ । ହୁଏତ କେତେକ ରହି ଯାଇଥିବ ବା ଅଧିକା କିଛି ମିଶି ଯାଇଥିବ । ବୈଦିକ ଯୁଗ ଛାଡ଼ିକି, ବ୍ୟାସଙ୍କ ମହାଭାରତ ଯୁଗରେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ବିଷୟ ଋଷି ବ୍ୟାସ ଜାଣି ନଥିଲା ମନେହୁଏ । ବ୍ୟାସଦେବ ମହାଭାରତର ବନପର୍ବରେ ପାଣ୍ଡବମାନଙ୍କୁ କଳିଙ୍ଗ ଆଣିଛନ୍ତି । କଳିଙ୍ଗରେ ପ୍ରବାହିତ ହେଉଥିବା ବୈତରଣୀ ନଦୀରେ ସେମାନଙ୍କୁ ସ୍ନାନ କରାଇ ସେ କ୍ଷେତ୍ରର ମହିମା ବର୍ଣ୍ଣନା କରାଇଛନ୍ତି । କିନ୍ତୁ ଶ୍ରୀଜଗନ୍ନାଥଙ୍କ ବିଷୟ କିଛି ଲେଖି ନାହାନ୍ତି । ଯେ ଯାହା ଲେଖିଛନ୍ତି, ତାହା ପୁରୁଷୋତ୍ତମ କ୍ଷେତ୍ର /ବୋଲି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ତାଙ୍କ ଲିଖିତ ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ ପୁସ୍ତକରେ ଲେଖିଛନ୍ତି ।

ମାତ୍ର ବୈତରଣୀ କୂଳରେ ଛୁଡ଼ାହେଲେ ପୁରୁଷୋତ୍ତମ କ୍ଷେତ୍ର କେବେ ଦୃଷ୍ଟି-ପଥାରୂଢ଼ ହୁଏନାହିଁ । ବ୍ୟାସଦେବ ବୈତରଣୀ କୂଳର ଯାଜନଗର ବା ଯାଜପୁର କଥା ଲେଖିଛନ୍ତି । ସେତେବେଳେ ଯାଜନଗର ପ୍ରସିଦ୍ଧ ହୋଇ ସାରିଥାଏ । ବ୍ୟାସ ଲେଖିଛନ୍ତି, ସେଠାରେ ବିଶ୍ୱକର୍ମା ଯଜ୍ଞ କରି ସାରିଲା ପରେ ଯଜ୍ଞର ଦକ୍ଷିଣା ସ୍ୱରୂପ ପୃଥିବୀକୁ ଋଷି କଶ୍ୟପଙ୍କୁ ଦାନ କରିବାକୁ ଉଦ୍ୟତ ହୁଅନ୍ତେ, ପୃଥିବୀ ରାଗିଯାଇ କହିଲେ—'ମୋତେ ଯଦି କୌଣସି ମରଲୋକ ହାତରେ ଟେକି ଦିଅ ତେବେ ମୁଁ ବର୍ତ୍ତମାନ ପାତାଳୀ ହେବି ।' ଏହା କହି ସେ ସମୁଦ୍ରରେ ବୁଡ଼ିଗଲେ । ଏହାଦେଖି କଶ୍ୟପ ତାଙ୍କୁ ବହୁ ସ୍ତବ ସ୍ତୁତି କରନ୍ତେ, ସେ ବେଦୀ ସଦୃଶ ଦେଖାଦେଲେ । ଏହି ବେଦୀ ହିଁ ମହାବେଦୀ, ଏହା ପୂର୍ବପୁରୁ ସେହି ଯାଜନଗରର ବିରଜା କ୍ଷେତ୍ର ଛଡ଼ା ଆଉ କିଛି ନୁହେଁ ।

ମହାଭାରତ ଲେଖାହେଲା ବେଳକୁ ସମ୍ଭବତଃ ମହାଦେବୀ ବିରଜାଙ୍କ ବର୍ତ୍ତମାନର ବିଗ୍ରହ ପୂଜା ପାଉ ନଥିଲେ । ମହାଭାରତର ପରବର୍ତ୍ତୀ ସମୟରେ ବିରଜା ଗଠିତ ହୋଇ ପୂଜା ପାଇ ଆସୁଥିବା ଅନୁମେୟ । ବିରଜା ଶ୍ରୀଜଗନ୍ନାଥଙ୍କ ଭଳି କାଷ୍ଠ ବିଗ୍ରହ ନୁହନ୍ତି, ସେ ପ୍ରସ୍ତର ବିଗ୍ରହ । ହୋଇପାରେ, ଶ୍ରୀଜଗନ୍ନାଥ ପ୍ରଥମେ ବୈତରଣୀ କୂଳରେ ଉପାସିତ ହେଉଥିଲେ ଓ ପରେ ପୁରୁଷୋତ୍ତମ କ୍ଷେତ୍ରକୁ ଚାଲି ଆସିଛନ୍ତି । ବର୍ତ୍ତମାନ ଶ୍ରୀଜଗନ୍ନାଥଙ୍କ ପାର୍ଶ୍ୱଦେଶରେ ମଧ୍ୟ ଭୂଦେବୀ ଅବସ୍ଥାନ କରିଥିବା ଦେଖାଯାଏ ।

ପ୍ରାଗ୍ ବୈଦିକ ଯୁଗରେ ପ୍ରକୃତିର ଉପାସନା ହେଉଥିଲା । ମହେଞ୍ଜୋଦାରୋରେ ଥିବା ଚିତ୍ରମାନଙ୍କରେ କେତୋଟି ପୃଥିବୀ ଦେବୀଙ୍କ ଚିତ୍ର ଥିବା ଗବେଷକମାନେ ଲେଖିଛନ୍ତି । ଡାଃ ଶଶୀଭୂଷଣ ଦାସଗୁପ୍ତ ତାଙ୍କ ଲିଖିତ ଭାରତର ଶାକ୍ତ ସାଧନା ଓ ଶାକ୍ତ ସାହିତ୍ୟ ଗ୍ରନ୍ଥରେ ଲେଖିଛନ୍ତି, ଗୋଟିଏ ସ୍ତ୍ରୀଲୋକର ଜନନେନ୍ଦ୍ରିୟରୁ ବୃକ୍ଷ ଉତ୍ପନ୍ନ ହୋଇଥିବା ଚିତ୍ର ମହେଞ୍ଜୋଦାରୋରେ ଅଛି । ସେହି ଚିତ୍ର ହିଁ ପୃଥିବୀ ଦେବୀଙ୍କର । ଏହାଛଡ଼ା ସନ୍ତାନବତ୍ସଳା ପୃଥିବୀ ଦେବୀଙ୍କର କେତୋଟି ଚିତ୍ର ଦେଖିବାକୁ ମିଳେ । ପରବର୍ତ୍ତୀ ଯୁଗରେ ବୈଦିକ ଋଷି ମଧ୍ୟ ପୃଥିବୀ ଦେବୀଙ୍କର ବହୁ ସ୍ତୁତି କରିଥିବା ବେଦରୁ ଦେଖିବାକୁ ପାଉ । ସେହି ପୃଥିବୀ ଦେବୀ ତାର ସନ୍ତାନମାନଙ୍କୁ ରକ୍ଷା କରିବା ପାଇଁ ତନ୍ତ୍ରର ଦେବୀ ମହିଷମର୍ଦ୍ଦିନୀ ବିରଜା ରୂପେ ଆବିର୍ଭୂତା ହୋଇଛନ୍ତି । ଶାସ୍ତ୍ରରେ ମଧ୍ୟ ଉଲ୍ଲେଖ ଅଛି—

"ଉତ୍କଳେ ନାଭି ଦେଶେଚ ବିରଜାକ୍ଷେତ୍ରମୁଚ୍ୟତେ ।
ବିମଳାଖ୍ୟା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ।"

ଏଠାରେ ଜଗନ୍ନାଥଙ୍କୁ ଭୈରବ ବୋଲି କୁହାଯାଇଛି । ମହାମାୟା ସତୀଙ୍କର ନାଭିଦେଶ ଶିବଙ୍କ ସ୍କନ୍ଧ ଦେଶରୁ ସେହି ଅଞ୍ଚଳରେ ପଡ଼ିଥିଲା । ତନ୍ତ୍ର ଶାସ୍ତ୍ରରେ ଉଲ୍ଲେଖ ଅଛି, ସତୀଙ୍କ ଦେହର ଅଂଶମାନ ଯେଉଁ ଯେଉଁ ଅଞ୍ଚଳରେ ପଡ଼ିଥିଲା, ପରବର୍ତ୍ତୀ କାଳରେ ସେହି ଅଞ୍ଚଳରେ ତନ୍ତ୍ରପୀଠମାନ ଗଢ଼ି ଉଠିଲା ଓ ତନ୍ତ୍ରର ଦେବତା ପୂଜା ପାଇଲେ । ଏହି ଉକ୍ତି ଅନୁଯାୟୀ ଏଠାରେ ନାଭିଦେଶ ପଡ଼ିଥିବା ଉଲ୍ଲେଖ ଅଛି । ଏଠାରେ କ୍ଷେତ୍ରାଧିଶ୍ୱରୀ ବିମଳା ଓ ଭୈରବ ହେଉଛନ୍ତି ଜଗନ୍ନାଥ । ପଣ୍ଡିତ ନୀଳକଣ୍ଠଙ୍କ ଗୀତା ପ୍ରବେଶରୁ ଜଣାଯାଏ ଯେ ଏଠାରେ ଦେବୀ ବିମଳା ଓ ଭୈରବ ଜଗନ୍ନାଥ । ଏହା ସମ୍ଭବତଃ ଜଗନ୍ନାଥ ମନ୍ଦିରର ଭିତର ବିମଳା ପୀଠ । ବିରଜା ବିମଳା ଏକାର୍ଥକ । ବୋଧହୁଏ ଯାଜପୁର ବିରଜା କେବଳ ଆସି ବିମଳା ରୂପରେ ଜଗନ୍ନାଥଙ୍କ ମନ୍ଦିରରେ ପ୍ରତିଷ୍ଠିତ ହୋଇଛନ୍ତି ।

ପୁନର୍ବାର ଉଡ଼୍‌ଡ଼ୀଶ ତନ୍ତ୍ରରେ ଉଡ଼୍‌ଡ଼ୀୟାନ ପୀଠର ତୃତୀୟ ସ୍ତବକରେ ଯାହା ବର୍ଣ୍ଣିତ ହୋଇଛି ସେଥିରୁ ଜଣାଯାଏ, ସତୀଙ୍କର ଜିହ୍ୱା ଉଡ଼୍ର ଦେଶରେ ପଡ଼ିଥିଲା—

"ରସନା ଉଡ଼୍ର ଦେଶେଚ ବିମଳା ପୁରୁଷୋତ୍ତମେ
ତଦୁଚ୍ଛିଷ୍ଟ ମହାପୀଠେ ଜଗନ୍ନାଥାଖ୍ୟ ଭୈରବଃ ।"

ଏଭଳି ଉଲ୍ଲେଖର ବାସ୍ତବିକ ଯଥାର୍ଥତା ରହିଛି । ଶ୍ରୀଜଗନ୍ନାଥଙ୍କ **ନିକଟରେ** ନୈବେଦ୍ୟ ହେଉଥିବା ପ୍ରସାଦ ବିମଳାଙ୍କ ନିକଟରେ ସମର୍ପଣ ହେଲା ପରେ ମହାପ୍ରସାଦ ରୂପେ ବିବେଚିତ ହୁଏ । ସେହି ଉଡ଼୍‌ଡ଼ୀଶ ତନ୍ତ୍ରରେ ଉଡ଼୍‌ଡ଼ୀୟାନକୁ ମହାପୀଠ ବୋଲି କୁହାଯାଇଛି—

ବିରଜା ବିମଳା ମଧ୍ୟେ କ୍ଷେତ୍ରଂତ୍ରୈକ୍ଷଲମୁତ୍ତମମ୍ ।
ଉଡ଼୍‌ଡ଼ୀୟାନଂ ମହାପୀଠଂ କୈଳାଶ୍ୱରସମର୍ଥିତମ୍ ।

କାଳିକା ପୁରାଣର ୬୪ ଅଧ୍ୟାୟରେ ଓଡ଼ିଶା ତନ୍ତ୍ରର ପ୍ରଥମପୀଠ ବୋଲି କୁହା ହୋଇଛି ଓ ଉଲ୍ଲେଖ ଅଛି ଯେ ଉଡ଼୍ର ପୀଠ ପଶ୍ଚିମରେ ଉଡ୍ରେଶ୍ୱରୀ ଶିବା କାତ୍ୟାୟନୀ ଓ ଜଗନ୍ନାଥ ପୂଜାପାନ୍ତି ।

ଓଡ୍ର।ଖ୍ୟଂ ପ୍ରଥମ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍ ।
ତୃତୀୟଂ ପୂର୍ଣ୍ଣପୀଠଂତୁ କାମରୂପଂ ଚତୁର୍ଥକମ୍ ॥
ଓଡ୍ରପୀଠଂ ପଶ୍ଚିମେତୁ ତଥୈବୋଡ୍ରେଶ୍ୱରୀଂ ଶିବାମ୍ ।
କାତ୍ୟାୟନୀଂ ଜଗନ୍ନାଥ ମୋଡ୍ରେଶଂଚ ପ୍ରପୂଜୟେତ୍ ॥

ବୌଦ୍ଧ ଗ୍ରନ୍ଥମାନଙ୍କରେ ଉଡ୍‌ଡ଼ୀୟାନ ଉଡ଼୍ୟ ବା ଓଡ୍ର ଦେଶ ନାମ ଉଲ୍ଲେଖ ଅଛି । ଉଡ଼୍‌ଡ଼ୀୟାନରେ ବଜ୍ରଯାନର ଉଦ୍ଭବ ହୋଇଥିଲା । ବଜ୍ରଯାନର ଚାରୋଟି ପୀଠ ଆସାମ, ବଙ୍ଗ, ଓଡ଼ିଶା ଓ ଅନ୍ଧ୍ର ପ୍ରଦେଶରେ ଅବସ୍ଥିତ । ପୂର୍ଣ୍ଣ କୋଟି ନାମରେ ନାମିତ ଆନ୍ଧ୍ର ପ୍ରଦେଶର ପିଠଟି ପୂର୍ବେ ଦକ୍ଷିଣ କଳିଙ୍ଗରେ ଅବସ୍ଥିତ ଥିଲା ।

ଶ୍ରୀଜଗନ୍ନାଥ ବୈଦିକ ଯୁଗ ପୂର୍ବରୁ ପୂଜାପାଇ ଆସିଛନ୍ତି । ପ୍ରାଗ୍ ବୈଦିକ ସଭ୍ୟତାର ଚରମୋତ୍କର୍ଷ ପ୍ରାପ୍ତ ଜଗନ୍ନାଥଙ୍କ ଭଳି । ସେହିଭଳି ସ୍ୱରୂପ ବୈଦିକ ଯୁଗରେ ବା ତାପରେ ଥିବାର ଦୃଷ୍ଟାନ୍ତ **ନାହିଁ** । ବିଶେଷ ଭାବରେ ତାଙ୍କର ସ୍ୱରୂପ ଭୟଙ୍କର । ବୈଦିକ ଆର୍ଯ୍ୟମାନଙ୍କର ଦେବତା ଏତେ ଭୟଙ୍କର ନୁହନ୍ତି । ବରଂ ତନ୍ତ୍ରର ଦେବତାମାନେ ଭୟଙ୍କରତାର ସୀମା ସ୍ପର୍ଶ କରିଛନ୍ତି । ତନ୍ତ୍ର ଦଶମହାବିଦ୍ୟାର କାଳୀ, ତାରା, ଛିନ୍ନମସ୍ତା, ଧୂମାବତୀ, ବଗଳାମୁଖୀଙ୍କ ଆସ୍ୱାଧନତା ସାଧକ ମନରେ ମଧ୍ୟ ଭୟସଞ୍ଚାର କରାଏ । ସେହିଭଳି ଓଡ଼ିଶାରେ ପୂଜା ପାଉଥିବା ଚାମୁଣ୍ଡା ଅତି ଭୟଙ୍କର ।

ଜଗନ୍ନାଥ ଅର୍ଥ ଜଗତର ନାଥ । ଜଗନ୍ନାଥଙ୍କର ଏହି ନାମ ପୂର୍ବରୁ ଥିଲା କି ପରେ ଦିଆ ଯାଇଛି ସେ ବିଷୟରେ ହେଉଛି କିଛି ପ୍ରମାଣ ନାହିଁ । ଡ଼ଃ ବେଣୀ ମାଧବ ପାଢ଼ୀ ଦାରୁଦେବତାରେ ଲେଖିଛନ୍ତି, "କିରୁଙ୍ଗ ସମସ୍ତ ଶବର ଜାତିର ମୂଳ ଦେବତା ଓ ସେ ସମସ୍ତ ଶବର ଗୋଷ୍ଠି ସୃଷ୍ଟି କରିଛନ୍ତି ବୋଲି ସୌରମାନେ କହନ୍ତି । ଗାଁ ବାହାରେ ବଣ ଭିତରେ ଗୋଟିଏ ଗଛରେ କିରୁଙ୍ଗ ରହୁଥିବାର ସେମାନେ ବିଶ୍ୱାସ କରନ୍ତି । ଯେଉଁ ବୃକ୍ଷକୁ ସେମାନେ 'ଜଗନ୍ତ' ବୋଲି କହନ୍ତି ସେହି ବୃକ୍ଷକୁ ଏପରିକି ସେ ଥିବା ଉଦ୍ୟାନ ଭିତରେ କୌଣସି ବୃକ୍ଷକୁ ସେମାନେ ଛେଦନ କରନ୍ତି ନାହିଁ।... ଏ ଦୃଷ୍ଟିରୁ ମନେହୁଏ ଯେଉଁ ବୃକ୍ଷ ବା ଦାରୁକୁ ସେମାନେ 'ଜଗନ୍ତ' ଆଖ୍ୟାରେ ପୂଜା କରୁଥିଲେ ତାହା ପରବର୍ତ୍ତୀ ଜଗନ୍ନାଥ ଶବ୍ଦର ମୂଳ ହୋଇଥାଇ ପାରେ ।" ଡଃ ପାଢ଼ୀ ଜଗନ୍ନାଥ ଶବ୍ଦ 'ଜଗନ୍ତ'ର ଅପଭ୍ରଂଶ ବୋଲି ଧାରଣା କରିଛନ୍ତି । ଏହା ବୈଦିକ ନୁହେଁ କିମ୍ବା ସଂସ୍କୃତ ବି ନୁହେଁ । ଯଦି ଏହା ହିଁ ହୁଏ ତେବେ ଜଗନ୍ନାଥ ପ୍ରାଗ୍‌ବୈଦିକ ଦେବତା ଏବଂ ବର୍ତ୍ତମାନର ତନ୍ତ୍ରଧାରା ହିଁ ସେହି ପ୍ରାଗ୍‌ବୈଦିକ ସଂସ୍କୃତିର ।

ଶ୍ରୀଜଗନ୍ନାଥ ପୂର୍ବ ପୁରି ତନ୍ତ୍ରର ଦେବତା । ବର୍ତ୍ତମାନ ମଧ୍ୟ ସେ ପୁରୁଷ କିମ୍ବା ସ୍ତ୍ରୀ କିଛି ଜଣା ପଡ଼ନ୍ତି ନାହିଁ । କେବଳ ଜଗନ୍ନାଥ ଶବ୍ଦଟିରୁ ମନେହୁଏ ସେ ପୁରୁଷ । ତା' ନହେଲେ ତାଙ୍କ ନାକରେ ନୋଲକ ଥିବା ଦୃଷ୍ଟିରୁ ସେ ସ୍ତ୍ରୀ ଦେବତା ରୂପେ ଉପାସିତ ହୋଇଥାନ୍ତେ । ପୂର୍ବେ ସେ କେଉଁଭଳି ଭାବରେ ଉପାସିତ ହେଉଥିଲେ ତା'ର କୌଣସି ବିଧିବଦ୍ଧ ଇତିହାସ ନାହିଁ । ମାଦଳାପାଞ୍ଜି ୯୪ଶହ ବର୍ଷ ପୂର୍ବର । ସେ ପୁଣି ବିଧର୍ମୀଙ୍କ କବଳରେ ପଡ଼ି ନଷ୍ଟ ହୋଇଯିବା ହେତୁ ବହୁ ପରେ ପୁନର୍ବାର ଲେଖାହୋଇଛି । ଏପରି କି ପାଞ୍ଚଶହ ବର୍ଷ ତଳର ଜଗନ୍ନାଥଙ୍କ ଇତିହାସ ମଧ୍ୟ ମାଦଳାପାଞ୍ଜିରୁ ଠିକ୍ ରୂପେ ମିଳିପାରିବ କି ନା ସନ୍ଦେହ । କେବଳ ଇତିହାସ ବିଷୟ ବସ୍ତୁକୁ ଲକ୍ଷ୍ୟକରି ଯାହା କୁହାଯାଇପାରେ । ଡ଼ଃ ମହତାବ ତାଙ୍କ ଓଡ଼ିଶା ଇତିହାସରେ ହେଉଛି ଶ୍ରୀ ଜଗନ୍ନାଥଙ୍କ ବିଷୟରେ ଉଲ୍ଲେଖ କରିଛନ୍ତି । ସେଥିରୁ ଜଣାଯାଏ, ରାମାନୁଜାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କୁ ସ୍ମାର୍ତ୍ତମତରେ ପୂଜା କରିବା ପାଇଁ ଚେଷ୍ଟା କରି ବିଫଳ ହୋଇଥିଲେ । ମାଦଳା-ପାଞ୍ଜିରେ ମଧ୍ୟ ଲେଖା ଅଛି— ରାମାନୁଜଙ୍କୁ ଗରୁଡ ନେଇ ଦଣ୍ଡଭଙ୍ଗା ନଦୀରେ ପକାଇ ଦେଇ ଅ.ସିଲା । ଏହି ସବୁ ଦୃଷ୍ଟିରୁ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଶ୍ରୀଜଗନ୍ନାଥ ସ୍ମାର୍ତ୍ତ ମତରେ ପୂଜା ପାଉ ନଥିଲେ କିମ୍ବା ବର୍ତ୍ତମାନ ମଧ୍ୟ ପୂର୍ଣ୍ଣ ରୂପେ ସ୍ମାର୍ତ୍ତ ମତରେ ପୂଜା ପାଉନାହାନ୍ତି । ମାତ୍ର ଶ୍ରୀଜଗନ୍ନାଥଙ୍କୁ ବୈଦିକ ଦେବତା ବୋଲି ପ୍ରତିପାଦିତ କରିବା ପାଇଁ ଚେଷ୍ଟା ଚାଲିଛି ।

ତନ୍ତ୍ର ମତରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ବୋଲି କୁହା ହୋଇଛି । ଜଗନ୍ନାଥ ଭୈରବ ହେଲେ ବଳଭଦ୍ର, ସୁଭଦ୍ରାଙ୍କୁ ଉଭୟର ସାଧକ ଭାବେ ଗ୍ରହଣ କରାଯିବ । ତନ୍ତ୍ର

ସାଧନାରେ ଉତ୍ତର ସାଧକର ଆବଶ୍ୟକତା ରହିଛି । ସାଧକର ସାଧନାରେ ତ୍ରୁଟି ହେଲେ ଉତ୍ତର ସାଧକ ହିଁ ତାହା ପରିମାର୍ଜିତ କରିଥାଏ । ସେହିଭଳି ଉତ୍ତର ସାଧିକା ସାଧକର ଇଷ୍ଟଦେବୀ ସ୍ୱରୂପା । ତାହାଂର ଶକ୍ତିରେ ସାଧକ ଓ ଉତ୍ତରସାଧକ ଶକ୍ତିମାନ୍ । ସେଥିପାଇଁ ଉତ୍ତରସାଧିକା ସ୍ୱରୂପା ମହାଦେବୀ ସୁଭଦ୍ରା ହସ୍ତବିହୀନା । ହସ୍ତ ହିଁ ଶକ୍ତିର ସାଙ୍କେତିକ ଦ୍ୟୋତକ । ଯେଉଁ ସୁଦର୍ଶନ ଚକ୍ର ଶ୍ରୀଜଗନ୍ନାଥଙ୍କ ବାମ ଭାଗରେ ସ୍ଥିତ, ସେ ରଥଯାତ୍ରା ବେଳେ ସୁଭଦ୍ରାଙ୍କ ରଥରେ ରହନ୍ତି । ସୁଦର୍ଶନ ରୂପୀ ଅମୋଘ ଶକ୍ତି ଦେବୀ ସୁଭଦ୍ରାଙ୍କର । କେବଳ ଦେବୀଙ୍କ ସମୀପବର୍ତ୍ତୀ ହୋଇ ଜଗନ୍ନାଥ ଶକ୍ତିମାନ ହୋଇଛନ୍ତି । ଦେବୀଙ୍କ ଠାରୁ ଭିନ୍ନ ହେଲେ ସେ ଶକ୍ତିହୀନ ହୋଇ ପଡ଼ନ୍ତି । ଶକ୍ତିଯୁକ୍ତ ହୋଇ ଶବ ହିଁ ଶିବ ହୁଅନ୍ତି ଏବଂ ଶକ୍ତିହୀନ ହୋଇ ଶିବ ଶବ ହୋଇଥାନ୍ତି । ସେଥିପାଇଁ କାଳିକାଙ୍କ ସହିତ ସଂଯୁକ୍ତ ହୋଇ ଶବ ଶିବ ପଦବାଚ୍ୟ ହୁଅନ୍ତି ।

ସୁଦର୍ଶନର ଗଦା ଅଳଙ୍କୃତ । ଗଦା ଲୟ ବା ସଂହାର ଶକ୍ତିର ପ୍ରତିଭୂ । ଯେଉଁ ଶକ୍ତି ପ୍ରଭାବରେ ଏହି ଜଗତ୍ ଚକ୍ରର ପ୍ରଳୟ ହୁଏ, ତାହା ଗଦା ନାମେ ଅଭିହିତ ବୋଲି ବ୍ୟାଖ୍ୟାକାର କହନ୍ତି । ଗଦ୍ ଧାତୁର ଅର୍ଥ—ବ୍ୟକ୍ତ ଶବ୍ଦ । ମାତ୍ର ଚକ୍ରର ଅର୍ଥ ଭିନ୍ନ । ଚକ୍ର ଶବ୍ଦର ଅର୍ଥ ଜଗତ୍ । ଅନ୍ନ ଠାରୁ ପ୍ରାଣୀ, ପର୍ଜନ୍ୟରୁ ଅନ୍ନ, ଯଜ୍ଞରୁ ପର୍ଜନ୍ୟ, କର୍ମରୁ ଯଜ୍ଞ । ଅନୁଲୋମ ଓ ବିଲୋମ ଭାବେ ଏହି ଚକ୍ରବତ୍ ଗତିର ନାମ ସଂସାର । ଶକ୍ତି ଦ୍ୱାରା ଚକ୍ର ସଦା ଘୂର୍ଣ୍ଣାୟମାନ । ଶକ୍ତି ହ୍ରାସ ହେଲେ ଗତିର ମଧ୍ୟ ହ୍ରାସ ହୁଏ ଏବଂ ବିଶ୍ୱର ସମସ୍ତ ପ୍ରକାର ବ୍ୟତିକ୍ରମ ଦେଖାଦିଏ ।

ସମସ୍ତ ତନ୍ତ୍ର ଶାସ୍ତ୍ରର ସାରାଂଶରେ ସପ୍ତଶତୀଚଣ୍ଡୀ ଲିଖିତ । ଏହି ଚଣ୍ଡୀ ତିନୋଟି ଚରିତ୍ରରେ ସମ୍ପୂର୍ଣ୍ଣ ହୋଇଛି । ତିନୋଟି ଚରିତ୍ରର ପ୍ରତିପାଦ୍ୟ ଦେବତା ତିନି । ପ୍ରଥମ ଚରିତ୍ରରେ ମହାକାଳୀ, ମଧ୍ୟମ ଚରିତ୍ରରେ ମହାଲକ୍ଷ୍ମୀ ଏବଂ ଉତ୍ତର ଚରିତ୍ରରେ ଦେବୀ ସରସ୍ୱତୀ । ଠିକ୍ ଏହି କ୍ରମରେ ଶ୍ରୀଜଗନ୍ନାଥ-ସୁଭଦ୍ରା-ବଳଭଦ୍ର ବସିଛନ୍ତି । କାଳୀ ଯେଉଁଭଳି କୃଷ୍ଣବର୍ଣ୍ଣା ସେହିଭଳି ଶ୍ରୀଜଗନ୍ନାଥ ଅନ୍ଧକାର ଭଳି କୃଷ୍ଣବର୍ଣ୍ଣ । ମହାଲକ୍ଷ୍ମୀ ଯେଉଁଭଳି ସୁବର୍ଣ୍ଣବର୍ଣ୍ଣା, ଦେବୀ ସୁଭଦ୍ରା ସେହିଭଳି କାଞ୍ଚନବର୍ଣ୍ଣା ଏବଂ ସରସ୍ୱତୀ ଶ୍ୱେତବର୍ଣ୍ଣା ଥିବାରୁ ବଳଭଦ୍ର ଶୁଭ୍ରବର୍ଣ୍ଣଯୁକ୍ତ । କିନ୍ତୁ ପ୍ରଥମେ ଶ୍ରୀଜଗନ୍ନାଥ ଏକମାତ୍ର ଥିଲେ, ପରେ ବଳଭଦ୍ର ଓ ସୁଭଦ୍ରା ଆସିଛନ୍ତି । ସେ ମଧ୍ୟ ତାଙ୍କର ସ୍ୱରୂପ, ବର୍ଣ୍ଣ ଭିନ୍ନ ଭିନ୍ନ ।

ଚଣ୍ଡୀରେ ମଧୁ କୈଟଭ ବଧ ପାଇଁ ମହାକାଳିକାଙ୍କୁ ବ୍ରହ୍ମା ସ୍ତୁତି କରିଛନ୍ତି । ତାହା ନ ହେଲେ ବ୍ରହ୍ମାଙ୍କର ସ୍ଥିତି ଅସମ୍ଭବ ହୋଇ ପଡ଼ିଥାନ୍ତା । ପୂର୍ବର ସୃଷ୍ଟି ଧ୍ୱଂସ ହୋଇଛି, ତେଣୁ ପାଳନକର୍ତ୍ତା ବିଷ୍ଣୁ ଅନନ୍ତଙ୍କୁ ଶଯ୍ୟା ରୂପେ ବିସ୍ତୃତ କରି ପ୍ରଳୟ ଜଳରେ ଯୋଗ ନିଦ୍ରାରେ ନିମଗ୍ନ ହେଲେ । ଏହି ସମୟରେ ବିଷ୍ଣୁଙ୍କ କର୍ଣ୍ଣ ମୂଳରୁ ମଧୁ କୈଟଭ ନାମକ ରାକ୍ଷସଦ୍ୱୟ ଉତ୍ପନ୍ନ ହୋଇ, ତାଙ୍କର ନାଭିପଦ୍ମସ୍ଥିତ ବ୍ରହ୍ମାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟତ

ହେଲେ । ବ୍ରହ୍ମା କିପରି ମଧୁ କୈଟଭଙ୍କଠାରୁ ରକ୍ଷା ପାଇବେ, ସେଥିପାଇଁ ବିଷ୍ଣୁଙ୍କ ନୟନାଶ୍ରିତା, ଅତୁଳନୀୟା ତାମସୀ ଶକ୍ତି ଯୋଗନିଦ୍ରା ରୂପିଣୀ ଭଗବତୀଙ୍କୁ ପ୍ରାର୍ଥନା କଲେ । ଦେବୀ ବ୍ରହ୍ମାଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ବିଷ୍ଣୁଙ୍କ ଚକ୍ଷୁରୁ ଅପସାରିତ ହେଲବେଳେ, ବ୍ରହ୍ମା ତାଙ୍କୁ ଦେଖିବାକୁ ପାଇଥିଲେ । ବିଷ୍ଣୁ ନିଦ୍ରା ତ୍ୟାଗକରି ଦେଖିବାକୁ ପାଇଲେ ଯେ, ମଧୁ କୈଟଭ ବ୍ରହ୍ମାଙ୍କୁ ବଧ କରିବାକୁ ଉଦ୍ୟତ । ବିଷ୍ଣୁ ତତ୍‌କ୍ଷଣାତ୍ ବ୍ରହ୍ମାଙ୍କୁ ରକ୍ଷା କରିବାକୁ ମଧୁ କୈଟଭଙ୍କ ସହିତ ପାଞ୍ଚ ହଜାର ବର୍ଷ ବାହୁ ଯୁଦ୍ଧ କଲେ । ଅନନ୍ତର ସେହି ଅତିବଳଗର୍ବିତ ଅସୁରଦ୍ୱୟ ମହାମାୟାଙ୍କ ଦ୍ୱାରା ବିମୋହିତ ହୋଇ ବିଷ୍ଣୁଙ୍କୁ କହିଲେ, "ଆମେ ତୁମ ବୀରତ୍ୱରେ ସନ୍ତୁଷ୍ଟ, ତୁମେ ଆମଠୁ ବର ମାଗ" । ବିଷ୍ଣୁ ସଙ୍ଗେ ସଙ୍ଗେ ତାଙ୍କୁ କହିଲେ – "ତୁମେ ମୋ ହସ୍ତରେ ବଧ ହୁଅ ।" ରାକ୍ଷସଦ୍ୱୟ ବିଷ୍ଣୁଙ୍କ କଥା ଶ୍ରବଣ କରି କଥା ବୁଝାଇ କହିଲେ—"ଯେଉଁଠାରେ ଜଳ ନାହିଁ ସେହିଠାରେ ଆମକୁ ବଧ କର ।" ବିଷ୍ଣୁ ନିଜ ଜଙ୍ଘ ଉପରେ ରାକ୍ଷସ ଦ୍ୱୟଙ୍କ ମସ୍ତକ ରଖି ଚକ୍ର ଦ୍ୱାରା ସେମାନଙ୍କ ମସ୍ତକ କର୍ତ୍ତନ କଲେ ।

କୃଷ୍ଣ, ହରିତ ଓ ଶ୍ୱେତ ବର୍ଣ୍ଣ ଯଥାକ୍ରମ ତମ, ରଜ ଓ ସତ୍ତ୍ୱ ଗୁଣ ବୋଲି ଧରାଯାଏ । ଶ୍ରୀଜଗନ୍ନାଥ ଗାଢ଼ କୃଷ୍ଣବର୍ଣ୍ଣ, ତେଣୁ ସେ ତମଗୁଣ ପର୍ଯ୍ୟାୟର । ସେହି ପର୍ଯ୍ୟାୟର ମଧ୍ୟ ମହାକାଳିକା । ମହାକାଳିକା ଜଗନ୍ନାଥ ରୂପରେ ଅବସ୍ଥାନ କରିଛନ୍ତି । ସତ୍ତ୍ୱାଦି ଗୁଣର ଅବସାନ ତାମସୀମୂର୍ତ୍ତି ମଧ୍ୟରେ ହୋଇଥାଏ । ତେଣୁ ଶ୍ରୀଜଗନ୍ନାଥ ଅନ୍ଧକାର ବର୍ଣ୍ଣରେ ଅବସ୍ଥାନ କରିଛନ୍ତି । କାଳୀ ମଧ୍ୟ ବିଷ୍ଣୁଙ୍କର ଶକ୍ତି । ବିଷ୍ଣୁଙ୍କୁ ମଧ୍ୟ କାଳ କୁହାଯାଏ । କାଳର ଶକ୍ତି କାଳୀ । ତାଙ୍କର କାଳଚକ୍ର ସୁଦର୍ଶନ ତାଙ୍କ ବାମ ଭାଗରେ ସ୍ଥିତ । ସ୍ୱାମୀ ଯୋଗାନନ୍ଦଙ୍କ ଭାଷାରେ—"ମହାଶକ୍ତି ମହାମାୟା, ସୃଷ୍ଟିକାରିଣୀ ବୈଷ୍ଣବୀ-ମାୟା ଶକ୍ତି ରୂପେ ଅହଙ୍କାର, ମମତା ପ୍ରଭୃତି ଅଜ୍ଞାନତାମୂଳକ ଅନନ୍ତ ଭେଦ ଜ୍ଞାନ ରୂପ ଚକ୍ରଦ୍ୱାରା ଜୀବଜଗତର ସମସ୍ତଙ୍କୁ ସଂସାର ରୂପ ଚକ୍ରରେ ସତତ ଘୂରାଉଛନ୍ତି ।" ପୁଣି ଇଚ୍ଛାମୟୀ ଯେତେବେଳେ ଇଚ୍ଛା କରନ୍ତି, ସେତେବେଳେ ସେହି ଚକ୍ରଦ୍ୱାରା ମାନବର ସଂସାର ଚକ୍ର ଖଣ୍ଡନ କରନ୍ତି । ସତ୍ତ୍ୱଗୁଣଜାତ ମଧୁକୈଟଭ ତମ ଗୁଣ ମଧ୍ୟରେ ବିଲୀନ ହେବା ସ୍ୱାଭାବିକ । ସକଳ ବର୍ଣ୍ଣ କୃଷ୍ଣବର୍ଣ୍ଣରେ ମିଶି ନିଜର ସତ୍ତା ହରାଇଥାନ୍ତି ।

ବ୍ରହ୍ମା ସେହି ତାମସୀ ଶକ୍ତିଙ୍କୁ ସ୍ତବ କରିବାକୁ ଯାଇ କହିଛନ୍ତି—"ତ୍ରିଧା ମାତ୍ରାତ୍ମିକା" । ଏହା ହିଁ ଅ-ଉ-ମ ର ସମଷ୍ଟିପ୍ରଣବ । ଶ୍ରୀଜଗନ୍ନାଥ ମଧ୍ୟ ପ୍ରଣବରୂପ । ଭୁଇଦାସ 'ପ୍ରଣବ'କୁ ଶିଶୁବେଦ ବା ଗର୍ଭସ୍ଥ ଶିଶୁର ୪୦ ମାସର ଆକାର ବୋଲି କହି ସେଥିରେ ପଞ୍ଚମାତ୍ରାର ସମାବେଶ କରିଛନ୍ତି ଓ ସେହି ପ୍ରଣବର ବିଭିନ୍ନ ମାତ୍ରାକୁ ଜଗନ୍ନାଥାଦି ମୂର୍ତ୍ତି ଚତୁଷ୍ଟୟଙ୍କୁ ଚତୁର୍ମାତ୍ରା ବୋଲି କହିଛନ୍ତି ।

“ଅଠ ମାସ ଶିଶୁ ଉଜାଣି ପିଉଛୁ ଶିରରେ ବାନ୍ଧେଣି ସପତ ନାଡ଼ୀ ।
ଅକାର ଅବନା ନାମ ଯେବେ ଅଛୁ ବଡ ଠାକୁରଙ୍କୁ ଝଲାପାହାଡ଼ି ।।
ମର୍ତ୍ତିରେ ଉକାର ସୁଭଦ୍ର ସେତ ଅଢ଼ାଇ ଘେରରେ ନାହି ମୁଣ୍ଡାରେ ।
ଉକାର ନାଦରେ ମେଦନୀ କର୍ମାଏ ଅରୁଣ ତେଜରେ ଉଦନାସ୍ୱରେ ।।
ମକାର ବ୍ରହ୍ମାଣ୍ଡ ଯାକ ମିଳାଉଛୁ ପିଣ୍ଡ ବ୍ରହ୍ମାଣ୍ଡକୁ ଛନ୍ଦା ଚରଣ ।
ଶୂନ୍ୟ ବେଢନରେ ଗୋଳହାଟଳିଲା ଶିଶୁବେଦର ସେ ଭେଦଟି ନାଣ ।।

× × ×

ନାଦ ବିନ୍ଦୁ ଜ୍ୟୋତି ରକତ ବରଣ ତେଜରେ ବେଢ଼ିଛୁ ନାଡ଼ୀ ମଣ୍ଡଳ ।

× × ×

ଶିଶୁମାର ଚକ୍ର ବେଢ଼ାଇ ରଖିଛୁ ଚକ୍ରରୂପ ଯେବେ ସେହି କାରଣେ ।

× × ×

ଏ ଚତୁର ଛନ୍ଦ ବୁଝିବେ ଅଚତୁରଙ୍କୁ ଏ ଭୂଆ ଘାଏଲା ।
ବୁଲଇଦାସ କହେ ଶିଶୁବେଦ ଜାଣି ଅନନ୍ତ ଶିଶୁରେ ପଣରେ ଛଳ ।।”

ଓଁ କାର ରୂପେ ଶ୍ରୀ ଜଗନ୍ନାଥଙ୍କୁ ଓଡ଼ିଶାର କବିମାନେ ବର୍ଣ୍ଣନା କରିବାକୁ କେବେ ଭୁଲି ନାହାନ୍ତି । ଶ୍ରୀଜଗନ୍ନାଥ-ବଳଭଦ୍ର-ସୁଭଦ୍ରା-ସୁଦର୍ଶନ ପ୍ରତ୍ୟେକ ସେହି ଏକରୁ ବହୁରୂପ-ଭାବ ନେଇ ଅବସ୍ଥାନ କରିଛନ୍ତି । ସେ ବହୁ ହେଲେ ମଧ୍ୟ ଏକ—ଯେଉଁଭଳି ପ୍ରଣବ ତିନୋଟି ମାତ୍ରାମିଳି ଓଁ କାର ହୋଇଛି । ଓଡ଼ିଶାର ଅନ୍ୟତମ କବି ଅଚ୍ୟୁତାନନ୍ଦ କହନ୍ତି, ସୃଷ୍ଟି ମହାଅନ୍ଧକାରାଚ୍ଛନ୍ନ ଓ ଜଳ ପୂର୍ଣ୍ଣ ଥିଲା । ସେହି ଜଳ ବାୟୁ ଭୂମିର ଆବର୍ତ୍ତନରେ ଏକ ମହାଜ୍ୟୋତିରେ ପ୍ରକାଶିତ ହେଲା । ସେ ମହାଜ୍ୟୋତି ପ୍ରଥମେ ‘ଅ’ କାର ନାଦ ଯୋଗେ ଶୁକ୍ଳବର୍ଣ୍ଣ, ପରେ ‘ଉ’କାର ନାଦରେ ଅରୁଣ ବର୍ଣ୍ଣ ଏବଂ ସର୍ବଶେଷରେ ‘ମ’କାର ନାଦରେ ଶ୍ୟାମଳ ବର୍ଣ୍ଣର ଜ୍ୟୋତି ରୂପ ଗ୍ରହଣ କଲା । ଏହି ଜ୍ୟୋତିତତ୍ତ୍ୱ ହିଁ ନାଦବ୍ରହ୍ମର କାରଣ ଓ ଏହା ହିଁ ଓଁ କାର ନାଦ ।

ଅନ୍ଧକାର ଥିଲା ଯୋଟିଲିକ ଜଳ ଜଳଥଳ ସଙ୍ଗେ ମିଳିଲା ବାତ ।।
ଘନକ ଘନହେଁ ବଳଲେରେ ତହିଁ ଦୀପଜ୍ୟୋତି ପ୍ରାପ୍ତ ତେଜ ପ୍ରାପତ ।
ଶୁକ୍ଳ ଜ୍ୟୋତି ନାଦ ଅକାର ବୋଲାଇ ଅରୁଣ ଜ୍ୟୋତିରେ ଉକାର ସ୍ୱର ।।
ଘନ ନୀଳ ଜ୍ୟୋତି ପ୍ରକଟିଲା ତହିଁ ମକାର ଶବଦ ହେଲା ପ୍ରଚୁର ।।
ନାଦମାନଙ୍କର ହେତୁ ଜ୍ୟୋତି ତିନି ତିନମାତ୍ରା ମିଳି ଓଁ କାର ହେଲା ।
କହଇ ଅଚ୍ୟୁତ ଗୋପାଳ ନନ୍ଦନ ଜଗତର ନାଥ ନାମ ବହିଲା ।।

ତନ୍ତ୍ରର ଓଁ କାରମୟୀ ଦେବୀ ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା, ଏଥିରେ ସନ୍ଦେହ ନାହିଁ । ବ୍ରହ୍ମ ପୁରାଣ ୪୫ ଅଧ୍ୟାୟରେ ଜଗନ୍ନାଥଙ୍କୁ ମଧ୍ୟ ଜ୍ୟୋତି ରୂପମୟ ବୋଲି କୁହାହୋଇଛି । ଏହି ଜ୍ୟୋତିକୁ ମଧ୍ୟ ତନ୍ତ୍ରର ଯୋଗ ପର୍ଯ୍ୟାୟରେ କୁଣ୍ଡଳିନୀ ଶକ୍ତିବୋଲି କୁହାଯାଏ—

ଏବଂ ଲକ୍ଷଣ ସଂପୂର୍ଣ୍ଣଂ ଏବେନ୍ଦ୍ରସ୍ୟ ବିବର୍ଜ୍ଜିତମ୍
କୂଟସ୍ଥମଚଳଂ ସୂକ୍ଷ୍ମଂ ଜ୍ୟୋତିରୂପଂ ସନାତନମ୍ ।।
ଭାବାଭାବବିନିର୍ମୁକ୍ତଂ ବ୍ୟାପିନଂ ପ୍ରକୃତେଃ ପରମ୍ ।
ନମସ୍ୟାମି ଜଗନ୍ନାଥମୀଶ୍ୱରଂ ସୁଖଦଂ ପ୍ରଭୁମ୍ ।।

ପଞ୍ଚ ବ୍ରହ୍ମୋପନିଷଦ୍‌ରେ କୁଣ୍ଡଳିନୀ ରହସ୍ୟକୁ ମନ୍ତ୍ରଶକ୍ତି କୁହାହୋଇଛି । ଏହି କୁଣ୍ଡଳିନୀ ବ୍ୟକ୍ତିର ଗୁହ୍ୟ ଦ୍ୱାରରେ ସୁପ୍ତଥାଏ । ତନ୍ତ୍ରରେ ମହାକାଳିକାଙ୍କୁ ମଧ୍ୟ କୁଣ୍ଡଳିନୀ ଶକ୍ତି ବୋଲି କୁହା ହୋଇଛି । ଚଣ୍ଡୀର ଅନ୍ୟତମ ବ୍ୟାଖ୍ୟାକାର ସ୍ୱାମୀ ଯୋଗାନନ୍ଦ କହିଛନ୍ତି, ନିବୃତ୍ତି-ପରାୟଣ ଭକ୍ତ ସାଧକର ତମୋଗୁଣ ବିଲୟଗତି ପ୍ରାପ୍ତ ହେବାରୁ, ଏହି ପ୍ରଳୟଙ୍କରୀ ମୂର୍ତ୍ତିରେ ରଜଃ ଓ ତମୋଗୁଣାତ୍ମକ ଅସଦ୍‌ଭାବ ବା ଆସୁରିକ ବୃତ୍ତି ସମୂହ ଲୟ କରିଥାଏ । ପ୍ରଥମ ଚରିତରେ ଏହି ପ୍ରକାର ବିଲୟ ଭାବରେ ସାଦୃଶ୍ୟ ଥିବା ହେତୁ ପ୍ରଥମ ଚରିତର ଦେବତା—ମହାକାଳୀ । ଏହା ଛଡ଼ା ଶରଣାଗତ ସାଧକର ପ୍ରବୃତ୍ତିମୁଖୀ ରଜଃ ଓ ତମୋଗୁଣର ଚାଞ୍ଚଲ୍ୟ ଏବଂ ମାଳିନ୍ୟ, ଜୀବଭାବ ପ୍ରଳୟ କାରିଣୀ ତାମସୀ ମହାକାଳୀ କୁଣ୍ଡଳିନୀ ନିଜ ଦେହରେ ଲୟ କରନ୍ତି; ଏଥିପାଇଁ ପ୍ରଥମ ଚରିତର ଦେବତା ମହାକାଳୀ ।

ଓଡ଼ିଶାରେ 'ଆହୁଲ' ନାମକ ଏକ ପନ୍ଥୀ ଥିଲେ । ସେମାନେ ବଙ୍ଗୀୟ ବାଉଲ ଧର୍ମସଂପ୍ରଦାୟର ବୋଲି ଶ୍ରୀମନ୍ଦିର ସମାଚାର ୧-୧୬ରେ ଉଲ୍ଲେଖ ଅଛି । ସେମାନେ ଥିଲେ ସହଜିୟା ଧର୍ମର । ପୁରୀରେ ସେମାନଙ୍କର ମଠଥିଲା 'ଆହୁଲା' । ଶ୍ରୀ ଚୈତନ୍ୟଙ୍କ ସମୟରେ ତାହା ବୈଷ୍ଣବ ସଂପ୍ରଦାୟର କେନ୍ଦ୍ରଥିଲା । ସେହି ଅହୁଲମାନଙ୍କର ସିଦ୍ଧାନ୍ତକୁ ପରେ ସହଜଯାନର ସିଦ୍ଧାନ୍ତ ବୋଲି ଗ୍ରହଣ କରାଯାଇଛି । ସେମାନଙ୍କ ମତରେ ଜଗନ୍ନାଥାଦି ଦାରୁ ବିଗ୍ରହ ପଞ୍ଚାୟତନ ହିଁ ପଞ୍ଚ ମହାତତ୍ତ୍ୱ ।

ଦାରୁବ୍ରହ୍ମ ପଞ୍ଚତତ୍ତ୍ୱ ଯେ ଅଟନ୍ତି ପାଞ୍ଚମୂରତି ।
ପୃଥିବୀତତ୍ତ୍ୱରେ ଧରଣୀଧର ସେ ବିଜେ କରନ୍ତି ।।
କୁଣ୍ଡଳିନୀ ମହାବାୟୁ ତତ୍ତ୍ୱ ସେହୁ ଯୋଗର ସାର ।
ଯଜ୍ଞରୂପ ହରି ଜଗତର ନାଥ ବ୍ରହ୍ମ ବେଭାର ।।
ମାଧବ ଜଳରେ ଭାସନ୍ତି ଯେ ହରି ଆଦି ମୂରତି ।
କହଇ ଆହୁଲି ପରମ ଅଟନ୍ତି ଗତି ମୁକତି ।

ପଞ୍ଚସଖାମାନଙ୍କ ରହସ୍ୟାତ୍ମକ ତତ୍ତ୍ୱ ସହିତ ଶୂନ୍ୟ ତତ୍ତ୍ୱ ସଂଯୁକ୍ତ । ସେହି ଶୂନ୍ୟ ତତ୍ତ୍ୱର ଅପର ନାମ ଶରୀରତତ୍ତ୍ୱ । ଏହି ତତ୍ତ୍ୱବାଦୀମାନେ ନିଜ ଶରୀରକୁ ଶ୍ରେଷ୍ଠ ବୋଲି ଭାବିଥାନ୍ତି । ସେମାନଙ୍କ ମତରେ ପିଣ୍ଡ ହିଁ ବ୍ରହ୍ମାଣ୍ଡ ଏବଂ ବ୍ରହ୍ମାଣ୍ଡ ହିଁ ପିଣ୍ଡ । ଏହି ପିଣ୍ଡକୁ ଆତ୍ମତତ୍ତ୍ୱ, ଶିବତତ୍ତ୍ୱ, ପ୍ରକୃତିତତ୍ତ୍ୱ, ପୁରୁଷତତ୍ତ୍ୱ ଓ ସୂର୍ଯ୍ୟତତ୍ତ୍ୱ—ପଞ୍ଚ ଉପାଦାନ ରୂପେ ମୂଳ କରି ଶରୀର ମଧ୍ୟରେ ତନ୍ତ୍ରର ଯୋଗତତ୍ତ୍ୱକୁ ଉଚ୍ଚ ସ୍ଥାନ ଦେଇଥାନ୍ତି । ସେମାନଙ୍କ ମତରେ ସମଗ୍ର ଶରୀର ମଧ୍ୟରେ ଆଧାର, ଲିଙ୍ଗ, ନାଭି, ହୃଦୟ, କଣ୍ଠ ପର୍ଯ୍ୟନ୍ତ ପିଣ୍ଡ ଏବଂ ନାସାଗ୍ର ଓ ସହସ୍ରାର ବ୍ରହ୍ମାଣ୍ଡର ସ୍ଥାନ । ଏହାକୁ ହିଁ ଯୋଗତତ୍ତ୍ୱର ମୂଳପିଣ୍ଡ ବୋଲି କୁହାଯାଏ । ଯୋଗଶିଖ, ଯୋଗକୁଣ୍ଡଳୀ, ମଣ୍ଡଳ ବ୍ରହ୍ମାଣ୍ଡ ଉପନିଷଦମାନଙ୍କରେ ମଧ୍ୟ ଏହି ତତ୍ତ୍ୱ ବର୍ଣ୍ଣିତ ହୋଇଛି । ଶରୀର ଭେଦ ମଧ୍ୟରେ ଊର୍ମି, ଧୂମ୍ର, ଜ୍ୟୋତି, ଜ୍ୱାଳା ଏହି ଚାରୋଟି ଜ୍ୟୋତିର୍ମୟ ସାଧନ ଚକ୍ରକୁ ଚତୁଷ୍ଟୟ ସାଧନ କୁହାଯାଏ । ଏହି ଚାରି ଚକ୍ରର ସ୍ଥାନ ଯଥାକ୍ରମେ ମୂଳାଧାର, ଅନାହତ, ଆଜ୍ଞା, ସହସ୍ରାର ବୋଲି କୁହା ଯାଇଛି । ଏହା ହିଁ ଜଗନ୍ନାଥ ମୂର୍ତ୍ତି ଚତୁଷ୍ଟୟ । ଯୋଗତତ୍ତ୍ୱରେ ଲିଙ୍ଗମୟ କୋଷ, ଅନାହତ କୋଷ, ମନମୟ କୋଷ ଏବଂ ସହସ୍ରାର କୋଷକୁ ଗ୍ରହଣ କରି ଯାଇଛି । ଶାସ୍ତ୍ରରେ କୁହାଯାଇଛି, ଏହି ସ୍ଥାନ ମଧ୍ୟରୁ ମୂଳାଧାର ଚକ୍ରର ସ୍ୱରୂପ ଲିଙ୍ଗପରି ଯୂପ ସଦୃଶ୍ୟ ଚକ୍ରବର୍ତ୍ତୀର ତେଜ ସ୍ୱରୂପ । ତାହାର ସ୍ଥାନ ଗୁଦ, ଲିଙ୍ଗର ମଧ୍ୟବର୍ତ୍ତୀ ସ୍ଥାନ । ହେଳି ସେହି ସ୍ଥାନକୁ ଚାଳନା କଲେ ସମସ୍ତ ପିଣ୍ଡ ଚଳେ । ତାହା ହିଁ ଜଗନ୍ନାଥ ଧର୍ମର ଚକ୍ରରାଜ ସୁଦର୍ଶନ । ଯାହାକୁ ଦେଖିବାକୁ ଯୂପ ସଦୃଶ୍ୟ ଚକ୍ରବର୍ତ୍ତୀ ତେଜ ସ୍ତମ୍ଭ ଭଳି । ରଥଯାତ୍ରା ସମୟରେ ଏହି ସୁଦର୍ଶନ ପ୍ରଥମେ ଚାଲିଲେ ପରେ ଅନ୍ୟାନ୍ୟ ଚକ୍ରାଧିପତିମାନେ ବିଜେ କରିଥାନ୍ତି । ଶିଶୁ ବେଦରେ ଚକ୍ର ସୂତ୍ର ବତାଇବାକୁ ଯାଇ କୁହା ଯାଇଛି—

ଲିଙ୍ଗ ଉପସ୍ଥ (ଅ)କୁ ଘରି କରି ଚକ୍ର କରିଛି ବିଜେ ।<br>
ଲୋହିତ ବରଣ ମୋହିତ କରାଇ ଘରକୁ ସାଜେ ॥<br>
ଉନଧାର ହୋଇ ଉଜାଣି ଉଠଇ ଘାଟ ଲଙ୍ଘଇ ।<br>
ଆଧାର ଚକ୍ରରେ ଚକ୍ର ସୁଦର୍ଶନ ଜ୍ୟୋତିଟି ସେହି ॥

ଚକ୍ର ସୁଦର୍ଶନଙ୍କୁ ତନ୍ତ୍ରର ଯୋଗତତ୍ତ୍ୱରେ ମୂଳାଧାରର ଲିଙ୍ଗମୟ ଯୌଗିକ ପୁରୁଷ ବୋଲି କହିବା ସଙ୍ଗେ ସଙ୍ଗେ ବଳଭଦ୍ରଙ୍କୁ ଅନାହତ ଚକ୍ର ବା ହୃଦୟ ଚକ୍ରର ଅଧିଷ୍ଠାତା, ଶୁକ୍ଳ ଜ୍ୟୋତି ରସାମୃତ ଅଥବା କ୍ଷର ଭାବବୋଲି ବର୍ଣ୍ଣନା କରିଛନ୍ତି । ଯେଉଁ କ୍ଷର ଭାବ ଯୋଗୀ ଅନାହତ ଚକ୍ରରେ ଜ୍ୟୋତି ସ୍ୱରୂପ ରେଖା ବଳୟ ରୂପିଣୀ ଜୀବାତ୍ମାର ପ୍ରତୀକ ଭାବେ ଦର୍ଶନ ଲଭ କରେ, ତାହା ହିଁ ବଳଭଦ୍ରଙ୍କ ସ୍ୱରୂପ । ତେଜବିନ୍ଦୁ ଉପନିଷଦ୍‌ରେ ଲେଖାଅଛି—

ହୃଦସ୍ଥାନେ ଅଷ୍ଟଦଳ ପଦ୍ମ ବର୍ତ୍ତତେ,
ତନ୍ମଧ୍ୟେ ରେଖା ବଳୟଂ କୃତ୍ୱା ଜୀବାତ୍ମା ରୂପଂ
ଜ୍ୟୋତି ରୂପମଣୁ ମାତ୍ରଂ ବର୍ତ୍ତତେ ।

ଶବ୍ଦରଭେଦ ପଣ୍ଡିତଗଣ ଅନାହତ ଚକ୍ର ବା ହୃଦୟସ୍ଥ ଚକ୍ରକୁ, ତିନ ନାଳଅର ଗଣ୍ଠି ଅର୍ଥାତ୍ ଇଡ଼ା-ପିଙ୍ଗଳା-ସୁଷୁମ୍ନାର ତିନଗୋଟି ଯୌଗିକ ନାଡ଼ିର ଗ୍ରନ୍ଥି ବୋଲି ମନେ କରିଥାନ୍ତି । ପୁଣି ସେମାନେ କହିଥାନ୍ତି ଦେହରେ ଦ୍ୱାଦଶଦଳ ପଦ୍ମ ବିଶିଷ୍ଟ ଏକ ପଦ୍ମ ମଧ୍ୟରେ ଅନାହତ ଚକ୍ରର ଅଧିଷ୍ଠାତା ଶଙ୍କର ବିଦ୍ୟମାନ ।

ତିନ ନାଳିଆରେ ରୁଦ୍ଧ ଅନାହତ ଗଣ୍ଠିରେ ପଡ଼ିଛି ବାର ପଖୁଡ଼ା ।
ଦୁଇ ଭ୍ରୂ ଲତାର ସନ୍ଧିରେ ଭେଟିବୁ ମନମଣ୍ଡଳରେ ଯୁଗଳପାଦ ।।
ଭଜମନ ଅଲେଖ ବାଇ, ସପତ ଫଣାକୁ ବଢ଼ାଇ ବସିଛୁ,
ଚଉଘରେ ବଡ଼ଭାଇ ବୋଲାଇ ।।

ଶ୍ରୀ ଚଣ୍ଡୀତତ୍ତ୍ୱ ଓ ସାଧନ ରହସ୍ୟରେ ସ୍ୱାମୀ ଯୋଗାନନ୍ଦ କହିଛନ୍ତି, ମଧୁ କୈଟଭ ଭଗବତ୍ କୃପା ପ୍ରାପ୍ତ ହୋଇ କୁଳକୁଣ୍ଡଳିନୀ ରୂପ ମହାକାଳୀଙ୍କ ଦେହରେ ଲୀନ ହେଲେ । ସ୍ୱାଧିଷ୍ଠାନ ପଦ୍ମସ୍ଥିତ ବିଷ୍ଣୁଙ୍କର ଅସୁର ନିଧନ କାର୍ଯ୍ୟ ଶେଷ ହେବାରୁ, ଆନନ୍ଦରୂପିଣୀ ଯୋଗନିଦ୍ରା ମା ପୁନର୍ବାର ତାହାଙ୍କୁ ଆଶ୍ରୟ କଲେ । ସେତେବେଳେ ମହାକାଳୀ କୁଣ୍ଡଳିନୀ ଅପତତ୍ତ୍ୱର ଭାବ ସମୂହ ନିଜ ଦେହରେ ବିଲୟକରି, ତନ୍ମୟତା ପ୍ରାପ୍ତ ବିଷ୍ଣୁ ଓ ବ୍ରହ୍ମାଙ୍କୁ ଧରି ସ୍ୱାଧିଷ୍ଠାନ ଚକ୍ରରୁ ତେଜମୟ ମଣିପୁର ପଦ୍ମେ ଉତ୍ଥିତା ହେଲେ—ସାଧକ ବ୍ରହ୍ମଗ୍ରନ୍ଥି ଭେଦକରି ମାତୃ କୃପାରେ ଏକରସ ଆନନ୍ଦ ପ୍ରାପ୍ତ ହୋଇ ତେଜମୟ ମଣିପୁରେ ଆରୋହଣ ପୂର୍ବକ ତେଜସ୍ୱୀରୂପେ ପ୍ରତିଭାତ ହେଲେ । — ତାହାଙ୍କର 'ବର୍ତ୍ତମାନ', 'କ୍ରିୟମାଣ' କିମ୍ବା 'ଆଗାମୀ' କର୍ମର ବୀଜ ସମ୍ପୂର୍ଣ୍ଣ ନଷ୍ଟ ହେଲା । ଯାହାର କୁଣ୍ଡଳିନୀ ଶକ୍ତି ଜାଗ୍ରତ ଏବଂ ବ୍ରହ୍ମଦ୍ୱାର ଉଦ୍‌ଘାଟିତ, ଯେ ବ୍ରହ୍ମଗ୍ରନ୍ଥି ଭେଦକରି ତେଜତତ୍ତ୍ୱେ ଉପନୀତ, ସେହି ମାତୃକୃପା ପ୍ରାପ୍ତ ତେଜସ୍ୱୀ ସାଧକ କାଳାତୀତ ହୁଅନ୍ତି— କାଳର ଭୟ ନଥିବା ହେତୁ ସେ ଜନ୍ମ ମୃତ୍ୟୁ ରୋଧକାରୀ ମୃତ୍ୟୁଞ୍ଜୟ ଶିବ ସ୍ୱରୂପ ହୋଇଥାନ୍ତି ।

ବିଭିନ୍ନ ଯୋଗତନ୍ତ୍ର ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ଭିନ୍ନ ଭିନ୍ନ ଭାବେ ରୂପାୟିତ ହୋଇଛନ୍ତି । ଚଣ୍ଡୀଗ୍ରନ୍ଥର ପ୍ରଥମ ଚରିତ ପରେ ଦ୍ୱିତୀୟ ଚରିତର ଦେବତା ମହାଲକ୍ଷ୍ମୀ ଓ ଦୁର୍ଗା ବୀଜ । ଆଧ୍ୟାତ୍ମିକ ଜଗତର ଐଶ୍ୱର୍ଯ୍ୟ ବା ସମ୍ପଦ ସମୂହ ସମ୍ୟକରୂପେ ଆୟତ୍ତ କରି, ଯଦ୍ୱାରା ସାଧକ ମାନବଜୀବନର ସାର୍ଥକତା ସଂପାଦନ କରିବାକୁ ସମର୍ଥ ହୋଇ ପାରିବ, ସେଥିପାଇଁ ମଧ୍ୟମ ଚରିତରେ, ପ୍ରାଣର ଓ ଜ୍ଞାନର ଚରମ ବିକାଶ ଏବଂ ସମନ୍ୱୟ ହୋଇଛି ।

ଏଥିଯୋଗୁଁ ଏଥିରେ ଦେବତା—ଷଡୈଶ୍ୱର୍ଯ୍ୟଶାଳିନୀ ଭଗବତୀ ମହାଲକ୍ଷ୍ମୀ । ଏହି ମହାଲକ୍ଷ୍ମୀ ହିଁ ଦେବୀ ସୁଭଦ୍ରା । ସୁଭଦ୍ରାଙ୍କ ବର୍ଣ୍ଣଭଳି ସେ ମଧ୍ୟ ସୁବର୍ଣ୍ଣବର୍ଣ୍ଣା । ଚଣ୍ଡୀର ମୂର୍ତ୍ତିରହସ୍ୟରେ କୁହାଯାଇଛି—

କନକୋତ୍ତମ କାନ୍ତିଃ ସା ସୁକାନ୍ତିକନକାମ୍ବରା ।
ଦେବୀ କନକବର୍ଣ୍ଣାଭା କନକୋତ୍ତମ ଭୂଷଣା ।୨।

ସେହି ଦେବୀ ଉଜ୍ଜ୍ୱଳ ସୁବର୍ଣ୍ଣକାନ୍ତି ଯୁକ୍ତା, ସୁବର୍ଣ୍ଣ ପ୍ରଭାପରି ବସ୍ତ୍ର ପରିହିତା, କନକ-ବର୍ଣ୍ଣା, ସ୍ୱର୍ଣ୍ଣାଳଙ୍କାର ଶୋଭିତା ଅଟନ୍ତି ।

ଚଣ୍ଡୀରେ କାଳିକାଙ୍କ ଉତ୍ପତ୍ତି ବିଷୟ କିଛି ଉଲ୍ଲେଖ ନାହିଁ । କିନ୍ତୁ ମହାଲକ୍ଷ୍ମୀଙ୍କ ଉତ୍ପତ୍ତି ବିଷୟ ଉଲ୍ଲେଖ ଅଛି । ମହିଷାସୁର ନାମକ ଅସୁର ସ୍ୱର୍ଗ ଜୟ କରି ତାର ଆଧିପତ୍ୟ ବିସ୍ତାର କରିବା ହେତୁ ଇନ୍ଦ୍ରାଦି ଦେବତାମାନେ ବ୍ରହ୍ମାଙ୍କୁ ଧରି ହରିହରଙ୍କୁ ନିଜର ଦୁର୍ଦ୍ଦଶା ଜଣାଇଲେ । ଦେବତାଙ୍କ ଦୁର୍ଦ୍ଦଶା କଥାଶୁଣି ହରି-ବ୍ରହ୍ମା-ହରଙ୍କ ମୁଖରୁ ମହାତେଜମାନ ନିର୍ଗତ ହେଲା । ଇନ୍ଦ୍ରାଦି ଅନ୍ୟାନ୍ୟ ଦେବତାଙ୍କ ଶରୀରରୁ ସେହିଭଳି ବିପୁଳ ତେଜରାଶି ନିର୍ଗତ ହୋଇ ହରି, ବ୍ରହ୍ମା ଓ ହରଙ୍କ ତେଜ ସହିତ ମିଳିତ ହେଲା । କାତ୍ୟାୟନଙ୍କ ଆଶ୍ରମରେ ସେହି ବିପୁଳ ତେଜରାଶି ଅଗ୍ନିଶିଖାଦ୍ୱାରା ଦିଗନ୍ତବ୍ୟାପି ଜ୍ୱଳନ୍ତ ଆଗ୍ନେୟଗିରି ଭଳି ପ୍ରଭା ବିସ୍ତାର କଲା ପରେ ସମସ୍ତ ଦେବତାଙ୍କ ଶରୀରରୁ ଉତ୍ପନ୍ନ ତ୍ରିଜଗଦ୍‌ବ୍ୟାପୀ ସେହି ତେଜରାଶି ଏକତ୍ର ହୋଇ ଗୋଟିଏ ନାରୀ ମୂର୍ତ୍ତି ଧାରଣ କଲା । ସେହି ନାରୀ ମୂର୍ତ୍ତିଙ୍କ ଶରୀର ସର୍ବଦେବତାଙ୍କ ତେଜରୁ ଗଠିତ ହୋଇଥିବାରୁ ସମସ୍ତ ଦେବତାଙ୍କ ଅଂଶ ତାଙ୍କଠାରେ ରହିଥିବା ସ୍ୱାଭାବିକ । ସମସ୍ତ ଦେବତା ନିଜ ନିଜର ବସନ ଭୂଷଣ ସେହି ଦେବୀଙ୍କୁ ଅର୍ପଣ କଲେ । ଦେବତାମାନଙ୍କ ଦ୍ୱାରା ସମ୍ମାନିତା ଓ ବିଭୂଷିତା ହୋଇ ଜଗନ୍ମାତା ଦେବୀ ବାରମ୍ବାର ଅଟ୍ଟହାସ ସହିତ ଘନ ଘନ ହୁଙ୍କାର କଲେ । ସେହି ହୁଙ୍କାର ସହିତ ସିଂହର ଗର୍ଜନ ମିଶ୍ରିତ ହୋଇ ସାରା ବିଶ୍ୱକୁ ସ୍ତବ୍ଧ କରି ପକାଇଲା । ଅସୁରଗଣ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନବାସୀ ଭୀତତ୍ରସ୍ତ ହେବାର ଦେଖି ମହିଷା ସୈନ୍ୟମାନଙ୍କୁ ସୁସଜ୍ଜିତ କରି ଶବ୍ଦ ଯେଉଁଆଡ଼ୁ ଆସୁଥିଲା ସେ ଆଡକୁ ଧାଇଁଲେ । ଅନନ୍ତର ଯାହାଙ୍କ ଅଙ୍ଗ ଜ୍ୟୋତିରେ ତ୍ରିଭୁବନ ଆଲୋକିତ, ଯାହାଙ୍କ ପଦଭରରେ ପୃଥିବୀ ଅବନତ, ଯାହାଙ୍କ ଧନୁ ଟଙ୍କାରରେ ପାତାଳ ପର୍ଯ୍ୟନ୍ତ ସପ୍ତ ନିମ୍ନଲୋକ ଆକୁଳିତ, ଯାହାଙ୍କ ସହସ୍ର ଭୁଜ ଦ୍ୱାରା ଦଶଦିଗ ପରିବ୍ୟାପ୍ତ, ଯାହାଙ୍କ ମୁକୁଟ ଆକାଶ ପର୍ଯ୍ୟନ୍ତ ବିସ୍ତାରିତ, ସେହି ମହାଲକ୍ଷ୍ମୀଙ୍କୁ ମହିଷାସୁର ଅବଲୋକନ କଲା ।

ସୁଭଦ୍ରାଙ୍କର କୌଣସି ଭୁଜ ନାହିଁ । ଯାହାଙ୍କର ସହସ୍ର ଭୁଜ ତାଙ୍କର ଭୁଜ ନାହିଁ କହିବାର ଅର୍ଥ ହିଁ ଅସଂଖ୍ୟ ଭୁଜର ନିଦର୍ଶନ । ସେହି ଅନ୍ଧକାରରୂପୀ ମହାକାଳିକା

(ଜଗନ୍ନାଥ), ଯାହାର ଶକ୍ତିରେ ବିଷ୍ଣୁ ବଳବାନ ହୋଇ ମଧୁକୈଟଭଙ୍କୁ ବଧ କରି ମେଦିନୀ ସୃଷ୍ଟି କଲେ, ସେହି କାଳିକାଙ୍କ ଠାରୁ ସର୍ବଦେବତା ସୃଷ୍ଟି ହୋଇଥିଲେ । ପୁନର୍ବାର ସର୍ବଦେବତାଙ୍କ ଠାରୁ ତେଜ ବା ଶକ୍ତି ନିର୍ଗତ ହୋଇ ସୁବର୍ଣ୍ଣ ବର୍ଣ୍ଣ ଧାରଣ କରି, ମହାଲକ୍ଷ୍ମୀ ନାମରେ ସେ ଦୃଶ୍ୟମାନ ହେଲେ । ସମସ୍ତ ଦେବତାଙ୍କର ଘନୀଭୂତ ଶକ୍ତି—ରୂପ ହିଁ ମହାଲକ୍ଷ୍ମୀ, ସେହି ଦେବୀ ସୁଭଦ୍ରା ।

ସୁଭଦ୍ରା ତନ୍ତ୍ର ଦେବତା ଭାବେ ପୂଜକ, ଉପାସକମାନଙ୍କ ପାଖରେ ପରିଚିତା । କୋଣାର୍କ ଶିଳ୍ପ ଭାସ୍କର୍ଯ୍ୟରେ ଶ୍ରୀଜଗନ୍ନାଥଙ୍କ ପାର୍ଶ୍ୱରେ ଶିବଲିଙ୍ଗ ଓ ଦଶଭୁଜା ଦେବୀ ଦୁର୍ଗା ଅବସ୍ଥାନ କରିଛନ୍ତି । ଏହା ହିଁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ଚିହ୍ନ । କୋଣାର୍କ ମନ୍ଦିର ନିର୍ମାଣ ବେଳେ ସୁଭଦ୍ରାଙ୍କ ସ୍ଥାନ ବଳଭଦ୍ରଙ୍କ ଦକ୍ଷିଣ ଭାଗରେ ଥିଲା । ସୁଭଦ୍ରା ହିଁ ଦେବୀ ଦୁର୍ଗା । ଚଣ୍ଡୀର ମହାଲକ୍ଷ୍ମୀ ଦୁର୍ଗା ନାମରେ ଖ୍ୟାତ । ଦେବତାଙ୍କୁ ଦୁର୍ଗତିରୁ ଉଦ୍ଧାର କରିଥିବା ହେତୁ ସେ ଦୁର୍ଗା । ଶବ୍ଦ କଳ୍ପଦ୍ରୁମରେ ଉଲ୍ଲେଖ ଅଛି—

ଦୁର୍ଗୋ ଦୈତ୍ୟେ ମହାବିଘ୍ନେ ଭବବନ୍ଧେ କୁକର୍ମଣି ।
ଶୋକେ ଦୁଃଖେଚ ନରକେ ଯମଦଣ୍ଡେଚ ଜନ୍ମନ ।।
ମହାଭୟେ ଽତିରୋଗେ ଚାପ୍ୟା ଶବ୍ଦୋ ହନ୍ତୃ ବାଚକେ ।
ଏତାନ୍ ହନ୍ତ୍ୟେବ ଯା ଦେବୀ ସା ଦୁର୍ଗା ପରିକୀର୍ତ୍ତିତା ।।

ଦୁର୍ଗ ଶବ୍ଦର ବାଚ୍ୟ ଦୁର୍ଗ ନାମକ ଦୈତ୍ୟ, ମହାବିଘ୍ନ, ଭବବନ୍ଧ, କୁକର୍ମ, ଶୋକ, ଦୁଃଖ, ନରକ, ଯମଦଣ୍ଡ, ଜନ୍ମ, ମହାଭୟ ଏବଂ ଅତିରୋଗ । ଆ ଶବ୍ଦ ହେଲା ହନ୍ତୃବାଚକ । ଏହି ସବୁକୁ ଯେ ନାଶ କରନ୍ତି ସେ ଦୁର୍ଗା ନାମରେ ନାମିତା ।'' ତେଣୁ ମହିଷମର୍ଦ୍ଦିନୀ ଦେବୀ ମହାଲକ୍ଷ୍ମୀ ଦୁର୍ଗା ନାମରେ ବିଶ୍ୱବନ୍ଦିତା ।

ଶାରଳାଦାସ ସୁଭଦ୍ରାଙ୍କୁ ବ୍ରହ୍ମା ବୋଲି କହିଛନ୍ତି । ସେ କହିଛନ୍ତି ଅଂଦମାତଙ୍କ ଅଭିଶାପ ଯୋଗୁଁ ସେ ସ୍ତ୍ରୀ ରୂପରେ ସୁଭଦ୍ରା ଭାବେ ଅବସ୍ଥାନ କରିଛନ୍ତି ।

ବନ୍ଦଇ ନାରାୟଣ ନୀଳଗିରି ନାଥ ।
ଚତୁର୍ଦ୍ଧା ରୂପ ଧରି ବିଜୟେ ପଦ୍ମନେତ୍ର ।।
ଯେକଇ ମୂର୍ତ୍ତି ଯେ ଚାରି ରୂପ ହୋଇ ।
ଜଗନ୍ନାଥ, ବଳଭଦ୍ର, ସୋହେଦ୍ରା, ସୁଦ୍ରଶେନ ନାମ ବହି ।।
ବଳରାମ ବୋଲିଣ ଯେବଣ ନାମ ହୋଇ ।
ପ୍ରତ୍ୟକ୍ଷେ ଯେ ସଦାଶିବ କପିଳାସବାସୀ ହେଇ ।।
ମଧ୍ୟରେ ସୋହେଦ୍ରା ଯେ ଜଗତର ପିତା ।
ସଂସାର ଜାତ କରିବାକୁ ଅଟନ୍ତି ମହାଜ୍ଞାତା ।।

ଅନାଦି ମାତାଙ୍କର ଶାପଶୂନ୍ୟ ଦେହ ।
ତେଣୁ ସେ ସ୍ତ୍ରୀଲିଙ୍ଗ ରୂପ ବହିଛନ୍ତି ପୁଣି ॥

ଉତ୍କଳୀୟ ବୈଷ୍ଣବ ଧର୍ମତତ୍ତ୍ୱ ସମ୍ବଳିତ ଶିବ ଦାସଙ୍କ ରାଧାରସାମୃତ ଗୀତାରେ ସୁଭଦ୍ରାଙ୍କୁ ଯୋଗମାୟା ବୋଲି କହିଛନ୍ତି ଏବଂ ସେ ଉପବେଶନ କରିଥିବା ସିଂହାସନକୁ ଶଙ୍ଖନାଭି ସିଂହାସନ ବୋଲି କହିଛନ୍ତି ।

ଶଙ୍ଖନାଭି ସିଂହାସନ ଯେଉଁ ସ୍ଥାନ କହି ।
ଯେଉଁ ସିଂହାସନେ ଯୋଗମାୟାରୂପ ହୋଇ ॥

ରାଧାରସାମୃତ ଗୀତାରେ ରାଧା ସୁଭଦ୍ରାଭାବେ ଅବସ୍ଥାନ କରିଥିବାର ଉଲ୍ଲେଖ ଅଛି । କହିବା ନିଷ୍ପ୍ରୟୋଜନ, ବୈଷ୍ଣବ ତନ୍ତ୍ରରେ ରାଧା ହିଁ ମୁଖ୍ୟା, ଯେଉଁଭଳି ପ୍ରଥମେ ଦୁର୍ଗା କହି ପରେ ମାଧବ କୁହାଯାଏ ସେହିଭଳି ପ୍ରଥମେ ରାଧା କୁହାଯାଇ ପରେ କୃଷ୍ଣ କୁହାଯାଏ ।

ଜ୍ୟେଷ୍ଠ ବଳରାମ ଯେ କନିଷ୍ଠ ଜଗନ୍ନାଥ ।
ଯେଉଁ ରାଧା ସୁଭଦ୍ରାଟି ନାମ ତାର ଖ୍ୟାତ ।

ଚଣ୍ଡୀ ଗ୍ରନ୍ଥରେ ଯେଉଁଭଳି ଦେବତାମାନେ ଦେବୀ ଦୁର୍ଗାଙ୍କୁ "ନମୋ ଦେବ୍ୟୈ ମହାଦେବ୍ୟୈ ଶିବାୟୈ ସତତଂ ନମଃ" ଆଦି କହି ଶୁମ୍ଭାସୁର ବଧପାଇଁ ସ୍ତୁତି କରିଛନ୍ତି, ସେହିଭଳି 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ସୁଭଦ୍ରାଙ୍କର ଯେଉଁ ସ୍ତୁତି ଦେଖିବାକୁ ମିଳେ, ସେ ସ୍ତୁତିରେ ସୁଭଦ୍ରାଙ୍କୁ ଏକାଧାରରେ ବୈଷ୍ଣବୀ, ରୁଦ୍ରାଣୀ, ବ୍ରହ୍ମାଣୀ, ଶିବା, କାଳରାତ୍ରୀ, ମହାଲକ୍ଷ୍ମୀ ଆଦି କୁହାଯାଇଛି—

ନମୋ ଦେବ୍ୟୈ ମହାଦେବ୍ୟୈ ବୈଷ୍ଣବ୍ୟୈଚ ନମୋ ନମଃ ।
ବ୍ରହ୍ମାଣ୍ୟୈ ବ୍ରହ୍ମ ରୂପାୟୈ ଶିବାୟୈ ସତତଂ ନମଃ ॥
ରୁଦ୍ରାଣ୍ୟୈ ରୁଦ୍ର ରୂପାୟୈ କାଳରାତ୍ର୍ୟୈ ନମୋ ନମଃ ।
ବୈଷ୍ଣବ୍ୟୈ ବିଷ୍ଣୁରୂପାୟୈ ମହାଲକ୍ଷ୍ମ୍ୟୈ ନମୋ ନମଃ ॥
ସ୍ତ୍ରୀ ରୂପିଣ୍ୟୈ ନମସ୍ତେଽସ୍ତୁ ସୁଭଦ୍ରେ ତ୍ୱାଂ ନମାମ୍ୟହମ୍ ।
ସାକ୍ଷାତ୍ ବ୍ରହ୍ମ ସ୍ୱରୂପାଂ ତ୍ୱଂ ଜଗଦମ୍ବେ ନମୋଽସ୍ତୁତେ ॥

ସ୍କନ୍ଦପୁରାଣ ଉତ୍କଳଖଣ୍ଡରେ ଶ୍ରୀ ଜଗନ୍ନାଥଙ୍କ ବିସ୍ତୃତ ବିବରଣୀ ରହିଛି । ସେଥିରେ ସୁଭଦ୍ରାଙ୍କୁ ଭଦ୍ରେ, ଭଦ୍ରକାଳୀ, ଜଗନ୍ମାତାଦି ଭାବେ ବ୍ରହ୍ମା ମୂର୍ତ୍ତି ଚତୁଷ୍ଟୟଙ୍କ ପ୍ରତିଷ୍ଠା ପୂର୍ବରୁ ସ୍ତୁତି କରିଥିବା ଦେଖାଯାଏ ।

ଜୟେ ଭଦ୍ରେ ସୁଭଦ୍ରେ ତ୍ୱଂ ସର୍ବେଷ୍ୟାଂ ଭଦ୍ରଦାୟିନୀ ।
ଭଦ୍ରା ଭଦ୍ରସ୍ୱରୂପାତ୍ୱଂ ଭଦ୍ରକାଳି ନମୋଽସ୍ତୁତେ ॥

ତ୍ୱଂ ମାତା ଜଗତାଂ ଦେବୀ ପିତା ନାରାୟଣ ହି ସଃ ।
ସ୍ତ୍ରୀ ରୂପଂ ସର୍ବମେବତ୍ୱଂ ପୁଂରୂପୋ ଜଗଦୀଶ୍ୱରଃ ॥

ବିଭିନ୍ନ ସମୟରେ ଶ୍ରୀ ଜଗନ୍ନାଥ-ସୁଭଦ୍ରା-ବଳଦେବଙ୍କୁ ବିଭିନ୍ନ ସଂସ୍କୃତିର ବୋଲି ଧାରଣା କରାଯାଇ ଥିଲେ ମଧ୍ୟ ସୁଭଦ୍ରାଙ୍କୁ ଶକ୍ତି ବ୍ୟତୀତ ଆଉ କିଛି କୁହାଯାଇ ନାହିଁ । ସୂର୍ଯ୍ୟଙ୍କର ଯନ୍ତ୍ର କାରଣ ଭଳି ମହାଦେବୀ ସୁଭଦ୍ରା ସହସ୍ରଭୁଜା ଅର୍ଥାତ ଅସଂଖ୍ୟ ଭୁଜା । କାଳକୁ କବଳିତ କରି ଯେଉଁ ମହାକାଳୀ ସୃଷ୍ଟି ସର୍ଜନା କଲେ, ସେ ପୁନର୍ବାର ସୃଷ୍ଟି ରକ୍ଷାପାଇଁ ମହିଷରୂପୀ ଅନ୍ଧକାରକୁ ବିନାଶ କରିବା ନିମିତ୍ତ ସମସ୍ତ ଦେବତାଙ୍କ ପୁଞ୍ଜୀଭୂତ ଶକ୍ତିରୁ ଆତ୍ମପ୍ରକାଶ କଲେ ମହାଲକ୍ଷ୍ମୀ ରୂପରେ । ମହାଲକ୍ଷ୍ମୀଙ୍କ ବ୍ୟତୀତ ସନ୍ତାନର ଦୁଃଖ କିଏ ମୋଚନ କରିବ ! ସେଥିପାଇଁ ଚଣ୍ଡୀରେ ତାଙ୍କୁ କୁହା ହୋଇଛି—

ଚିତ୍ତେ କୃପା ସମରନିଷ୍ଠୁରତା ଚ ଦୃଷ୍ଟା
ତ୍ୱୟ୍ୟେବ ଦେବି ବରଦେ ଭୁବନତ୍ରୟେଽପି ।

'ହେ ବରଦାୟିନୀ ଦେବି ! ତ୍ରିଭୁବନ ମଧ୍ୟରେ ହୃଦୟରେ ଦୟା ଓ ସମରେ ନିଷ୍ଠୁରତା କେବଳ ତୁମଠାରେ ଏକାଧାରରେ ଦୃଷ୍ଟିଗୋଚର ହୁଏ ।' ପୌରାଣିକ ଆଖ୍ୟାନଠାରୁ ଆରମ୍ଭକରି ସଂସାର ସାଧନା ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ସେହି ଜଗଜ୍ଜନନୀର ଚିତ୍ତରେ ସତତ କୃପା ଏବଂ ସମରେ ନିଷ୍ଠୁରତା ଦେଖିବାକୁ ମିଳେ । ମହିଷାସୁର ସହିତ ସେହି ମହାଦେବୀ ଯୁଦ୍ଧ କଲାବେଳେ ମହିଷାସୁର ବିଭିନ୍ନ ରୂପରେ ଭୟଙ୍କର ଶକ୍ତିଧରି ତାଙ୍କ ସହିତ ଯୁଦ୍ଧ କଲା । ଦେବୀ ଥରକୁ ଥର ତାର ସେହି ନକଲି ରୂପକୁ ଅପସାରଣ କରି ପ୍ରକୃତ ରୂପ ଆଣିବାକୁ ନିଷ୍ଠୁର ଭାବରେ ଅସ୍ତ୍ରପ୍ରହାର କରିଛନ୍ତି । ଶେଷରେ ମହିଷାସୁର ପୁନର୍ବାର ତାର ମୌଳିକ ଶରୀର ଧରି ଜଗତ୍ରୟର ସୃଷ୍ଟି ସ୍ଥାବର ଜଙ୍ଗମ ଆଦି ଚରାଚରକୁ ପୀଡ଼ନ କରିବାକୁ ଲାଗିଲା । ସେତେବେଳେ ଦେବୀ ବାଧ୍ୟ ହେଲେ ଉତ୍ତମ ମଧୁ ବା ପକ୍ଷାନ୍ତରେ ମଦିରା ପାନ କରିବାକୁ । ଦେବୀ ଉତ୍ତମ ମଦିରା ପାନ ପୂର୍ବକ ନୟନ ଯୁଗ୍ମ ରକ୍ତବର୍ଣ୍ଣ କରି ବାରମ୍ବାର ଅଟ୍ଟହାସ କରିବାକୁ ଲାଗିଲେ । ସେତେବେଳେ ବଳ ଗର୍ବରେ ଉଦ୍ଧତ ମହିଷାସୁର ଗର୍ଜନକରି ଶୃଙ୍ଗଦ୍ୱାରା ଚଣ୍ଡିକାଙ୍କ ପ୍ରତି ପର୍ବତ ସବୁ ନିକ୍ଷେପ କରିବାକୁ ଲାଗିଲା । ଦେବୀ କଳ୍ପିତ ସମର ଦ୍ୱାରା ସେହି ସବୁ ବାଧାକୁ ଅପସାରିତ କରି ମହିଷାସୁରକୁ କହିଲେ—

ଗର୍ଜ ଗର୍ଜ କ୍ଷଣଂ ମୂଢ଼ ମଧୁ ଯାବତ୍ ପିବାମ୍ୟହମ୍ ।
ମୟା ତ୍ୱୟି ହତେଽତ୍ରୈବ ଗର୍ଜିଷ୍ୟନ୍ତ୍ୟାଶୁ ଦେବତାଃ ।

ରେ ମୂଢ଼ ! ମୁଁ ଯେତେକ୍ଷଣ ପର୍ଯ୍ୟନ୍ତ ମଧୁ (ମଦ) ପାନ କରୁଛି ତୁ ସେ ପର୍ଯ୍ୟନ୍ତ ଯେତେ ଗର୍ଜିବୁ ଗର୍ଜୁଥା । ମୁଁ ତୋତେ ବଧ କଲେ ଦେବତାମାନେ ଆନନ୍ଦ ଧ୍ୱନି

କରିବେ । ଦେବୀ ଏହିପରି କହି ନିଜ ବାହନ ସିଂହ ଉପରୁ ଅସୁର ଉପରକୁ ଲମ୍ଫ ପ୍ରଦାନ ପୂର୍ବକ ତାର କଣ୍ଠ ଦେଶକୁ ନିଜ ପଦଦ୍ୱାରା ଚାପି ଧରି, ତା ବକ୍ଷରେ ଶୂଳାଘାତ କଲେ ।

ବିଶ୍ୱରେ ଅନେକ ବାଧା ଅନେକଥର ଆସିଛି । କେବେ କେବେ ସେହି ବାଧାରେ ବିଶ୍ୱ ବ୍ୟତିବ୍ୟସ୍ତ ହୋଇ ପଡ଼ିଛି । ଏପରି ହୋଇଛି, ସୃଷ୍ଟିକର୍ତ୍ତା ବା କର୍ତ୍ତ୍ରୀଙ୍କ ସ୍ଥିତି ଉପରେ ଖିଷଣ କଳା ଚ୍ଛାଇ ମାଡ଼ି ଆସିଛି । ନିଜକୁ ରାକ୍ଷସଙ୍କ କବଳରୁ ବଞ୍ଚାଇବା ପାଇଁ ଦେବତା ଅନେକ ଥର ମନ୍ଦିର ମଧ୍ୟରୁ ଦୂରକୁ ଚ୍ଲି ଯାଇଛନ୍ତି । କିନ୍ତୁ ଯେତେବେଳେ ଅସହ୍ୟ ହୋଇ ଉଠିଛି ସେତେବେଳେ ଦେବତା ବାଧ ହୋଇଛନ୍ତି ନିଜ ହୃଦୟର ଦସ୍ୟୁ ଅପସାରଣ ପାଇଁ ମଧ୍ୟ ବା ମଦ୍ୟପାନ କରିବାକୁ । ତତ୍ପରେ ସମସ୍ତ ଶକ୍ତିର କେନ୍ଦ୍ରୀଭୂତ ମହାଶକ୍ତି ପାଖରେ କ୍ଷୁଦ୍ର ବା ଏକକ ଶକ୍ତି କେତେ ସମୟ ତିଷ୍ଠିବ ? ଅପାଣି ପାଦ ସେହି ମହାଶକ୍ତି ସୁଭଦ୍ରା ଯେ କି ଲକ୍ଷ୍ମୀ ରୂପରେ ଦୁର୍ଗା ନାମରେ ମହିଷାସୁରର କଣ୍ଠ ଦେଶକୁ ନିଜର ପଦଦ୍ୱାରା ଚାପିଧରି ତା ବକ୍ଷରେ ଶୂଳ ଭେଦ କରିଥିଲେ, ସେ ପଦ କଣ ସମସ୍ତଙ୍କ ପାଇଁ ସୁଲଭ ? ରଥଯାତ୍ରା ବେଳେ ଗଙ୍ଗାଙ୍କୁ ଭଗୀରଥ ବହି ନେଲାଭଳି ତାଙ୍କୁ ଭକ୍ତା-ମାନେ ବହି ନେଇଥାନ୍ତି ସତ, ତାଙ୍କର ସେ ଅମିୟ ପଦର ସନ୍ଧାନ କଣ କେହି ପାଇ-ଥାନ୍ତି ? ବିଶ୍ୱରେ ଦୁଇଜଣ ସେ ପଦର ଅଧିକାରୀ ଥିଲେ । ଜଣେ ଅନ୍ତିମ ସମୟରେ ପାଇଥିଲେ, ସେ ହିଁ ମହିଷାସୁର ଏବଂ ଅନ୍ୟ ଜଣକ ଦେବ ଦେବ ମହାଦେବ । ସେଥିପାଇଁ ତନ୍ତ୍ରସାଧନା କରିବାକୁ ହେଲେ ନିଜକୁ ଶିବ ପଦରେ ଅଧିଷ୍ଠିତ କରିବାକୁ ହୁଏ । ଶିବ ପଦରେ ନିଜକୁ ଅଧିଷ୍ଠିତ ନ କଲେ ତାର ପଦର ସନ୍ଧାନ ପାଇବ କିଏ ?

ଚଣ୍ଡୀର ଉତ୍ତର ଚରିତର ଦେବତା ମହାସରସ୍ୱତୀ । ସ୍ୱାମୀ ଯୋଗାନନ୍ଦଙ୍କ ଭାଷାରେ ନିବୃତ୍ତି ପରାୟଣ ସାଧକ ଚିତ୍ତର ବୀଜାଂଶେ ଅବସ୍ଥିତ ମାଳିନ୍ୟ ବା ଚାଞ୍ଚଲ୍ୟ କୌଣସି କାରଣରୁ ଫୁଟି ଉଠିଲେ, ସେ ରୁଦ୍ର ତେଜରେ ଏହା ବିଲୟ କରିବାକୁ ଦୃଢ଼ ସଙ୍କଳ୍ପ ହୁଅନ୍ତି, ଏଥିପାଇଁ ସେ ବାହାରେ ସତ୍ତ୍ୱଗୁଣମୟ ହେଲେ ମଧ୍ୟ ଅନ୍ତରେ ତମୋ ଗୁଣାନ୍ୱିତ ଏବଂ ଲୟକାରୀ ରୂପେ ବିରାଜମାନ କରନ୍ତି—ଏହା ହିଁ ମହାସରସ୍ୱତୀଙ୍କ ସ୍ୱଭାବ ଏବଂ ପ୍ରଭାବ—ଏଥିପାଇଁ ଉତ୍ତର ଚରିତର ଦେବତା ଜ୍ଞାନବୃଦ୍ଧା ସରସ୍ୱତୀ । ସେହି ସରସ୍ୱତୀ ବଳଭଦ୍ର ରୂପେ ଶ୍ରୀମନ୍ଦିରରେ ଅବସ୍ଥାନ କରିଛନ୍ତି ।

ଯୋଗଶାସ୍ତ୍ର ମତରେ—ମୂଳାଧାର ଚକ୍ରସ୍ଥିତ 'ସ୍ୱୟମ୍ଭୂଲିଙ୍ଗ', 'ଅନାହତ' ଚକ୍ରସ୍ଥିତ 'ବାଣଲିଙ୍ଗ', ଏବଂ ଆଜ୍ଞା ଚକ୍ରସ୍ଥିତ 'ଇତର ଲିଙ୍ଗ' । ଏହି ଲିଙ୍ଗ ତ୍ରୟଭେଦ କରିବା ହିଁ ଯଥାକ୍ରମେ ବ୍ରହ୍ମଗ୍ରନ୍ଥି ଭେଦ, ବିଷ୍ଣୁ ଗ୍ରନ୍ଥିଭେଦ ଓ ରୁଦ୍ର ଗ୍ରନ୍ଥିଭେଦ ବୋଲି କୁହାଯାଏ । ଶିବ ସଂହିତାରେ ମହାଦେବ କହିଛନ୍ତି—"ଗଚ୍ଛନ୍ତି ବ୍ରହ୍ମ ମାର୍ଗେଣ ଲିଙ୍ଗ ତ୍ରୟ କ୍ରମେଣ"... । 'ଷଟଚକ୍ର—ନିରୂପଣମ୍' ନାମକ ଯୋଗଗ୍ରନ୍ଥରେ ଏହି ମତ

ସମର୍ଥ ତ । ଯଥା—"ବ୍ରହ୍ମଦ୍ୱାରଂ...ଗ୍ରନ୍ଥି ସ୍ଥାନଂ ଭେଦତତ୍—ଭିତ୍ୱା ଲିଙ୍ଗଦସ୍ୱଂ" । ସ୍ଥୂଳଭାବେ ବନ୍ଧନାଦ୍ଧ ମୋଚନର ନାମ—ବ୍ରହ୍ମଗ୍ରନ୍ଥି ଭେଦ, ସୂକ୍ଷ୍ମଭାବରେ ବନ୍ଧନାଦ୍ଧ ଲୟର ନାମ—ବିଷ୍ଣୁ ଗ୍ରନ୍ଥି ଭେଦ, ଏବଂ କାରଣଭାବାପନ୍ନ ବନ୍ଧନାଦ୍ଧ ବିଲୟର ନାମ —ରୁଦ୍ର ଗ୍ରନ୍ଥି ଭେଦ ।

ବଳଭଦ୍ରଙ୍କୁ ଶିବତତ୍ତ୍ୱବେ ଗ୍ରହଣ କରାଯାଇଛି । ମାତ୍ର ସେ ଚଣ୍ଡୀଗ୍ରନ୍ଥ ଉତ୍ତର ଚରିତର ପ୍ରତିପାଦ୍ୟ ଦେବତା ମହାସରସ୍ୱତୀ । ଭାରତୀୟ ତନ୍ତ୍ରଗ୍ରନ୍ଥମାନଙ୍କରେ ଶିବ କହିଛନ୍ତି, ପାର୍ବତୀ ଶୁଣିଛନ୍ତି । ଏହାର ଅର୍ଥ ପ୍ରଜ୍ଞାବାନ୍ ପୁରୁଷ ଶିବ ମହାଦେବୀଙ୍କର ଅନୁମୋଦନ ଗ୍ରହି ଛନ୍ତି । ଦେବୀ ଙ୍କର ବିନା ଅନୁମୋଦନରେ ଶିବ କହିଥିବା ବାକ୍ୟ ସିଦ୍ଧ ବୋଲି ଧରାଯିବ ନାହିଁ । ତେଣୁ ବ୍ୟକ୍ତିଠାରେ ପ୍ରଜ୍ଞା ନଥିଲେ ସେ ଶିବ ସ୍ତରକୁ ଆସିପାରିବ ନାହିଁ । ଏହା ହିଁ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କ କାର୍ଯ୍ୟ । ତନ୍ତ୍ରରେ ପୁରୁଷଙ୍କୁ ଶକ୍ତିହୀନ କରାଯାଇଛି । ଶିବଙ୍କର ଶକ୍ତି ହିଁ ଶିବା । ଶିବଙ୍କଠାରୁ ଶିବା ଅନ୍ତର ହେଲେ ଶିବ ଶକ୍ତିହୀନ ହୋଇପଡ଼ିବେ । ଆନନ୍ଦ ଲହରୀର ପ୍ରଥମ ପଦରେ ଉଲ୍ଲେଖ ଅଛି—

ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ
ନଚେଦେବଂ ଦେବୋ ନ ଖଳୁ କୁଶଳଃ ସ୍ପନ୍ଦିତୁମପି ।
ଅତସ୍ତ୍ୱାମାରାଧ୍ୟାଂ ହରିହର ବିରଞ୍ଚ୍ୟାଦିଭିରପି
ପ୍ରଣନ୍ତୁଂ ସ୍ତୋତୁଂ ବା କଥମକୃତପୁଣ୍ୟଃ ପ୍ରଭବତି ।୧।

ଅର୍ଥାତ୍—ମାତଃ ! ଶିବ ଯଦି ଶକ୍ତିଯୁକ୍ତ ହୁଅନ୍ତି ତାହାହେଲେ ସେ ପ୍ରଭାବଶାଳୀ ହୋଇ ସୃଷ୍ଟି, ସ୍ଥିତି, ଲୟ ପ୍ରଭୃତି ସମସ୍ତ କାର୍ଯ୍ୟ ସାଧନ କରି ପାରନ୍ତି । ତା ନହେଲେ ସେ ସ୍ୱୟଂ ସ୍ପନ୍ଦିତ ହେବାକୁ ସମର୍ଥ ହୁଅନ୍ତି ନାହିଁ । ଜଗତର ସୃଷ୍ଟି, ସ୍ଥିତି, ସଂହାରାଦି କରିବା ନିମିତ୍ତ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏବଂ ଅନ୍ୟାନ୍ୟ ଦେବତାମାନେ ଆରାଧନା କରିଥାନ୍ତି । ଏଭଳି ଅବସ୍ଥାରେ ମୋ ପରି ଅକୃତପୁଣ୍ୟ ସାମାନ୍ୟ ବ୍ୟକ୍ତି କିପରି ତୁମ୍ଭଙ୍କୁ ପ୍ରଣାମ ବା ତୁମର ସ୍ତବ କରିବାକୁ ସମର୍ଥ ହେବ ।

ସେହି ଆନନ୍ଦ ଲହରୀରେ ବର୍ଣ୍ଣିତ ହୋଇଅଛି, ଭଗବାନ ଶଙ୍କରାଚାର୍ଯ୍ୟ ପ୍ରଥମା-ବସ୍ଥାରେ ଏକମାତ୍ର ବ୍ରହ୍ମ ସ୍ୱରୂପ ଶିବଙ୍କ ଆରାଧନା କରୁଥିଲେ । ଶକ୍ତି ମାନୁ ନ ଥିଲେ । ତାଙ୍କର ଏହିଭଳି ଭ୍ରମରେ ଦେବୀ ଅସନ୍ତୁଷ୍ଟା ହେଲେ । ଏକଦା ଶଙ୍କରାଚାର୍ଯ୍ୟ କାଶୀର ମଣିକର୍ଣ୍ଣିକା ଘାଟକୁ ସ୍ନାନ କରିବା ନିମିତ୍ତ ଗମନ କରିଛନ୍ତି, ଏହି ସମୟରେ ଦେବୀ ତାଙ୍କ ଶକ୍ତି ହରଣ କଲେ । ଶଙ୍କରଙ୍କ ଅଂଶ ଶଙ୍କରାଚାର୍ଯ୍ୟ ଶବଭଳି ଗଙ୍ଗା ତୀରରେ ପଡ଼ି ରହିଲେ । ତାଙ୍କର ସ୍ପନ୍ଦିତ ହେବାର ଶକ୍ତି ମଧ୍ୟ ରହିଲା ନାହିଁ । କିଛିକ୍ଷଣ ପରେ ଶିବଙ୍କ

ଅନୁରୋଧରେ ଭଗବତୀ କୃପା ପ୍ରଦର୍ଶନ କରି ନାରୀରୂପ ଧାରଣପୂର୍ବକ ଗଙ୍ଗାରୁ ପାଣିନେବା ବାହାନାରେ ସେଠାକୁ ଆସିଲେ। ମହାଶକ୍ତିଙ୍କ କଟାକ୍ଷରେ ଆଗ୍ନେର୍ୟଙ୍କର ଅଳ୍ପ ମାତ୍ର ଶକ୍ତି ସଞ୍ଚାର ହେଲା, ଯଦ୍ଦ୍ୱାରା ସେ ମହାଦେବୀଙ୍କୁ କହିଲେ, 'ମା ! ମୋତେ ଟିକିଏ ଜଳ ଦିଅ । ମୁଁ ବଡ଼ ତୃଷାର୍ତ୍ତ ।' ଦେବୀ କହିଲେ, 'ବତ୍ସ ! ତୁମ୍ଭେ ତ ଜଳଧାର ନିକଟରେ ଶୟନ କରିଛ, ତୁମ୍ଭର ହସ୍ତ ଅଛି, ନିଜେ ଜଳ ନେଇ ପାନ କରୁନାହଁ କାହିଁକି ?' ଆଗ୍ନେର୍ୟ କହିଲେ, 'ମା ! ମୋର ଶକ୍ତି ନାହିଁ ।' ଦେବୀ କହିଲେ, 'ତୁମ୍ଭେ କରି ଶକ୍ତିଙ୍କୁ କେବେ ମାନିଥାଅ ?' ଏହା କହି ଦେବୀ ସେଠାରୁ ଅନ୍ତର୍ହିତା ହେଲେ । ଏହା ଦର୍ଶନ କରି ଆଗ୍ନେର୍ୟ ଶଙ୍କରଙ୍କର ଜ୍ଞାନୋଦୟ ହେଲା । ସଙ୍ଗେ ସଙ୍ଗେ ସେ ହୃଦୟଙ୍ଗମ କଲେ, ଶକ୍ତି ଦ୍ୱାରା ହିଁ ସୃଷ୍ଟି, ସ୍ଥିତି, ପ୍ରଳୟ, ବନ୍ଧନ ଓ ମୋକ୍ଷାଦି ସମସ୍ତ ଏ ବିଶ୍ୱରେ ଘଟୁଛି । ଶକ୍ତି ନ ଥିଲେ ଶିବ ଶବ ହୁଅନ୍ତି । ତାପରେ ସେ ଶକ୍ତିଙ୍କ ଉଦ୍ଦେଶ୍ୟରେ ଆନନ୍ଦ ଲହରୀ ଗାନକଲେ ।

ଚଣ୍ଡୀର ଏକାଦଶ ଅଧ୍ୟାୟ ନାରାୟଣୀ ସ୍ତୁତି । ଦେବୀ ଦୁର୍ଗାଙ୍କୁ ଦେବତାମାନେ ନାରାୟଣୀ ବୋଲି କହି ପ୍ରମାଣ କରିଛନ୍ତି । ନାରାୟଣୀ ହିଁ ନାରାୟଣଙ୍କ ଶକ୍ତି । ସେହିଭଳି ସେ ବ୍ରହ୍ମାଣୀ, ଇନ୍ଦ୍ରାଣୀ, କୌମାରୀ, ମାହେଶ୍ୱରୀ ନାମରେ ବିଦିତା । ଏହାର ଅର୍ଥ ସେହି ସେହି ଦେବତାମାନେ ସେହି ସେହି ଶକ୍ତିରେ ଶକ୍ତିମାନ । ତେଣୁ ଶକ୍ତି ମୂଳ । ଯୁଗେ ଯୁଗେ ତନ୍ତ୍ର ସେହି ଶକ୍ତି ମହାଶକ୍ତିଙ୍କ ବିଷୟ ପ୍ରଚାର କରିଆସିଛି ।

ଚଣ୍ଡୀଗ୍ରନ୍ଥରେ କୁହାହୋଇଛି—ଶୁମ୍ଭନିଶୁମ୍ଭଙ୍କ ଅନୁଚରଦ୍ୱୟ ଦେବୀ ଅମ୍ବିକାଙ୍କ ଅତି ମନୋହର ରୂପ ଦର୍ଶନକରି ତାଙ୍କୁ ଦେବୀଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନାକରି କହନ୍ତେ ଶୁମ୍ଭ ସୁଗ୍ରୀବ ନାମକ ଅସୁରକୁ ଦେବୀଙ୍କୁ ତାଙ୍କ ନିକଟକୁ ଅଣିବାକୁ ପଠାଇଲା । ଦେବୀ ସୁଗ୍ରୀବଠାରୁ ଶୁମ୍ଭର ବାର୍ତ୍ତା ଶୁଣି କହିଲେ, ଶୁମ୍ଭ ତ୍ରିଭୁବନ ଅଧିପତି ଏବଂ ନିଶୁମ୍ଭ ତାହାରି ଭଳି ବଳଶାଳୀ ଏକଥା ସତ । ମାତ୍ର ପୂର୍ବେ ମୁଁ ଅଳ୍ପ ବୁଦ୍ଧି ବଶତଃ ପ୍ରତିଜ୍ଞା କରିଛି 'ଯୋ ମାଂ ଜୟତି ସଂଗ୍ରାମେ', ଯେ ମୋତେ ସଂଗ୍ରାମରେ ପରାଜିତ କରିବ, 'ଯୋ ମେ ଦର୍ପଂ ବ୍ୟପୋହତି', ଯେ ମୋ ଦର୍ପ ଚୂର୍ଣ୍ଣ କରିବ ଏବଂ 'ଯୋ ମେ ପ୍ରତିବଲୋ ଲୋକେ', ଯେ ଜଗତରେ ମୋ ଭଳି ବଳଶାଳୀ, ସେ ମୋର ପତି ହେବ ।

ଅନନ୍ତର ଦେବୀଙ୍କ ସହିତ ଶୁମ୍ଭାସୁରର ସୈନ୍ୟ, ସେନାପତି, ଭାଇ ନିଶୁମ୍ଭର ମୃତ୍ୟୁ ହୋଇଛି । ଏମାନଙ୍କୁ ବଧ କରିବା ପାଇଁ ବ୍ରହ୍ମାଙ୍କ ମଧ୍ୟରୁ ବ୍ରହ୍ମାଣୀ, ମହେଶ୍ୱରଙ୍କ ମଧ୍ୟରୁ ମାହେଶ୍ୱରୀ, କାର୍ତ୍ତିକଙ୍କ ମଧ୍ୟରୁ କୌମାରୀ, ବିଷ୍ଣୁଙ୍କ ମଧ୍ୟରୁ ବୈଷ୍ଣବୀ, ବରାହଙ୍କ ମଧ୍ୟରୁ ବାରାହୀ, ଇନ୍ଦ୍ରଙ୍କ ମଧ୍ୟରୁ ଐନ୍ଦ୍ରୀ ବହିର୍ଗତ ହୋଇ ଆସିଛନ୍ତି । ଅବଶେଷରେ

ଯେତେବେଳେ ଶୁମ୍ଭ ଦେବୀଙ୍କ ସହିତ ସମର କରିବାକୁ ଆସି ବ୍ରହ୍ମାଣୀ, ମାହେଶ୍ୱରୀ ଆଦି ଶକ୍ତି ମାନଙ୍କୁ ଦେଖିଛି ସେତେବେଳେ କହୁଛି—

ବଲାବଲେପଦୁଷ୍ଟେ ତ୍ୱଂ ମା ଦୁର୍ଗେ ଗର୍ବମାବହ ।
ଅନ୍ୟାସାଂ ବଲମାଶ୍ରିତ୍ୟ ଯୁଧ୍ୟସେ ଯାଽତିମାନିନୀ ॥

'ହେ ବଳଗର୍ବେ ଉଦ୍ଧତା ଦୁର୍ଗା, ତୁମେ ଗର୍ବ କରନାହିଁ । ଅତି ଗର୍ବିତା ହୋଇ ତୁମେ ଅନ୍ୟାନ୍ୟ ଦେବୀଙ୍କ ଶକ୍ତି ଆଶ୍ରୟକରି ଯୁଦ୍ଧ କରୁଛ ।'

ଏହାର ଉତ୍ତରରେ ଦେବୀ କହୁଛନ୍ତି—

ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କା ମମାପରା ।
ପଶ୍ୟୈତା ଦୁଷ୍ଟ ମୟ୍ୟେବ ବିଶନ୍ତ୍ୟୋ ମଦ୍‌ବିଭୂତୟଃ ॥

'ଏକମାତ୍ର ମୁଁ ଏ ଜଗତରେ ବିରାଜିତା । ମୋ ବ୍ୟତୀତ ମୋର ସହାୟଭୂତା ଆଉ ଦ୍ୱିତୀୟା କିଏ ଅଛି ? ରେ ଦୁଷ୍ଟ, ବ୍ରହ୍ମାଣୀ ଆଦି ଯେଉଁ ଦେବୀମାନଙ୍କୁ ତୁ ଦେଖୁଛୁ ସେମାନେ ମୋ ବିଭୂତି ଛଡ଼ା ଆଉ କିଛି ନୁହେଁ । ଏଇ ଦେଖ, ସେମାନେ ମୋ ମଧ୍ୟରେ ଲୀନ ହେଉଛନ୍ତି ।' ଏହା ପରେ ଶୁମ୍ଭାସୁର ଦେଖିଲା ଦେବୀ ଚତୁଃପାର୍ଶ୍ୱରେ ଘେରି ରହିଥିବା ଦେବୀମାନେ ଦେବୀ ଦୁର୍ଗାଙ୍କ ମଧ୍ୟରେ ଲୀନ ହୋଇଗଲେ ।

ପ୍ରକୃତରେ ଏ ବିଶ୍ୱରେ ସେ ଏକମାତ୍ର ଅଛନ୍ତି । ତାଙ୍କ ବ୍ୟତୀତ ଦ୍ୱିତୀୟ ନାହିଁ । ଚଣ୍ଡୀର ତିନୋଟି ଚରିତ ଅନୁସାରେ ତିନୋଟି ଭିନ୍ନ ଭିନ୍ନ ମୂର୍ତ୍ତି ଭାବେ ସେ ଅବସ୍ଥାନ କରିଛନ୍ତି । ପରବର୍ତ୍ତୀ ଯୁଗରେ ଯୂପ ସ୍ୱରୂପ ସୁଦର୍ଶନ ଆସି ଯାଇଛନ୍ତି, ଆସି ଯାଇଛନ୍ତି ଶ୍ରୀ ଦେବୀ, ଭୂ ଦେବୀ, ସନ୍ଧ୍ୟା, ଉଷା ରୂପେ ଲକ୍ଷ୍ମୀ ସରସ୍ୱତୀ—ମାତ୍ର ସେହି ଏକରୁ ସେମାନେ ଭିନ୍ନ ଭିନ୍ନ ରୂପ । ସେ ଏକରୁ ବହୁ ହୋଇଛନ୍ତି ଏବଂ ବହୁ ହେଲେ ମଧ୍ୟ ସେ ସେହି 'ଏକମେବା ଦ୍ୱିତୀୟମ୍' ।

ଶ୍ରୀ ଜଗନ୍ନାଥ ତନ୍ତ୍ରର ଦେବତା, ତେଣୁ ସେ ଭୈରବୀ ଚକ୍ରରେ ଅବସ୍ଥାନ କରିଛନ୍ତି । ଭୈରବୀ ଚକ୍ରରେ ମଦ-ମାଛ-ମାଂସାଦି ଭୋଗ ଲାଗିଲେ ମଧ୍ୟ ତାହା ମହାପ୍ରସାଦ ରୂପେ ବିବେଚିତ ହୁଏ ଏବଂ ବ୍ରାହ୍ମଣ ଚଣ୍ଡାଲଠାରୁ ବିନା ଦ୍ୱିଧା ସଂକୋଚରେ ଗ୍ରହଣ କରେ । ସେହିଭଳି ଶ୍ରୀ ଜଗନ୍ନାଥଙ୍କ ପାଖରେ ନୈବେଦ୍ୟ ହେଉ-ଥିବା ସାମଗ୍ରୀ ମହାପ୍ରସାଦ ରୂପେ ବିଶ୍ୱରେ ପରିଗଣିତ ହୋଇ ଆସିଛି । ସାରା ବିଶ୍ୱରେ ଅନ୍ୟ କାହାର ପ୍ରସାଦ କେବେ ମହାପ୍ରସାଦ ହୋଇନାହିଁ । ଜଗନ୍ନାଥ ଯଦି ବିଷ୍ଣୁ ହୋଇଥାନ୍ତେ ଓ ବିଷ୍ଣୁଙ୍କ ପ୍ରସାଦ ମହାପ୍ରସାଦ ହେଉଥାନ୍ତା ତେବେ ଭାରତର ଅନ୍ୟାନ୍ୟ ବିଷ୍ଣୁ କ୍ଷେତ୍ରର ପ୍ରସାଦ ମହାପ୍ରସାଦ ହୋଇଥାନ୍ତା ।

ତନ୍ତ୍ରର ବାମାଗ୍ରର ପନ୍ଥାନୁଯାୟୀ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପଞ୍ଚ 'ମ' କାର ଯଥା— ମଦ୍ୟ,ମତ୍ସ୍ୟ, ମାଂସ, ମୈଥୁନ, ମୁଦ୍ରା ନୈବେଦ୍ୟ ହୋଇଥାଏ । ନୂଆ ଓଳିରେ ଡାଇଫଳ ଘୋଳି ପାଣି ବା କାଂସ୍ୟ ପାତ୍ରରେ ପଶିଡ଼ ଜଳ ମଦର ଅନୁରୂପ । ସେହିଭଳି ମାଂସ ବଦଳରେ ବରଗିଠା, ମାଛ ବଦଳରେ ଅଦା ଗୁଡ଼ ବା ଶାକ, ଉତ୍ସବର ସମସ୍ତ ନୀତି ପରେ ବଡ଼ଶୃଙ୍ଗାର ବେଶ ବେଳେ ଭିତର ଗାଏଣୀର ଲଗ୍ନ ବା ଅର୍ଦ୍ଧଲଗ୍ନ ଅବସ୍ଥାରେ ଲାସ୍ୟ ସଙ୍ଗୀତ ମୈଥୁନ ଉପଗ୍ରର ଓ ଦେବତାଙ୍କୁ ଯୋନିମୁଦ୍ରା ପ୍ରଦର୍ଶନ ମୁଦ୍ରା ଉପଗ୍ରର ଅନୁରୂପ । ବିଶେଷକରି ଶ୍ରୀ ଜଗନ୍ନାଥଙ୍କ ନିକଟରେ ଢ଼ଢ଼ା ଯାଉଥିବା ମେଣ୍ଢା ମୁଣ୍ଡିଆ ଖେଚୁଡ଼ି ନାମରୁ ସ୍ପଷ୍ଟ ଜଣାଯାଏ, ପୂର୍ବେ ଉହାଁଙ୍କ ପାଖରେ ମେଣ୍ଢା ମୁଣ୍ଡ ବଢ଼ା ଯାଉଥିଲା । ପରେ ବୈଷ୍ଣବ ପ୍ରଭାବ ହେତୁ ଆଉ ମେଣ୍ଢା ମୁଣ୍ଡ ବଢ଼ା ନ ଯାଇ ସେ ଥାଳୀରେ ଅଦା, ହେଙ୍ଗୁ, ଖେଚୁଡ଼ି ବଢ଼ା ଯାଉଥିଲେ ମଧ୍ୟ ପୂର୍ବ ନାମାନୁଯାୟୀ ତାହା ମେଣ୍ଢାମୁଣ୍ଡିଆ ଖେଚୁଡ଼ି ନାମରେ ଏବେ ବି ନାମିତ ।

ମହାପ୍ରସାଦ କିଭଳି ହୁଏ ଏବଂ କେଉଁ ମନ୍ତ୍ରରେ ପୂଜା କରାଯାଏ ତାହା ଦିବାକର ଦାସ ଚୈତନ୍ୟ ଦେବଙ୍କ ପ୍ରଶ୍ନ ଉତ୍ତର ଛଳରେ କହିଛନ୍ତି ।

ଶ୍ରୀଁ ବୀଜ ବଳଭଦ୍ର ହୋନ୍ତି । ହ୍ରୀଁ ବୀଜ ସୁଭଦ୍ରା ମୂରତି ॥
କ୍ଳୀଁ ବୀଜ ଜଗନ୍ନାଥ ଭାବ । ଏ ରୂପେ ନୈବେଦ୍ୟ ଦେବ ॥
ଯେ ଦ୍ରବ୍ୟ ଅମଣୋହି ହେବ । ତା ବଳଦେବେ ସମର୍ପିବ ॥
ସେ ଦେବେ ସୁଭଦ୍ରାଙ୍କ ପାଖେ । ସେ ଦେବେ ଜଗନ୍ନାଥ ମୁଖେ ॥
ଏ ଭାବେ ପ୍ରଭୁଙ୍କ ଆସ୍ୱାଦ । ଶେଷେ ହୁଏ ମହାପ୍ରସାଦ ॥

ତନ୍ତ୍ରରେ ଶ୍ରୀଁ ଲକ୍ଷ୍ମୀବୀଜ—ହ୍ରୀଁ ମାୟାବୀଜ—କ୍ଳୀଁ କାମବୀଜ ନାମରେ ନାମିତ । ଏହି ଗ୍ରନ୍ଥର ଚତୁର୍ଥ ଅଧ୍ୟାୟରେ ଦିବାକର ଦାସ କହିଛନ୍ତି ଶ୍ରୀଁ—ପଦ୍ମବୀଜ ହ୍ରୀଁ— ରମାବୀଜ, କ୍ଳୀଁ—କାମବୀଜ । ପୁଣି ଚତୁର୍ଦ୍ଦଶ ଅଧ୍ୟାୟରେ ସୁଦର୍ଶନଙ୍କୁ ଓଁକାର କୁହା ହୋଇଛି ।

ଶ୍ରୀଁ କାର ପଦ୍ମବୀଜ ହୋଇ । ହ୍ରୀଁ କାର ରମାବୀଜ କହି ॥
କ୍ଳୀଁ କାର କାମବୀଜ ସାର । ବାଳକ ପୌଗଣ୍ଡ କିଶୋର ॥

× × ×

ଶ୍ରୀ ଟି ସିଦ୍ଧ କଳେବର । ସୁଦରଶନଟି ଓଁ କାର ॥

ତନ୍ତ୍ରର ଯନ୍ତ୍ର ବିଷୟରେ ଦିବାକର ଦାସ ଯାହା ଲେଖିଛନ୍ତି ସେଥିରୁ ଅଷ୍ଟଦଳ ପଦ୍ମ ବିଷୟ ସମର୍ଥିତ ହୋଇଛି । ଜଗନ୍ନାଥ ସ୍ୱୟଂ ଚକ୍ରରାଜ । ସେହି ଚକ୍ର ଅଷ୍ଟଦଳ

ମଧ୍ୟରେ ଷଟ୍‌କୋଣ । ଏହି ଅଷ୍ଟଦଳ ମଧ୍ୟରେ ଓଡ଼ିଶାର ଅଷ୍ଟମାତୃକା ଅବସ୍ଥିତା । ଦିବାକର ଦାସ ତ୍ରିକୋଣ ଏବଂ ଷଟ୍‌କୋଣ ବିଷୟ ସହିତ ଅଷ୍ଟଦଳ କଥା ଲେଖିଛନ୍ତି—

ଆଦ୍ୟେଣ ମଣିବ ତ୍ରିକୋଣ । ଷଟ୍‌କୋଣ ପଦ୍ମ ମଣିଣ ।।
ତହିଁରୁ ଅଷ୍ଟାଦଳ କହି । ଷୋଳଦଳ ପରେଣ ରହି ।।
ଦ୍ୱାତ୍ରିଂଶ ଚତୁଷଷ୍ଟ ଦଳ । ଶତ ଦଳ ସହସ୍ର ଦଳ ।।
ପୁରୁଷୋତ୍ତମେ ଏହି ସାର । ଏ ରୂପେ ପ୍ରଭୁଙ୍କ ବିହାର ।।
ବଡ଼ ଦେଉଳ ଯେ ବୋଲାଇ । ସହସ୍ର ଦଳ ପଦ୍ମ ହୋଇ ।।
ଶତ ଦଳ ବେଢ଼ା ବୋଲାଇ । ସପ୍ତାବରଣ ଏକ ହୋଇ ।।
ଷୋଳ ଦଳ ଯାହାର ନାମ । ସେହିଟି ଜଗମୋହନ ।।
କଳା ବିଏଟ ନାମ ଯାର । ବତିଶ ଦଳ ପଦ୍ମ ସାର ।।
ମଧ୍ୟ ବେଢ଼ା ଯେହୁ ଅଟଇ । ଚୌଷଠି ଦଳ ସେ ବୋଲାଇ ।।

ତନ୍ତ୍ରରେ ଦେବତାଙ୍କ ସାଙ୍କେତିକ ଚିହ୍ନ ତ୍ରିକୋଣ ଏବଂ ସ୍ଥୂଳରୁ ସୂକ୍ଷ୍ମ ପୁଣି ସୂକ୍ଷ୍ମରୁ ସ୍ଥୂଳ । ଯେଉଁଭଳି ବୀଜରୁ ବୃକ୍ଷ ଓ ବୃକ୍ଷରୁ ବୀଜର ଉଦ୍ଭବ ତାହାର ସାଙ୍କେତିକ ଚିହ୍ନ ଷଟ୍‌କୋଣ । ଏହି ଷଟ୍‌କୋଣ ହିଁ ତନ୍ତ୍ର । ତନ୍ୟତେ ସାଧ୍ୟତେ ଇତି ତନ୍ତ୍ରଃ । ତନ୍ୟତେ—ଇତି ବିସ୍ତାରଯତେ । ଇତି ସଂକ୍ଷେପଯତେ । ଏହି ଷଟ୍‌କୋଣ ମଧ୍ୟରେ ସୃଷ୍ଟିର ବୀଜ ଲୁକ୍‌କାୟିତ । ଶ୍ରୀଜଗନ୍ନାଥ ଯେଉଁଭଳି ଅଷ୍ଟଦଳ ମଧ୍ୟସ୍ଥ ଷଟଚକ୍ରରେ ଅବସ୍ଥାନ କରିଛନ୍ତି, ତାଙ୍କ ମଧ୍ୟରେ ଅଷ୍ଟଦଳ ପଦ୍ମ ମଧ୍ୟରେ ଷଟ୍‌କୋଣ ଅଙ୍କିତ ହୋଇଛି ଓ ତାହାର କେନ୍ଦ୍ରରେ ମହାଶକ୍ତି (ବ୍ରହ୍ମ) ଅବସ୍ଥାନ କରିଛନ୍ତି । ଷଟ୍‌କୋଣର ପ୍ରତି କୋଣରେ ଏକ ଏକ ଶକ୍ତି ଯେଉଁଭଳି ରହିଛନ୍ତି, ସେହିଭଳି ଅଷ୍ଟଦଳ ପଦ୍ମର ପାଖୁଡ଼ାରେ ଏକ ଏକ ଶକ୍ତି ବିରାଜମାନ କରିଛନ୍ତି । ଓଡ଼ିଶାରେ ଏହାଙ୍କୁ ଅଷ୍ଟକଳା କୁହାଯାଏ । କେନ୍ଦ୍ରର ମହାଶକ୍ତି ଏହି ଚକ୍ରକୁ ଘୂରାଇଥାନ୍ତି ।

ଶ୍ରୀଜଗନ୍ନାଥ ସମ୍ପୂର୍ଣ୍ଣ ତନ୍ତ୍ରର ଦେବତା । ଏବେ ବି ତାଙ୍କୁ ଗୋପାଳ ମନ୍ତ୍ର, ଭୁବନେଶ୍ୱରୀ ମନ୍ତ୍ର ଓ ନୃସିଂହ ତାପିନୀ ମନ୍ତ୍ରରେ ଉପାସନା କରାଯାଏ । ଜଗନ୍ନାଥ ବୈଦିକ ଦେବତା ନୁହନ୍ତି । ହଜାରେ ବର୍ଷ ପାଖାପାଖି ହେବ ବୈଷ୍ଣବମାନେ ତାଙ୍କୁ ତାଙ୍କର ଦେବତା ରୂପେ ପ୍ରଚାର କରିବାକୁ ଯାଇ ସଫଳ ହୋଇ ନାହାନ୍ତି । ପ୍ରତ୍ୟେକକୁ ଟିକିଏ ଭଲକରି ଦେଖିଲେ ସ୍ପଷ୍ଟ ମନେହେବ ଶ୍ରୀଜଗନ୍ନାଥ ତନ୍ତ୍ରର ପ୍ରତିପାଦ୍ୟ ଦେବତା ।

# ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା

ନୀଳାଦ୍ରିନାଥମଜମବ୍ୟଜମବ୍ଜଲୋଚନେଶଂ
ସର୍ବାର୍ଥଦର୍ଶନପରଂ ପରମାତ୍ମରୂପମ୍ ।
ପ୍ରାଣାଧିକଂ ସକଳମୋକ୍ଷନିଧାନ ହେତୁଂ
ନାରାୟଣଂ ପ୍ରଣତକଳ୍ପତରୁଂ ନମାମି ॥

ଭାରତର ବିଭିନ୍ନ ଧର୍ମ ମତବାଦ ମଧ୍ୟରେ ଶ୍ରୀଜଗନ୍ନାଥ ଜାତୀୟ ଦେବତା ରୂପେ ପ୍ରତିଷ୍ଠିତ । ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଯୁଗ ଯୁଗ ଧରି ଓଡ଼ିଆ ଜାତିର ଜାତୀୟ ଚିନ୍ତା, ଚେତନା ଓ ସଂସ୍କୃତିର ଆଦି ଉତ୍ସ ରୂପେ ବହୁଧା ବର୍ଣ୍ଣିତ । ତେଣୁ ଭାରତର ବିଶେଷତଃ ଓଡ଼ିଶାର ଅଧିକାଂଶ ଯାତ୍ରା ମହୋତ୍ସବ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଅନୁଷ୍ଠିତ ହୋଇଥାଏ । ବିଗତ ଦୁଇ ହଜାର ବର୍ଷ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ନୀତି ଓ ଯାତ୍ରା ମହୋତ୍ସବ ଓଡ଼ିଶାର ରାଜା, ସାମନ୍ତ ରାଜା, ରାଷ୍ଟ୍ରର ଉଚ୍ଚ କର୍ମଚାରୀ, ବିଶିଷ୍ଟ ବ୍ୟକ୍ତି ଓ ଭକ୍ତମାନଙ୍କ ଦ୍ୱାରା ସୃଷ୍ଟି ଓ ପରିପୁଷ୍ଟି ଲାଭ କରିବା ସଙ୍ଗେ ସଙ୍ଗେ କାଳକ୍ରମେ ଶ୍ରୀମନ୍ଦିରର ଭିନ୍ନ ଭିନ୍ନ ପୃଷ୍ଠପୋଷକ ଓ କର୍ତ୍ତୃପକ୍ଷଙ୍କ ଦ୍ୱାରା ଅନୁମୋଦିତ ଓ ପ୍ରତିପାଳିତ ହୋଇ ଆସୁଅଛି ।

ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ବର୍ଷସାରା ବିଭିନ୍ନ ପ୍ରକାର ଯାତ୍ରା ମହୋତ୍ସବ ପାଳିତ ହୋଇଥାଏ । ତନ୍ମଧ୍ୟରେ ବୈଶାଖ ମାସରେ ପଣା ସଂକ୍ରାନ୍ତି, ଦମନକ ଏକାଦଶୀ, ଅକ୍ଷୟ ତୃତୀୟା, ନୀଳାଦ୍ରି ମହୋଦୟ ଉତ୍ସବ ଅନୁଷ୍ଠିତ ହୁଏ । ଜ୍ୟେଷ୍ଠ ମାସରେ ନୃସିଂହ ଚତୁର୍ଦ୍ଦଶୀ, ରାଜେନ୍ଦ୍ରାଭିଷେକ, ରୁକ୍ମିଣୀହରଣ ଏକାଦଶୀ, ଚମ୍ପକ ଦ୍ୱାଦଶୀ, ସ୍ନାନଯାତ୍ରା, ଅନବସର ଏବଂ ନେତ୍ରୋତ୍ସବ; ଆଷାଢ଼ ମାସରେ ଗୁଣ୍ଡିଚା ଯାତ୍ରା, ନବଦ୍ୱନ ଯାତ୍ରା, ହେରା ପଞ୍ଚମୀ, ଶୟନ ଏକାଦଶୀ, ଗରୁଡ଼ଶୟନ ଦ୍ୱାଦଶୀ ଓ ବାହୁଡ଼ା; ଶ୍ରାବଣ ମାସରେ କର୍କଟ ସଂକ୍ରାନ୍ତି, ଚିତାଲାଗି ଅମାବାସ୍ୟା, ପବିତ୍ରାଧିବାସ, ଝୁଲଣ ଯାତ୍ରା, ଗହ୍ମା ପୂର୍ଣ୍ଣିମା ଓ ରେଖା ପଞ୍ଚମୀ ଉତ୍ସବ ଅନୁଷ୍ଠିତ ହୋଇଥାଏ । ଭାଦ୍ର ମାସରେ ରାହୁରେଖାଲାଗି, ଜନ୍ମାଷ୍ଟମୀ, ନନ୍ଦୋତ୍ସବ, ସପ୍ତପୁରିକା ଅମାବାସ୍ୟା, ଗଣେଶ ଚତୁର୍ଥୀ, ଋଷି ପଞ୍ଚମୀ, ବାମନ ଜନ୍ମ, ଅନନ୍ତ ଚତୁର୍ଦ୍ଦଶୀ ଓ ଇନ୍ଦ୍ର ଗୋବିନ୍ଦ ପୂଜା; ଆଶ୍ୱିନ ମାସରେ

ଷୋଳପୂଜା, ଦ୍ୱିତୀୟା ଓଷା, ଦଶହରା, କୁମାର ପୂର୍ଣ୍ଣିମା; କାର୍ତ୍ତିକ ମାସରେ ତୁଳା ସଂକ୍ରାନ୍ତି, ଉତ୍ଥାନ ଏକାଦଶୀ, ଗରୁଡ ଉତ୍ଥାନ ଦ୍ୱାଦଶୀ, ଦୀପାବଳୀ ଓ କାର୍ତ୍ତିକ ପୂର୍ଣ୍ଣିମା ଏବଂ ମାର୍ଗଶୀର ମାସରେ ନବାନ୍ନ, ପ୍ରଥମାଷ୍ଟମୀ, ଓଢ଼ଣଷଷ୍ଠୀ ପାଳିତ ହୁଏ । ପୌଷରେ ନକୁଳ ଅମାବାସ୍ୟା, ପୁଷ୍ୟାଭିଷେକ; ମାଘରେ ମକର ସଂକ୍ରାନ୍ତି, ବସନ୍ତ ପଞ୍ଚମୀ ଓ ଶିବରାତ୍ରି; ଫାଲ୍‌ଗୁନ ମାସରେ ଦୋଳ ପୂର୍ଣ୍ଣିମା ଏବଂ ଚୈତ୍ରରେ ଅଶୋକାଷ୍ଟମୀ, ଶ୍ରୀରାମ ନବମୀ ମହୋତ୍ସବ ଅନୁଷ୍ଠିତ ହୁଏ । ମହୋତ୍ସବ ଓ ଯାତ୍ରା ଉପଯୋଗୀ ଢ଼ନ ଠାକୁରଙ୍କୁ ବିଭିନ୍ନ ବେଶରେ ସଜ୍ଜିତ କରାଯାଏ । ବାର ମାସରେ ଯଥାକ୍ରମେ ଚନ୍ଦନ ବେଶ, ଗଣେଶ ବେଶ, ରୁକ୍ମଣୀ ହରଣ ବେଶ, ନବଯୌବନ ବେଶ, ସ୍ୱର୍ଣ୍ଣ ବେଶ, ଚିତାଲାଗି ବେଶ, ରାହୁରେଖାଲାଗି ବେଶ, ବନଭୋଜି, କାଳୀୟ ଦଳନ, ପ୍ରଳମ୍ବ ବଧ, ବାମନ ବେଶ, ରାଜ ବେଶ, ରାଧା ଦାମୋଦର ବେଶ, ତ୍ରିବିକ୍ରମ, ବାମନ, ନୃସିଂହ, ପରଶୁରାମ, ରାଜ ବେଶ, ପଦ୍ମ ବେଶ, ଗଜୋଦ୍ଧାରଣ ବେଶ, ରଘୁନାଥ ବେଶ, କୁଣ୍ଡଳ ବେଶ ଓ ରାଜାରାମ ବେଶ କରାଯାଇଥାଏ ।

ପଞ୍ଜିକାକାରମାନଙ୍କ ଉଲ୍ଲେଖ ଅନୁଯାୟୀ ଶ୍ରୀଜଗନ୍ନାଥ ଜ୍ୟେଷ୍ଠ ପୂର୍ଣ୍ଣିମାରେ ହାତୀ ବେଶ, ଆଷାଢ଼ ଶୁକ୍ଳ ଏକାଦଶୀରେ ସୁନା ବେଶ, ଭାଦ୍ର କୃଷ୍ଣ ଦଶମୀ ଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ଯଥାକ୍ରମେ ବଣଭୋଜି ବେଶ, କାଳୀୟ ଦଳନ, ପ୍ରଳମ୍ବାସୁର ବଧ ଓ ବଳରାମ ବେଶ, ଭାଦ୍ର ଶୁକ୍ଳ ଦ୍ୱାଦଶୀରେ ବଳିବାମନ ବେଶ, ଆଶ୍ୱିନ ଶୁକ୍ଳ ଏକାଦଶୀ ଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ରାଧାଦାମୋଦର ବେଶ, କାର୍ତ୍ତିକ ଶୁକ୍ଳ ଏକାଦଶୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଠିଆକିଆ, ବାଙ୍କଚୁଡ଼ା, ଆଡ଼କିଆ, ଡାଳକିଆ ଓ ରାଜ ବେଶ, ପୌଷ ପୂର୍ଣ୍ଣିମାରେ ରାଜବେଶ, ମାଘ ଶୁକ୍ଳ ଦ୍ୱିତୀୟାରେ ପଦ୍ମବେଶ, ମାଘ ପୂର୍ଣ୍ଣିମାରେ ଗଜ ଉଦ୍ଧାରଣ ବେଶ ଏବଂ ଫାଲ୍‌ଗୁନ ପୂର୍ଣ୍ଣିମାରେ ରାଜ ବେଶ ଧାରଣ କରନ୍ତି ।

ଉପର୍ଯ୍ୟୁକ୍ତ ଯାତ୍ରା ମହୋତ୍ସବ ଓ ବେଶ ବ୍ୟତୀତ ନିତ୍ୟ ପୂଜାରେ ଶ୍ରୀଜଗନ୍ନାଥଙ୍କ ନାନାଦି ଯାତ୍ରା ଅନୁଷ୍ଠିତ ହୁଏ । କେତେକଙ୍କ ମତରେ ଶ୍ରୀମନ୍ଦିରରେ ଛପନ ପ୍ରକାର ଆଉ କେତେକଙ୍କ ମତରେ ବାଷଠି ପ୍ରକାର ଯାତ୍ରାର ପ୍ରଚଳନ ଥିବାର ଜଣାଯାଏ । ତନ୍ମଧ୍ୟରେ 'ଦ୍ୱାଦଶଯାତ୍ରା'ହିଁ ପ୍ରଧାନ । ଦ୍ୱାଦଶ ଯାତ୍ରାର ନାମ ଓ ଅନୁଷ୍ଠାନ କାଳ ବିଷୟରେ ଭିନ୍ନ ଭିନ୍ନ ମତ ଥିବାର ଦେଖାଯାଏ । ଲୋକନାଥ ବିଦ୍ୟାଧରଙ୍କ ଭାଷାରେ—

"ସ୍ନାନ ଗୁଣ୍ଡିଚା ଶୟନଯାତ୍ରା ଅକ୍ଷୟ ଅୟନ ।
ପାରୁଶ ପରିବର୍ତ୍ତନ ଉତ୍ଥାପନ ଓଢ଼ଣ ।।
ମକର ଅଭିଷେକ ଦୋଳ ଦମନକ ଚନ୍ଦନ ।
ଯେତେ ରୂପେ ଦ୍ୱାଦଶ ଉତ୍ସବ ଯେତେକେ ଯେତେକେ ସଘନ ।"

ନୀଳାଦ୍ରି ମହୋଦୟର ଷଷ୍ଠ ଅଧ୍ୟାୟର ଉଲ୍ଲେଖ ଅନୁଯାୟୀ ସ୍ନାନଯାତ୍ରା, ଗୁଣ୍ଡିଚ୍ୟୋତ୍ସବ, ଶୟନୋତ୍ସବ (ଆଷାଢ଼ଶୁକ୍ଳ ଏକାଦଶୀ) ଅୟନୋତ୍ସବ (କର୍କଟ ସଂକ୍ରାନ୍ତି), ପାର୍ଶ୍ୱପରିବର୍ତ୍ତନ, ଦେବୋତ୍ଥାପନ, ପ୍ରାବରଣ ଷଷ୍ଠୀ, ପୁଷ୍ୟାଭିଷେକ, ମକରୋତ୍ସବ, ଦୋଳଯାତ୍ରା, ଦମନକୋତ୍ସବ ଓ ଚନ୍ଦନଯାତ୍ରାଦି ଦ୍ୱାଦଶଯାତ୍ରାର କ୍ରମ ନିର୍ଦ୍ଦେଶ କରାଯାଇଛି । ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଧର୍ମଶାସ୍ତ୍ରକାର ବାଳୁଙ୍କି ପାଠୀଙ୍କ ପ୍ରଣୀତ 'ଯାତ୍ରା ଭାଗବତ' ଗ୍ରନ୍ଥରେ ନିମ୍ନମତେ ଦ୍ୱାଦଶ ଯାତ୍ରାର ଉଲ୍ଲେଖ କରାଯାଇଛି ।

"ଦୋଳଯାତ୍ରା ଦମନକମହୋଽକ୍ଷୟ୍ୟ ପୂର୍ଣ୍ଣ ତୃତୀୟା ।
ମଞ୍ଚସ୍ନାନଂ ରଥବରଗତିଃ ଶାୟନଂ ଗୃସ୍ତନେ ଦ୍ୱେ ।।
ପାର୍ଶ୍ୱାବୃତ୍ତିଃ ଶୟ୍ୟପରିବୃତଃ ପ୍ରାବୃତଃ ପୁଷ୍ୟପୂଜା ।
ଏତା ଯାତ୍ରାବଧି ନିଗଦିତା ଦ୍ୱାଦଶୈତା ନରେନ୍ଦ୍ରଃ ।"

ଉକ୍ତ ଉକ୍ତି ଅନୁସାରେ ଦୋଳ, ଦମନକ, ଅକ୍ଷୟତୃତୀୟା, ସ୍ନାନ, ରଥ, ଶୟନ, ଅୟନଦ୍ୱୟ (କର୍କଟ ଓ ମକର ସଂକ୍ରାନ୍ତି), ପାର୍ଶ୍ୱପରିବର୍ତ୍ତନ, ଉତ୍ଥାନ, ପ୍ରାବରଣ ଓ ପୁଷ୍ୟପୂଜ୍ୟାଦି ଦ୍ୱାଦଶଯାତ୍ରାର ନାମ ସୂଚନା ମିଳେ । ପୂର୍ବୋକ୍ତ ଶ୍ଳୋକଟି ସ୍ମୃତିକାର ଗଦାଧର ମହାପାତ୍ରଙ୍କ କାଳସାର ଗ୍ରନ୍ଥରେ ନିମ୍ନପ୍ରକାରେ ଉଲ୍ଲେଖ କରାଯାଇଛି ।

"ମଞ୍ଚସ୍ନାନଂ ରଥବରଗତିଃ ଶାୟନଂ ଗୃସ୍ତନେ ଦ୍ୱେ
ପାର୍ଶ୍ୱାବୃତ୍ତିଃ ଶୟ୍ୟପରିବୃତଃ ପ୍ରାବୃତଃ ପୁଷ୍ୟପୂଜା ।।
ଦୋଳାକେଳିର୍ଦ୍ଦମନକମହୋଽକ୍ଷୟ୍ୟ ପୁଣ୍ୟେତୃତୀୟା
ଯାତ୍ରାଃସ୍ଥାନେ ହରପ୍ରଭୃତୟୋର୍ଦ୍ୱାଦଶୈତେ ପ୍ରଣୀତାଃ ।"

କବି ନରସିଂହ ଦାସଙ୍କ ପ୍ରଣୀତ 'ଅଭିନବ ଜଗନ୍ନାଥ ପ୍ରସ୍ତାବ' ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରାର ନାମ ଓ ପାଳନ କାଳ ବିଷୟରେ ଉଲ୍ଲେଖ କରାଯାଇଛି—

"ଆଷାଢ଼େ ଗୁଣ୍ଡିଚ୍ଚ ଯାତ୍ରା ଶ୍ରାବଣେ କୃଷ୍ଣମନ୍ଦିରମ୍ ।
ଜନ୍ମାଷ୍ଟମୀ ଭାଦ୍ରପଦେ ମାସିବୃଶ୍ଚିନସଂଜ୍ଞକେ ।।
ବିଜୟା ଦଶମୀ ଚୈବଂ ତ୍ୱର୍ଜେ ରାସୋତ୍ସବସ୍ତଥା ।
ତଦୁତ୍ସବେ ପରୈଃ ପ୍ରାତଃ କର୍ତ୍ତବ୍ୟା ଗୋଷ୍ଠସାଜନୀ ।।
ମକରେ ନବସଂଙ୍ଖ୍ୟୈବ ଭ୍ରାମୟିତ୍ୱା ଜନାର୍ଦ୍ଦନମ୍ ।
ଦୋଳାଯାତ୍ରା ତପସ୍ୟେଚ ତଦଙ୍ଗେ ଦଧିଖେଳନମ୍ ।।
ରୁକ୍ମିଣ୍ୟୁଦ୍ୱାହନଂ ଚୈତ୍ରେ ବୈଶାଖେ ଚନ୍ଦନୋତ୍ସବଃ ।
ଜ୍ୟୈଷ୍ଠସ୍ନାନଂ ରମେଶସ୍ୟ ଯାତ୍ରା ଦ୍ୱାଦଶସଂଖ୍ୟକାଃ" ।।

ତଦନୁଯାୟୀ ଗୁଣ୍ଡିଚ୍ଚା, ଝୁଲଣ, ଜନ୍ମାଷ୍ଟମୀ, ବିଜୟା ଦଶମୀ, କୁମାର ପୂର୍ଣ୍ଣିମା, ରାସୋତ୍ସବ, ମକରଯାତ୍ରା, ଦୋଳଯାତ୍ରା, ରୁକ୍ମିଣୀବିବାହ, ଚନ୍ଦନଯାତ୍ରା ଓ ସ୍ନାନଯାତ୍ରା ଆଦି ଦ୍ୱାଦଶ ଯାତ୍ରାର ପରିଚୟ ମିଳେ ।

ପଞ୍ଜିକା ଅନୁସାରେ ବୈଶାଖ ଶୁକ୍ଳ ତୃତୀୟାରେ ଅକ୍ଷୟ ତୃତୀୟା, ଜ୍ୟେଷ୍ଠ ପୂର୍ଣ୍ଣିମାରେ ସ୍ନାନଯାତ୍ରା, ଆଷାଢ଼ଶୁକ୍ଳ ଦ୍ୱିତୀୟାରେ ରଥଯାତ୍ରା, ଶ୍ରାବଣ କୃଷ୍ଣ-ଦଶମୀରେ କର୍କଟ ସଂକ୍ରାନ୍ତି, ଶ୍ରାବଣ ଶୁକ୍ଳ ଏକାଦଶୀରେ ଶୟନଯାତ୍ରା, ଭାଦ୍ର ଶୁକ୍ଳ ଏକାଦଶୀରେ ପାର୍ଶ୍ୱ ପରିବର୍ତ୍ତନ, କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଦେବୋତ୍ଥାପନ, ପୌଷ ଶୁକ୍ଳ ଷଷ୍ଠୀରେ ପ୍ରାବରଣ ଷଷ୍ଠୀ, ପୌଷ ପୂର୍ଣ୍ଣିମାରେ ପୁଷ୍ୟାଭିଷେକ, ମାଘରେ ମକର ସଂକ୍ରାନ୍ତି, ଫାଲ୍‌ଗୁନ ପୂର୍ଣ୍ଣିମାରେ ଦୋଳଯାତ୍ରା ଏବଂ ଚୈତ୍ର ଶୁକ୍ଳ ତ୍ରୟୋଦଶୀ ଓ ଚତୁର୍ଦ୍ଦଶୀରେ ଦମନକୋତ୍ସବ (ଦୟଣା ଚୋରି ବା ଦୟଣା ଲାଗି) ପ୍ରଭୃତି ଦ୍ୱାଦଶଯାତ୍ରା ପାଳନ ବିଧିର ଉଲ୍ଲେଖ ଅଛି । ଓଡ଼ିଶାର ଧର୍ମଶାସ୍ତ୍ରଗୁଡ଼ିକରେ ଶ୍ରୀମନ୍ଦିରରେ ପାଳିତ ହେଉଥିବା ବିଭିନ୍ନ ପର୍ବପର୍ବାଣୀର ପ୍ରାସଙ୍ଗିକ ଉଲ୍ଲେଖ କରାଯାଇଅଛି । ଉପର୍ଯ୍ୟୁକ୍ତ ଆଲୋଚନାରୁ ବିଭିନ୍ନ ସମୟରେ ବର୍ଷାରମ୍ଭ ମାସ, ଦ୍ୱାଦଶଯାତ୍ରାର ନାମ ଓ ପାଳନକ୍ରମ ଭିନ୍ନ ଭିନ୍ନ ଥିବାର ଦେଖାଯାଏ । ଏଠାରେ ସୌରମାସ ଅନୁସାରେ କ୍ରମଶଃ ଦ୍ୱାଦଶ ଯାତ୍ରାର ବିବରଣୀ ଉଲ୍ଲେଖ କରାଯାଇଛି ।

ଚନ୍ଦନଯାତ୍ରା—

ବୈଶାଖ ମାସର ଅକ୍ଷୟ ତୃତୀୟାଠାରୁ ଆରମ୍ଭ କରି ଜ୍ୟେଷ୍ଠ କୃଷ୍ଣାଷ୍ଟମୀ ପର୍ଯ୍ୟନ୍ତ ଦୀର୍ଘ ଏକୋଇଶ ଦିନବ୍ୟାପୀ ଚନ୍ଦନଯାତ୍ରା ଅନୁଷ୍ଠିତ ହୁଏ । ଅକ୍ଷୟ ତୃତୀୟା ଦିନ ଶ୍ରୀବିଗ୍ରହରେ ଚନ୍ଦନଲେପନ ଓ ନାବ କ୍ରୀଡ଼ାର ବିଧି ସ୍କନ୍ଦ ପୁରାଣର ଉତ୍କଳଖଣ୍ଡ ତଥା ନୀଳାଦ୍ରି ମହୋଦୟରେ ବର୍ଣ୍ଣିତ ହୋଇଅଛି ।

"ବୈଶାଖସ୍ୟ ସିତେ ପକ୍ଷେ ତୃତୀୟାକ୍ଷୟସଂଜ୍ଞିକା ।<br>
ତତ୍ର ମାଂ ଲେପୟେଦ୍‌ଗନ୍ଧଲେପନୈରତି ଶୋଭନମ୍ ।।<br>
ବୈଶାଖେ ଚ ସିତେ ପକ୍ଷେ ତୃତୀୟାୟାଂ ଜଗଦ୍‌ଗୁରୋଃ ।<br>
ନାବକ୍ରୀଡ଼ାଂ ପ୍ରକୁର୍ବୀତ ସର୍ବକାମାର୍ଥସିଦ୍ଧୟେ ।।"

ଏହି ଉତ୍ସବରେ ଶ୍ରୀ ଜଗନ୍ନାଥଙ୍କ ବିଜୟ ପ୍ରତିମା ମଦନମୋହନ ଲକ୍ଷ୍ମୀ ଓ ସତ୍ୟଭାମାଙ୍କ ସହିତ ପ୍ରତିଦିନ ବିମାନ ଆରୋହଣ ପୂର୍ବକ ଶ୍ରୀମନ୍ଦିରରୁ ନରେନ୍ଦ୍ର ସରୋବରକୁ ବିଜେ କରନ୍ତି । ଏହି ବିଜୟ ଉତ୍ସବରେ ଶ୍ରୀ ଲୋକନାଥ, ଯମେଶ୍ୱର, କପାଳ ମୋଚନ, ମାର୍କଣ୍ଡେଶ୍ୱର ଓ ନୀଳକଣ୍ଠେଶ୍ୱରଙ୍କର ବିଜୟ ମୂର୍ତ୍ତିମାନ ମଦନମୋହନଙ୍କ

ସହ ଗମନ କରିଥାନ୍ତି । ପ୍ରଥମେ ଶ୍ରୀ ବିଗ୍ରହଙ୍କୁ ନୌକାରେ ରଖି ପରେ ପୁଷ୍କରିଣୀରେ ବୁଲାଇ ଅଣାଯାଏ ଏବଂ ନୌକାରୁ ନେଇ ଜଳକ୍ରୀଡ଼ା ମଣ୍ଡପରେ ଥିବା ଜଳକୁଣ୍ଡରେ ତିନି ପ୍ରହର ପର୍ଯ୍ୟନ୍ତ ଜଳଶାୟୀ କରାଯାଏ । ଏହାପରେ ପୂଜା ଓ ଭୋଗ ହୁଏ । ଏହି ଉତ୍ସବରେ ଅଗ୍ନି, ନୈର୍ଋତ, ବାୟୁ ଓ ଐଶାନ୍ୟ କୋଣ ସହିତ ପୁଷ୍କରିଣୀ ମଧ୍ୟ ଭାଗରେ ସାତବାର କରି ପାଞ୍ଚଟି ସାତଭଉଁରି (ସପ୍ତଭ୍ରାମରୀ) କରା ଯାଇଥାଏ। ଏହି ସମୟରେ ଅକ୍ଷୟ ତୃତୀୟାଠାରୁ ଆରମ୍ଭକରି ଉତ୍ସବ ଶେଷ ଅବଧି ନଟବର, ଶ୍ରୀକୃଷ୍ଣ, ରାଜାଧିରାଜ, ବନବିହାରୀ, ବସ୍ତ୍ରାହରଣ, ଗୋମତୀ କୃଷ୍ଣ, ଖଟ ଦୋଳି, ଚକ୍ର ନାରାୟଣ, ନାବକେଳି, ରାସ ମଣ୍ଡଳ, କନ୍ଦର୍ପ ରଥ, ଅଘାସୁର ବଧ, ରଘୁନାଥ, ଚୈତନ୍ୟ, ଗିରିଗୋବର୍ଦ୍ଧନ, ଗିରିଧାରୀ, ବସ୍ତ୍ରହରଣ, ଚିନ୍ତାମଣି, ଗଜଉଦ୍ଧାରଣାଦି ବେଶ କରାଯାଇ ଥାଏ । ଦ୍ୱାଦଶ ଯାତ୍ରା ଅନ୍ତର୍ଗତ ଅକ୍ଷୟତୃତୀୟା ଉତ୍ସବଟି ଚନ୍ଦନଯାତ୍ରା ନାମରେ ଅଭିହିତ ।

କବି ନୀଳାମ୍ବର ଆଚାର୍ଯ୍ୟଙ୍କ 'ଚନ୍ଦନଯାତ୍ରା ଚମ୍ପୂ'ରେ ଚନ୍ଦନ ପୁଷ୍କରିଣୀଠାରେ ସମବେତ ଜନତାକୁ ଲକ୍ଷ୍ୟକରି କହିଛନ୍ତି—

"ନୈଘାତ୍ତମୂରମମ୍ବୁରାବକଳିତଂ ପ୍ରାଳମ୍ବମାସାରସା
ସଂମ୍ମୂର୍ଚ୍ଛଦ୍‌ଘନଗର୍ଜିତାନି ସତତଂ ସଂଲକ୍ଷ୍ୟ ସାକ୍ଷାତ୍‌କ୍ଷଣମ୍ ।
ସନ୍ତାପାପବିନୋଦସାଦରତୟା ସାକଂ ସହସ୍ରୈର୍ହିଶଃ
ସାନନ୍ଦଂ ସମୁଦାଗମପୁରିଜନୈଃ କାସାରମାସାଦକଃ ।।"

ଚନ୍ଦନ ଚମ୍ପୂ କାବ୍ୟରେ କବିକଣ୍ଠ ମହାମହୋପାଧ୍ୟାୟ ସଦାଶିବ ମିଶ୍ର ଦେବଦାସୀ ନୃତ୍ୟକୁ ଲକ୍ଷ୍ୟକରି କହିଛନ୍ତି—

"ତୈଳଙ୍ଗକାହାଳର ବୋତ୍‌ଥଗୀତୈରଭ୍ରଂକଷୈଃ କର୍ଣ୍ଣରସାୟନୈଶ୍ଚ ।
ଦେବାଙ୍ଗନାକଣ୍ଠବିମୁକ୍ତ ଗୀତଧ୍ୱନିର୍ଜଜୃମ୍ଭେଽଭିନୟେନ ସାର୍ଦ୍ଧମ୍ ।।"

## ସ୍ନାନଯାତ୍ରା :

ଜ୍ୟେଷ୍ଠ ପୂର୍ଣ୍ଣିମା ତିଥିରେ ଶ୍ରୀ ଜଗନ୍ନାଥଙ୍କ ସ୍ନାନଯାତ୍ରା ଅନୁଷ୍ଠିତ ହୁଏ ।

"ଜ୍ୟେଷ୍ଠେ ମାସି ସିତେ ପକ୍ଷେ ପୌର୍ଣ୍ଣମ୍ୟାଂ ଜଗଦୀଶ୍ୱରମ୍ ।
ସ୍ନାପୟେତ୍ତୀର୍ଥତୋୟେନ ସର୍ବମଙ୍ଗଳ-ସିଦ୍ଧୟେ ।"

ସ୍ନାନ ବେଦୀରେ ଶ୍ରୀ ଜଗନ୍ନାଥ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଅଷ୍ଟୋତ୍ତର ଶତକୁମ୍ଭ ଜଳରେ ସ୍ନାନ କରାଯାଏ । ଏହି ଅବକାଶରେ ସ୍ନାନ ପରେ ଶ୍ରୀ ଜଗନ୍ନାଥ ଗଣେଶ ବେଶ ଧାରଣ କରନ୍ତି । ଜ୍ୟେଷ୍ଠ ପୂର୍ଣ୍ଣିମା ଶ୍ରୀ ଜଗନ୍ନାଥଙ୍କ ଆବିର୍ଭାବ ଦିବସ ବୋଲି 'ନୀଳାଦ୍ରି-ମହୋଦୟ'ର ଷଷ୍ଠ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି—

"ସ୍ୱାୟମ୍ଭୁବକୃତେ ତନ୍ତ ଦର୍ଶେ ତବ ମଖାହ୍ନୟେ ।
ଅବତୀର୍ଣ୍ଣଃ ସ୍ୱୟଂ ଜ୍ୟୈଷ୍ଠ୍ୟାଂ ତନ୍ତ ଜନ୍ମଦନଂ ମମ ॥
ତତ୍ ପୌର୍ଣ୍ଣମୀ ଦନେ ଭୂପ ସ୍ନାନଂ ମେ କାର୍ଯ୍ୟମାଦରାତ୍ ।
ମହାସ୍ନାନବଧୌ ଭକ୍ତ୍ୟା ଯଥାବଧି ମହୋତ୍ସବୈଃ ।"

ସ୍ମୃତିଶାସ୍ତ୍ର ଅନୁସାରେ ସ୍ନାନୋତ୍ସବ ସୂର୍ଯ୍ୟୋଦୟଠାରୁ ପାଳନ କରାଯାଏ—

"ଦୋଲଯାତ୍ରା ସ୍ୱନକ୍ଷତ୍ରଂ ପୁଷ୍ୟା ଚ ପ୍ରଥମାଷ୍ଟମୀ ।
ବ୍ରଜରାଜଂ ହ୍ୱତ୍ସ୍ନାନମୁଦୟାତ୍ ପରପାଳୟେତ୍ ॥"

ଉତ୍ସବ ଶେଷରେ ଠାକୁରଙ୍କୁ ଶ୍ରୀମନ୍ଦରରେ ଏକାନ୍ତଭାବେ ରଖି ପ୍ରପାନକ ଓ ଅନ୍ନାଦ ନୈବେଦ୍ୟ ସମର୍ପଣ କରାଯାଏ । ଏହା ପରେ ଲକ୍ଷ୍ମୀନାରାୟଣଙ୍କ ଚନ୍ଦ୍ରପଟ୍ଟକୁ ଯଥାବଧି ସଂସ୍କାର କରି ପଞ୍ଚଦଶ ଦବସାବଧି ପୂଜା କରାଯାଏ । ଏହି ସମୟ ଶ୍ରୀଜଗନ୍ନାଥଙ୍କ 'ଅନବସର' କାଳ ରୂପେ ଅଭିହିତ । ବାୟୁ ପୁରାଣର ଉଲ୍ଲେଖ ଅନୁସାରେ ସେ ସମୟରେ ଦେବଦର୍ଶନ ନଷିଦ୍ଧ କରାଯାଇଛି—

"ତତଃ ପଞ୍ଚଦଶାହାନି ମମ ସ୍ନାନାଦନନ୍ତରମ୍ ।
ସୁରୂପାଂ ବା ବରୂପାଂ ବା ନ ପଶ୍ୟେତ୍ ପ୍ରତିମାଂ ମମ ॥"
(କାଳସାର-ପୃ-୧୯୦)

ଏହି ସମୟ ମଧ୍ୟରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ଯେଉଁ ସେବା ପୂଜାଦ ଅନୁଷ୍ଠିତ ହୁଏ, ତାହା ଅତ୍ୟନ୍ତ ଗୋପନ ରଖାଯାଏ । ତଥାପି ବଗ୍ରହମାନଙ୍କୁ ବଭିନ୍ନ ପ୍ରକାର ଔଷଧ, ପାଚନ ଓ ପ୍ରପାନକ ଆଦ ଅର୍ପଣ କରାଯାଏ ଏବଂ ତାହା ସାଧାରଣ ଦର୍ଶକମାନଙ୍କୁ ପ୍ରସାଦରୂପେ ବତରଣ କରାଯାଇଥାଏ ।

## ରଥଯାତ୍ରା :

ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା କେବଳ ପୁରୁଷୋତ୍ତମ କ୍ଷେତ୍ରରେ ନୁହେଁ, ଭାରତର ସର୍ବପ୍ରଧାନ ଉତ୍ସବ ରୂପେ ପାଳିତ ହୁଏ । ଏହି ଯାତ୍ରାକୁ ନବଦନ ଯାତ୍ରା, ଗୁଣ୍ଡିଚ୍ଚା ଯାତ୍ରା, ଘୋଷଯାତ୍ରା, ପତିତପାବନ ଯାତ୍ରା ତଥା ମହାବେଦୀ ଉତ୍ସବ ନାମରେ ନାମିତ କରାଯାଇଛି । ରଥଯାତ୍ରା ପ୍ରତିବର୍ଷ ଆଷାଢ଼ ମାସ ପୁଷ୍ୟାନକ୍ଷତ୍ରଯୁକ୍ତ ଶୁକ୍ଳ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ହୋଇଥାଏ । ନୀଳାଦ୍ରି ମହୋଦୟ ଷଷ୍ଠ ଅଧ୍ୟାୟରେ ଉଲ୍ଲେଖ ଅଛି—

"ଆଷାଢ଼ସ୍ୟ ଚ ମାସସ୍ୟ ସିତେ ପକ୍ଷେ ଗୁରୋର୍ଦ୍ଦିନେ ।
ପୁଷ୍ୟର୍କ୍ଷେ ଚ ଦ୍ୱିତୀୟାୟାଂ ତନ୍ନ କୁର୍ଯ୍ୟାଦ୍ରଥୋତ୍ସବମ୍ ।।
ଋକ୍ଷାଭାବେ ତିଥୌ କାର୍ଯ୍ୟଂ ସର୍ବଭାବେନ ଭୂପତେ ।
ଗୁଣ୍ଡିଚାଖ୍ୟୋତ୍ସବଂ କୁର୍ଯ୍ୟାଦତି ପ୍ରୀତିକରଂ ମମ ।।"

ଅକ୍ଷୟତୃତୀୟା ଠାରୁ ତ୍ରିରଥ ନିର୍ମାଣ ଆରମ୍ଭ ହୁଏ ।

ତିନିରଥ ମଧ୍ୟରେ ଶ୍ରୀ ଜଗନ୍ନାଥଙ୍କ ରଥର ନାମ 'ନନ୍ଦିଘୋଷ' । ଅଗ୍ରଭାଗରେ ଚକ୍ର ଓ ଗରୁଡ଼ ଅଧିଷ୍ଠିତ ଥିବାରୁ ଏହି ରଥ ଚକ୍ରଧ୍ୱଜ ତଥା ଗରୁଡ଼ଧ୍ୱଜ ନାମରେ ଅଭିହିତ । ନନ୍ଦିଘୋଷର ଉଚ୍ଚତା ତେଇଶି ହାତ । ଏଥିରେ ଅଷ୍ଟାଦଶ ସିଦ୍ଧିର ପ୍ରତୀକ ଭାବେ ପାଞ୍ଚହାତ ପରିଧି ବିଶିଷ୍ଟ ଅଠରଟି ଚକ ଥାଏ ଏବଂ ପୀତବର୍ଣ୍ଣ ବସ୍ତ୍ରରେ ସଜ୍ଜିତ ହୋଇଥାଏ । ଏଥିରେ ରକ୍ଷକ ନୃସିଂହ, ସାରଥୀ ମାତଲି, ରେଚକା, ମୋଚକା, ସୂକ୍ଷ୍ମା ଓ ଅମୃତା ନାମରେ ଶ୍ୱେତାଶ୍ୱ ଚତୁଷ୍ଟୟଯୁକ୍ତ ହୋଇଥାନ୍ତି । ପାର୍ଶ୍ୱଦେବତା ରୂପେ ଦକ୍ଷିଣ ଭାଗରେ ବରାହ, କୃଷ୍ଣ ଓ ଗୋପୀନାଥ, ପଶ୍ଚାଦ୍ ଭାଗରେ ନୃସିଂହ, ରାମ ଓ ନାରାୟଣ ଏବଂ ବାମ ଭାଗରେ ତ୍ରିବିକ୍ରମ, ହନୁମାନ ଓ ରୁଦ୍ର ତଥା ସମ୍ମୁଖ ଭାଗରେ ଇନ୍ଦ୍ର, ବ୍ରହ୍ମା ଓ ସପ୍ତର୍ଷିଙ୍କ ଦ୍ୱାରା ରଥ ମଣ୍ଡିତ ହୋଇଥାଏ ।

ବଳଭଦ୍ରଙ୍କ ରଥର ଶୀର୍ଷଦେଶରେ ତାଳ ଚିହ୍ନ ଥିବାରୁ ଏହା 'ତାଳଧ୍ୱଜ' ନାମରେ ନାମିତ । ଏହାର ଉଚ୍ଚତା ବାଇଶି ହାତ । ଏଥିରେ ଷୋଡ଼ଶ କଳାର ପ୍ରତୀକ ଭାବେ ସାଢେ ଚାରିହାତ ପରିଧି ବିଶିଷ୍ଟ ଷୋହଳଟି ଚକ ଥାଏ । ତାଳଧ୍ୱଜ ରଥ ନୀଳବସ୍ତ୍ରରେ ଆବୃତ ହୁଏ । ଏଥିରେ ରକ୍ଷକ ଶେଷ, ସାରଥି ସୁଦ୍ୟୁମ୍ନ ଏବଂ ସ୍ଥିରା, ଧୃତି, ସ୍ଥିତି ଓ ସିଦ୍ଧା ନାମରେ କୃଷ୍ଣାକୃତି ଅଶ୍ୱଚତୁଷ୍ଟୟ ଥାଆନ୍ତି । ପାର୍ଶ୍ୱଦେବତା ଭାବେ ଦକ୍ଷିଣରେ ଗଣେଶ, କାର୍ତ୍ତିକେୟ ଓ ସର୍ବମଙ୍ଗଳା, ପଶ୍ଚାଦ୍ ଭାଗରେ ହଳାୟୁଧ ଓ ମୃତ୍ୟୁଞ୍ଜୟ, ବାମ ଭାଗରେ ନାଟାମ୍ବର, ମହେଶ୍ୱର ଓ ଶେଷ ଦେବ ଏବଂ ସମ୍ମୁଖରେ ରୁଦ୍ର, ସାତ୍ୟକ ଓ ଅଷ୍ଟବସୁ ରହନ୍ତି ।

ସୁଭଦ୍ରାଙ୍କ ରଥର ନାମ ପଦ୍ମଧ୍ୱଜ ଓ ଦେବଦଳନ । ଏହାର ଉଚ୍ଚତା ଏକୋଇଶ ହାତ । ଏଥିରେ ଚାରିହାତ ପରିଧି ବିଶିଷ୍ଟ ଚତୁର୍ଦ୍ଦଶ ଭୁବନର ପ୍ରତୀକଭାବେ ଚଉଦଟି ଚକ ଥାଏ । ଏହି ରଥ କୃଷ୍ଣବର୍ଣ୍ଣ ବସ୍ତ୍ରରେ ସଜ୍ଜିତ ହୁଏ । ଏଥିରେ ରକ୍ଷକ ଭାବେ ବନଦୁର୍ଗା, ସାରଥି ଅର୍ଜୁନ, ଅଧର୍ମ, ଅଜ୍ଞାନ, ଅପରାଜିତା ଓ ଜ୍ୟୋଧମୀ ନାମରେ ଅଶ୍ୱଚତୁଷ୍ଟୟ ନିଯୁକ୍ତ ଥାଆନ୍ତି । ଦେବଦଳନର ଦକ୍ଷିଣରେ ଚଣ୍ଡୀ, ଚାମୁଣ୍ଡା ଓ ଉଗ୍ରତାରା, ପଶ୍ଚାଦ୍ ଭାଗରେ ବନଦୁର୍ଗା, ମହିଷମର୍ଦ୍ଦିନୀ, ବାରାହୀ, ବାମଭାଗରେ ଶ୍ୟାମାକାଳୀ, ମଙ୍ଗଳା ଓ ବିମଳା ଏବଂ ସମ୍ମୁଖରେ ଶ୍ରୀ ଦେବୀ, ଭୂଦେବୀ ଓ ଅଷ୍ଟଭୈରବ ରହନ୍ତି ।

ରଥର ବିଭିନ୍ନ ଅଂଶର ନାମ ଯଥାକ୍ରମେ ଚକ, ଦାଣ୍ଡିଆ, ଅର, ବାଙ୍କି, ହଂସପଟା, କଣି, ଶଙ୍ଖଦ୍ୱାର, ଜାଲି, ରଗପଟା, ସିଂହାସନ, କନକମୁଣ୍ଡାଇ, ଭୂମି, ଷୋଳବାହାକ, ମକରଦଣ୍ଡା, ଚହନ୍ତ, ଡୁଆର ଘୋଡ଼ା, ସାରଥି ପୀଢ଼, କୁମ୍ଭପାଟି, ରତ୍ନ-ପାଟି, ଅଠନାହାକା, ବାଙ୍କି, ପୀଢ, ଗ୍ରୀପଟା, ଦଣ୍ଡା, ପାଗଗ୍ରୀ, ଖଫୁର, ପାଦ, ଓଲଟଶୁଆ, ଦଧିନଉତି, କଳଶ, କଣ୍ଟି, ଦଣ୍ଡ, ଚକ୍ର ଓ କେତନ ।

ଚତୁର୍ଦ୍ଧାମୂର୍ତ୍ତି ସୁଦର୍ଶନ, ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ପହଣ୍ଡି ବିଜୟ କ୍ରମେ ରଥରେ ବିଜୟ କରିବାପରେ ଠାକୁରରାଜା ଛେରାପହଁରା କରନ୍ତି । ଏହାପରେ ରଥ ଟଣାଯାଏ । ରଥଯାତ୍ରାର ଚତୁର୍ଥ ଦିବସରେ ହେରାପଞ୍ଚମୀ ପର୍ବ ବା ଲକ୍ଷ୍ମୀବିଜୟୋ-ତ୍ସବ ପଡ଼େ । ସପ୍ତମ ଦିବସରେ 'ସନ୍ଧ୍ୟାଦର୍ଶନ' ହୁଏ । ଅଷ୍ଟମ ଦିବସରେ ରଥଗୁଡ଼ିକର ଦକ୍ଷିଣମୋଡ଼ କରାଯାଏ ଏବଂ ନବମ ଦିବସ ବା ଦଶମୀ ତିଥିରେ ବାହୁଡ଼ାଯାତ୍ରା ଓ ଲକ୍ଷ୍ମୀନାରାୟଣ ଭେଟ ଅନୁଷ୍ଠିତ ହୁଏ । ଏକାଦଶୀ ଦିନ ରଥରେ ସ୍ୱର୍ଣ୍ଣବେଶ ଓ ଦ୍ୱାଦଶୀ ଦିନ ନୀଳାଦ୍ରି ଉତ୍ସବ ବା ମନ୍ଦିରରେ ବିଜୟୋତ୍ସବ, ଲକ୍ଷ୍ମୀ ନାରାୟଣ କଳି ଓ ବନ୍ଦାପନାଦି ଦ୍ୱାରା ରଥଯାତ୍ରା ସମାହିତ ହୁଏ । ନୀଳାଦ୍ରି ମହୋଦୟର ଷୋଡ଼ଶ ଅଧ୍ୟାୟରେ ଶ୍ରୀଗୁଣ୍ଡିଚା ଯାତ୍ରାର ବିଧିବିଧାନ ପର୍ଯ୍ୟାଲୋଚନା କରାଯାଇଛି । ରଥସ୍ଥ ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ଲୋକର ଜୀବନ ଧନ୍ୟ ହୋଇଥାଏ—

"ରଥସ୍ଥଂ ଚ ଜଗନ୍ନାଥଂ ପ୍ରସ୍ଥାନ୍ତଂ ଗୁଣ୍ଡିଚାଗୃହମ୍ ।
ଯେ ପଶ୍ୟନ୍ତି ନରଶ୍ରେଷ୍ଠା ସ୍ତେ ଧନ୍ୟା ଭୂତଳନ୍ତୟେ ॥"

ରଥ ଚଳନକୁ ଲକ୍ଷ୍ୟକରି କବି ବଦିବାଜ୍ ଚକ୍ରପାଣି ଗୁଣ୍ଡିଚା ଚମ୍ପୂରେ ଉଲ୍ଲେଖ କରିଛନ୍ତି—

'ଚଳତ୍ୟଚଳହନ୍ନିଭେ ରଥବରେ ନଦଦ୍ଦୁନ୍ଦୁଭୌ
ସ୍ଫୁଟଂ କଟକଟାୟିତଂ ଦଧତି ଚକ୍ରଚକ୍ରେ ସ୍ୱନମ୍ ।
ହରେ ଜୟ ଜୟ ପ୍ରଭୋ ତରୁଣ ପୁଣ୍ଡରୀକେକ୍ଷଣ—
କ୍ଷଣଂ ବିତନୁତାଂ ସତାମିତି ଜନସ୍ୟ କୋଲାହଲଃ ॥

ଗୁଣ୍ଡିଚା ଶତକରେ କବିରାଜ ଭଗବାନ ବ୍ରହ୍ମା କହିଛନ୍ତି—

ଅଖଣ୍ଡମହିମାଭୂତବୋ ଭରତଖଣ୍ଡ ସୀମାସ୍ଥସ୍ଥଃ
ପୟଃପତିତଟୀଭୁବଃ ସୁକୃତକାଃସପତ୍ନୋଦୟଃ ।
ପୁନର୍ନ୍ନକଲୁକ୍ଷାଂ କାମପି ବୈଭବଂ ଚକ୍ଷୁଷାଂ
ହରେଃ ଷ୍ଟୁବରୁ ମାନସେ ମମ ସ କୋଽପି ଯାତ୍ରୋତ୍ସବଃ ॥

ରଥଯାତ୍ରା ପରେ ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ହରିଶୟନୋତ୍ସବ ପାଳିତ ହୁଏ । ସେଦିନ ଚତୁର୍ଥ ପ୍ରହରର ପୂଜା ପରେ ଚିତ୍ରମୂର୍ତ୍ତିଙ୍କ ପାଖରୁ ବିଜୟ ପ୍ରତିମାଙ୍କୁ ନାନାବିଧ ଉପହାର ଦିଆଯାଏ । ପ୍ରାସାଦର ଦକ୍ଷିଣେଶ୍ୱରଗୃହ ସୁସଜ୍ଜିତ ମଣ୍ଡପକୁ ନିଆଯାଇ ସେଠାରେ ଦୋଳାରେ ଥିବା ପେଟିକାରେ ତିନି ଠାକୁରଙ୍କୁ ବନ୍ଦ କରି ନିକଟସ୍ଥ ଗୃହରେ ପାଞ୍ଚ ମାସ ପର୍ଯ୍ୟନ୍ତ ସଂରକ୍ଷିତ କରାଯାଏ । ଦ୍ୱାଦଶ ଯାତ୍ରା ମଧ୍ୟରେ 'ହରିଶୟନୋତ୍ସବ' ଅନ୍ୟତମ ।

ଝୁଲଣଯାତ୍ରା :

ଶ୍ରାବଣ ସଂକ୍ରାନ୍ତି ଦିନ ଶ୍ରୀମନ୍ଦିରରେ ଦକ୍ଷିଣାୟନ ଯାତ୍ରା ଅନୁଷ୍ଠିତ ହୁଏ । ସେଦିନ ଠାକୁରଙ୍କ ବିଶେଷ ପୂଜା ଦମନକ ଦକ୍ଷିଣାମାଳା ସମର୍ପଣ କରାଯାଏ । କିନ୍ତୁ ପ୍ରଚଳିତ ରୀତି ଅନୁଯାୟୀ 'ଝୁଲଣଯାତ୍ରା' ଏ ମାସର ମୁଖ୍ୟ ଉତ୍ସବ ରୂପେ ପାଳିତ ହେଉଥିବାର ଦେଖାଯାଏ । ଝୁଲଣ ଯାତ୍ରା 'କୁଞ୍ଜଦୋଳଯାତ୍ରା' ନାମରେ ଅଭିହିତ । ଏହି ଯାତ୍ରା ଶ୍ରାବଣ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ଠାରୁ ଭାଦ୍ରମାସ କୃଷ୍ଣ ଦ୍ୱିତୀୟା ତିଥି ପର୍ଯ୍ୟନ୍ତ ପାଳିତ ହୋଇଥାଏ ।

"ଶ୍ରାବଣେ ଶୁକ୍ଳପକ୍ଷେତୁ ଦ୍ୱିତୀୟାୟାଂ ବିଶେଷତଃ ।
କୁଟେଞ୍ଜ ହିନ୍ଦୋଳସ୍ୟୋତ୍କୃଷ୍ଟଂ ପ୍ରେମଭକ୍ତ୍ୟର୍ଥ ସିଦ୍ଧୟେ ।

× × ×

ଶ୍ରାବଣସ୍ୟ ସିତେ ପକ୍ଷେ ଦ୍ୱିତୀୟାୟାଂ ଭବେତ୍ସଦା,
ଯାବତ୍ କୃଷ୍ଣଦ୍ୱିତୀୟାଚ ତାବତ୍ଯାତ୍ରା ଭବେଦ୍ହରେ ।"

ସନ୍ଧ୍ୟା କାଳରେ ଶ୍ରୀବିଗ୍ରହଙ୍କ ବିଜୟ ପ୍ରତିମାଙ୍କୁ ବିମାନରେ ନେଇ ଏକବାର କୁଞ୍ଜଗୃହ ପ୍ରଦକ୍ଷିଣ କରାଇବା ପରେ ଦୋଳାରେ ବସାଇ ଦିଆଯାଏ । ପ୍ରତିଦିନ ନାନାବିଧ ଗୀତବାଦ୍ୟ ମହୋତ୍ସବ ଅନୁଷ୍ଠିତ ହୁଏ । ଦୋଳାରେ ଠାକୁରଙ୍କ ପୂଜା ଓ ଆଳତି ପରେ ଏବଂ ଯାତ୍ରା ଶେଷରେ ମନ୍ଦିରରେ ବିଜେ କରାଯାଏ ।

ନୀଳାଦ୍ରି ମହୋଦୟର ଊନବିଂଶ ଅଧ୍ୟାୟରେ ଶ୍ରାବଣ ପୂର୍ଣ୍ଣିମା ଦିବସଟି ଶ୍ରୀବଳଭଦ୍ର ଦେବଙ୍କ ଜନ୍ମଦିବସ ରୂପେ ବର୍ଣ୍ଣିତ ହୋଇଛି । ସେଦିନ ବଳଭଦ୍ରଙ୍କ ସମ୍ମୁଖରେ କଳସ ସ୍ଥାପନ ପୂର୍ବକ ଷଷ୍ଠୀଦେବୀ, ମାର୍କଣ୍ଡ, ସପ୍ତଚିରଞ୍ଜୀବୀ (ଅଶ୍ୱତ୍ଥାମା, ବଳି, ବ୍ୟାସ, ହନୁମାନ, ବିଭୀଷଣ, କୃପ, ପରଶୁରାମ) ତିଥି, ରାଶି, ନକ୍ଷତ୍ର, ସପ୍ତର୍ଷି ପ୍ରଭୃତିଙ୍କୁ ପୂଜା କରାଯାଏ । ଝୁଲଣ ଯାତ୍ରାର ଏକ ମନୋରମ ଆଲେଖ୍ୟ କବି ବେଣୁଧରଙ୍କ ପଦ୍ୟାବଳୀରେ ରୂପାୟିତ ହୋଇଥିବାର ଦେଖାଯାଏ ।

କୁଞ୍ଜେ ଝୁଲନ୍ତି ରଙ୍ଗେ କୁଞ୍ଜବିହାରୀ ।
ବାମେ ବାମା ଶ୍ରୀମତୀ ନବକିଶୋରୀ ଯେ ।।
ଆହା କି ଶୋଭା ବୃନ୍ଦାବନ ମାଧୁରୀ ।
ଚଉପାଶେ ଅଛନ୍ତି ବ୍ରଜନାଗରୀ ଯେ ।।
ନାନା ରଙ୍ଗେ ମଣ୍ଡିତ ଝୁଲଣ କୁଞ୍ଜ ।
ଫୁଟି ଉଡ଼ି ପଡ଼ୁଛି କୁସୁମ ରଜ ଯେ ।।

× × ×

ସଙ୍ଗୀତ ତାନେ ଚିତ୍ତ ହୁଏ ମୋହିତ ।
ନାନା ରାଗ ରାଗିଣୀ ମଙ୍ଗଳ ଗୀତ ।।
ସ୍ୱର୍ଗୁ ଅପସର ଏ କୁସୁମାଞ୍ଜଳି ।
ରାଧା ମାଧବ ଶିରେ ଦିଅନ୍ତି ଢାଳି ।।
ସଖୀଗଣେ ଭକତ ଅଛନ୍ତି ରହି ।
ସେ ଶୋଭା ବେଣୁଧର ଦେଖିବ କାହିଁ ।।

## ଜନ୍ମାଷ୍ଟମୀ :

ଭାଦ୍ରମାସ ରୋହିଣୀ ନକ୍ଷତ୍ରଯୁକ୍ତ କୃଷ୍ଣ ଅଷ୍ଟମୀରେ ଜନ୍ମାଷ୍ଟମୀ ପର୍ବ ପାଳିତ ହୁଏ । ଏହାର ଅନ୍ୟ ନାମ ଜୟନ୍ତୀ ।

ଅଷ୍ଟମୀ କୃଷ୍ଣପକ୍ଷସ୍ୟ ରୋହିଣୀଋକ୍ଷସଂଯୁତା ।
ଭବେତ୍ ପ୍ରୌଷ୍ଠପଦେ ମାସି ଜୟନ୍ତୀ ନାମ ସା ସ୍ମୃତା ।।

ବିଷ୍ଣୁଧର୍ମୋତ୍ତର, ଭବିଷ୍ୟ ପୁରାଣ, ଅଗ୍ନି ପୁରାଣରେ ଉଲ୍ଲେଖ ଅନୁସାରେ ରୋହିଣୀ-ଯୁକ୍ତା କୃଷ୍ଣାଷ୍ଟମୀ ସର୍ବ ପାପହରା ତିଥି ରୂପେ ବର୍ଣ୍ଣିତ ହୋଇଛି । ଏହି ତିଥିରେ ଜଗନ୍ନାଥ ଶ୍ରୀକୃଷ୍ଣ ନିଶାର୍ଦ୍ଧରେ ଜନ୍ମଗ୍ରହଣ କରିଥିବାରୁ ଏହାର ନାମ ଜୟନ୍ତୀ ବା 'ଶ୍ରୀକୃଷ୍ଣ ଜୟନ୍ତୀ' ରୂପେ ଅଭିହିତ । ଏ ସମ୍ବନ୍ଧରେ ଶାସ୍ତ୍ରୀୟ ପ୍ରମାଣ ନିମ୍ନମତେ ଉଲ୍ଲେଖ କରାଯାଇପାରେ—

"ରୋହିଣୀ ସହିତା କୃଷ୍ଣା ମାସି ଭାଦ୍ରପଦେଽଷ୍ଟମୀ ।
ଅର୍ଦ୍ଧରାତ୍ରାଦଧଶ୍ଚୋର୍ଦ୍ଧ୍ୱଂ କଳୟାପି ଯଦା ଭବେତ୍ ।।
ତତ୍ର ଜାତୋ ଜଗନ୍ନାଥଃ କୌସ୍ତୁଭୀ ହରିରବ୍ୟୟଃ ।
ତମେବୋପବସେତ୍‌କାଳଂ କୁର୍ଯ୍ୟାତ୍ତତ୍ରୈକ ଜାଗରମ୍ ।।
ଜୟନ୍ତୀ ନାମ ସା ରାତ୍ରି ଯତ୍ର ଜାତୋ ଜନାର୍ଦ୍ଦନଃ ।
ଜୟନ୍ତ୍ୟାମ୍ପି ଶୁଚିଃ ସ୍ନାତ୍ୱା ପୂଜାଂ ତତ୍ର ପ୍ରବର୍ତ୍ତୟେତ୍ ।"

ଶ୍ରୀମନ୍ଦିରରେ ଗର୍ଭରେ ବାଲୁକାକୋଷ୍ଠୀ ମଧ୍ୟସ୍ଥ ପଦ୍ମ ଉପରେ ଯଥାବିଧି ବଳଭଦ୍ରାଦିଙ୍କ ପୂଜା କରାଯାଏ । ଚନ୍ଦ୍ରୋଦୟ କାଳରେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଜନ୍ମୋତ୍ସବ ପାଳିତ ହୁଏ । ଶ୍ରୀକୃଷ୍ଣଙ୍କ ପୂଜା ପରେ ଚନ୍ଦ୍ରାର୍ଘ୍ୟ ଦାନ ଓ ଯାତ୍ରାଦି ଅନୁଷ୍ଠିତ ହୁଏ । ଜନ୍ମାଷ୍ଟମୀ ଦିନ ବ୍ରତଗୃହୀମାନେ ଶ୍ରୀକୃଷ୍ଣଜନ୍ମାବଧି ଉପବାସ କରନ୍ତି ଏବଂ ରାତ୍ରରେ ଗୀତନୃତ୍ୟ ଦ୍ୱାରା ଶ୍ରୀକୃଷ୍ଣଙ୍କ ବାଲ୍ୟକ୍ରୀଡ଼ା ସ୍ମରଣ ପୂର୍ବକ ଉଜାଗର ରହନ୍ତି ।

ନୀଳାଦ୍ରି ମହୋଦୟର ଉଲ୍ଲେଖ ଅନୁସାରେ ଜନ୍ମାଷ୍ଟମୀ ଦିନ ତିନି ଠାକୁରଙ୍କ ସ୍ନାନାଦି ନିତ୍ୟକର୍ମ ପରେ ସନ୍ଧ୍ୟାରେ ବସ୍ତ୍ରଦ୍ୱାରା ସୂତିକା ଗୃହ ପରିକଳ୍ପିତ ହୁଏ । ସେଠାରେ ସପ୍ତବିଂଶତି ଅଙ୍ଗୁଳି ପରିମିତ ଚତୁରସ୍ର ସର୍ବତୋଭଦ୍ର ମଣ୍ଡଳରେ ଛତିଶଟି କୋଠି ସହିତ ମଧ୍ୟଭାଗରେ ପଦ୍ମାକୃତି ଅଙ୍କନ କରାଯାଏ । କୋଠିଗୁଡ଼ିକ ନାନାରଙ୍ଗ ମୁରୁଜରେ ଚର୍ଚ୍ଚିତ ହୁଏ । ଏହି ମଣ୍ଡଳରେ ଯଥାବିଧି ଶ୍ରୀକୃଷ୍ଣ ଜନ୍ମୋତ୍ସବ ପାଳିତ ହୁଏ—

"ଦାରୁବ୍ରହ୍ମ କଳେବରସ୍ୟ ରୁଚସ୍ୟୋ ଲକ୍ଷ୍ମୀପତେଃ ସାଦରଂ
ନାନାକର୍ମ ନିକେତନସ୍ୟ କରୁଣାସିନ୍ଧୋଶ୍ଚ ନୀଳାଚଳେ ।
ଇନ୍ଦ୍ରଦ୍ୟୁମ୍ନମହୀପତିଂ ପ୍ରତି ତଦା ଯାତ୍ରାଷ୍ଟ କଳ୍ପାନ୍ନସୌ
ବ୍ରହ୍ମା କୃଷ୍ଣ ସମୁଦ୍‌ଭବୋତ୍ସବମିଦଂ ବକ୍ତୁଂ ସମିଚ୍ଛନ୍ନୂନଃ"॥

ଶ୍ରୀକୃଷ୍ଣ ଜନ୍ମ ପରେ ହରିଦ୍ରା ଜଳରେ ପାଦପ୍ରକ୍ଷାଳନ, ଆୟୁର୍ବେଦୀୟ ରୀତିରେ ପ୍ରସ୍ତୁତ ବଟିକା ସମର୍ପଣ କରାଯାଏ । ଏହାପରେ କୃଷ୍ଣଙ୍କୁ ସପ୍ତଫେଣାଚ୍ଛନ୍ନ ପୂର୍ବକ କଳ୍ପିତ ଯମୁନା ପାରହୋଇ ଉତ୍ତର ପାର୍ଶ୍ୱରେ ନିର୍ମିତ ମଣ୍ଡପରେ ଶ୍ରୀକୃଷ୍ଣଙ୍କ ନାଡ଼ିଚ୍ଛେଦନାଦି କାର୍ଯ୍ୟପରେ ଷଷ୍ଠୀଦେବୀ ପୂଜା, ନାମକରଣ, ବହିର୍ନିଷ୍କ୍ରମଣ, ଅନ୍ନପ୍ରାଶନ, ଚୂଡ଼ାକରଣ, କର୍ଣ୍ଣବେଧ, ଯଜ୍ଞୋପବୀତ ଗ୍ରହଣାଦି ବିଧିମାନ ଅନୁଷ୍ଠିତ ହୁଏ । ଏହା ପରେ ରାମ ଓ କୃଷ୍ଣଙ୍କୁ ଦୋଳାରେ ଶୟନ କରାଯାଏ । ନବମୀ ଦିନ ଦୁର୍ଗାଙ୍କ ଜନ୍ମ ନିମିତ୍ତ ସୁଭଦ୍ରାଙ୍କୁ ପ୍ରାର୍ଥନା କରାଯାଏ ଏବଂ ଯଥାବିଧି ଯଶୋଦା ଗର୍ଭ-ସମ୍ଭୂତା ସୁଭଦ୍ରାଙ୍କ ସ୍ନାନ, ଉପସ୍କର ବିଦାପନାଦି କାର୍ଯ୍ୟ ଅନୁଷ୍ଠିତ ହୁଏ । ଏହି ନବମୀ ଦିନ ଶ୍ରୀମନ୍ଦିରରେ ନନ୍ଦୋତ୍ସବ ପାଳିତ ହୁଏ ।

ପରବର୍ତ୍ତୀ ଶୁକ୍ଳ ଏକାଦଶୀରେ ପାର୍ଶ୍ୱପରିବର୍ତ୍ତନୋତ୍ସବ ଅନୁଷ୍ଠିତ ହୁଏ । ସେଦିନ ଚବିଶଟି ବର୍ତ୍ତିକା ଦ୍ୱାରା ଶୟନ ମନ୍ଦିରକୁ ଆଳତି କରି ପେଟିସ୍ଥିତ ତିନିଠାକୁରଙ୍କର ପାର୍ଶ୍ୱପରିବର୍ତ୍ତନ କାର୍ଯ୍ୟ ସମାହିତ ହୁଏ । ଦ୍ୱାଦଶ ଯାତ୍ରା ମଧ୍ୟରେ ପାର୍ଶ୍ୱପରିବର୍ତ୍ତନ ଅନ୍ୟତମ ଉତ୍ସବରୂପେ ପାଳିତ ହୋଇଥାଏ । କିନ୍ତୁ ଦ୍ୱାଦଶଯାତ୍ରାର ଅନ୍ତର୍ଗତ ହୋଇ ନଥିଲେ ମଧ୍ୟ ଭାଦ୍ରମାସରେ ଜନ୍ମାଷ୍ଟମୀ ଉତ୍ସବଟି କେବଳ ଶ୍ରୀମନ୍ଦିରରେ କାହିଁକି ସମଗ୍ର ଭାରତରେ ଅଧିକ ଉତ୍ସାହର ସହିତ ପାଳିତ ହୋଇଆସୁଛି ।

## ବିଜୟା ଦଶମୀ :

ଆଶ୍ୱିନ ମାସ ଶୁକ୍ଳପକ୍ଷ ଦଶମୀରେ ବିଷ୍ଣୁଙ୍କର ବିଜୟୋତ୍ସବ ପାଳନ କରାଯାଏ—

"ଆଶ୍ୱିନସ୍ୟ ସିତେ ପକ୍ଷେ ଦଶମ୍ୟାଂ ବିଜୟୋତ୍ସବଃ ।
ବିଷ୍ଣୁଂ ସଂପୂଜୟେତ୍ତତ୍ର ବୈଷ୍ଣବା ବିଜୟାର୍ଥିନଃ ॥"

ଦଶମୀଦିନ ସକାଳେ ସ୍ନାନାଦି କ୍ରିୟା ସମାପନାନ୍ତେ ଦେବୀଙ୍କ ସହିତ ଶସ୍ତ୍ର ଓ ଶାସ୍ତ୍ରାଦିର ଶୁଭଲଗ୍ନରେ ଅଭ୍ୟର୍ଥନା କରାଯାଏ । ନବବସ୍ତ୍ର କଜ୍ଜଳ, ସିନ୍ଦୂର, ଅଳଙ୍କାର ଗନ୍ଧପୁଷ୍ପାଦି ଦ୍ୱାରା ଦେବୀଙ୍କ ପୂଜା କରିବା ପରେ ଯାତ୍ରା ମଣ୍ଡପରେ କୃଷ୍ଣଙ୍କୁ ସ୍ଥାପନ କରି ପୀଠ ଉପରେ ହରିଦ୍ରା ଓ ଅକ୍ଷତ ଦ୍ୱାରା ଅପରାଜିତା, ବିଜୟା ଓ ଜୟା ଦେବୀ ଲିପି ଉଲ୍ଲେଖ କରାଯାଏ । ବରୁଣ ପୂଜା ପୂର୍ବକ ସ୍ୱସ୍ତିବାଚନ ଓ ସଙ୍କଳ୍ପକରି ଅପରାଜିତାଙ୍କୁ ପୂଜା କରାଯାଏ । ଶ୍ରୀକୃଷ୍ଣଙ୍କ ପୂଜା ଓ ମଙ୍ଗଳାରୋପଣ ପରେ ଅପରାଜିତା ବଲ୍ଲୀଦ୍ୱୟ କୃଷ୍ଣଙ୍କ ହାତରେ ବାନ୍ଧି ଆଳତି କରାଯାଏ ।

ଏହା ପରେ ଅଶ୍ୱପୂଜା ଅନୁଷ୍ଠିତ ହୁଏ । ଯଥାବିଧି ମଙ୍ଗଳାରୋପଣ ପରେ ରାଜାଙ୍କ ହାତରେ ପୂଜିତ ଅପରାଜିତା ବଲ୍ଲୀଦ୍ୱୟ ମନ୍ତ୍ରପାଠପୂର୍ବକ ବନ୍ଧାଯାଏ । ହୋମାଦି କୃତ୍ୟ ପରେ ପୂଜିତ କଳସ ଜଳରେ ରାଜାଙ୍କୁ ମାର୍ଜନା କରାଯାଏ । ତା'ପରେ କୃଷ୍ଣ ଓ ଦେବୀଙ୍କୁ ବିମାନରେ ବସାଇ ଖଡ୍ଗ ସହିତ ମନ୍ଦିରର ବହିର୍ଭାଗରେ ଥିବା ମଣ୍ଡପରେ ସ୍ଥାପନ କରାଯାଏ । ପୂଜକ ଦେବୀଙ୍କ ପାଖରେ ଖଡ୍ଗ ରଖି ଦୁର୍ଗାଙ୍କୁ ପୂଜା କରନ୍ତି ଏବଂ ପଞ୍ଚବସ୍ତ୍ରରେ ମୟୂର ଦୁଇଟିର ଚିହ୍ନକରି ଲକ୍ଷ୍ୟଦ୍ୱାରା ମୟୂର ଚକ୍ଷୁଦ୍ୱୟ ଶରବିଦ୍ଧ କରାଯାଏ । ଏହାପରେ ଦେବୀଙ୍କୁ ଧରି ଚତୁର୍ଦିଗକୁ ଶର ନିକ୍ଷେପ କରାଯାଏ । ତତ୍ପରେ ଦେବୀଙ୍କୁ ଓ କୃଷ୍ଣଙ୍କୁ ମନ୍ଦିରକୁ ଫେରାଇ ନିଆଯାଏ । ଏହି ଦଶମୀ ତିଥିକୁ ଅନ୍ୟଥା ଅପରାଜିତା ଦଶମୀ ନାମରେ ନାମିତ କରାଯାଇଛି ।

ନୀଳାଦ୍ରି ମହୋଦୟର ଉଲ୍ଲେଖ ଅନୁସାରେ ଶ୍ରୀମନ୍ଦିରରେ ବିଜୟୋତ୍ସବ ଆଶ୍ୱିନ ମାସ କୃଷ୍ଣାଷ୍ଟମୀଠାରୁ ଶୁକ୍ଳ ନବମୀ ପର୍ଯ୍ୟନ୍ତ ସପ୍ତଦଶ ଦିବସାବଧି ପାଳିତ ହୁଏ । ଉତ୍ସବର ଆରମ୍ଭ ଦିନ ପ୍ରାତଃକାଳୀନ ଅର୍ଚ୍ଚନା ପରେ ସୁଭଦ୍ରାଙ୍କୁ ପ୍ରାର୍ଥନାପୂର୍ବକ ଅଙ୍ଗଲଗି ମାଳା ନେଇ ପ୍ରାସାଦ ପୂର୍ବଭାଗରେ ଥିବା ସୁଶୋଭିତ ମଣ୍ଡପରେ ଦୁର୍ଗାଙ୍କ ପୂଜା ଅନୁଷ୍ଠିତ ହୁଏ । ଅଷ୍ଟୋତ୍ତରଶତ କୁମ୍ଭ ଜଳରେ ବନଦୁର୍ଗାଙ୍କୁ ସ୍ନାନ ଏବଂ ନବୀନ ବସନଭୂଷଣାଦି ଭୂଷିତ କରାଯାଇ ରତ୍ନସିଂହାସନ ପାଖକୁ ନିଆଯାଆନ୍ତି । ସେଠାରେ ଦୁର୍ଗାମାଧବଙ୍କ ପୂଜା ନିମିତ୍ତ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କରାଯାଏ । ପ୍ରଥମ ଆଠଦିନ ପୂର୍ବଦିଗରେ ପରବର୍ତ୍ତୀ ଆଠଦିନ ଦକ୍ଷିଣ ଦିଗରେ ପୂର୍ବୋକ୍ତ ପ୍ରକାରେ ପୂଜାବିଧି

ଅନୁଷ୍ଠିତ ହୋଇଥାଏ । ଦଶମୀଦିନ ଠାକୁରଙ୍କ ବନ୍ଦାପନାର ପାଳନ ନିମିତ୍ତ ପ୍ରାର୍ଥନା । କରାଯାଏ—

"ବଳଭଦ୍ର ନମସ୍ତେଽସ୍ତୁ ନମସ୍ତେ ମୁଷଳାୟୁଧ ।
ରାମମାଜ୍ଞାପୟ ଦେଵେ ଦଶମ୍ୟାଂ ଉତ୍ସବାୟ ତେ ॥

× × ×

ଚତୁର୍ଥ୍ୟାଂ ଚ ଦଶମ୍ୟାଂ ବୈ ହ୍ୟୁତ୍ସବାୟ ଜନାର୍ଦ୍ଦନ ।
ଆଜ୍ଞାପୟ ଜଗନ୍ନାଥ ଜଗତଃ ହିତକାରଣାତ୍ ॥

× × ×

ହଶତ୍ରାବର୍ଣ୍ଣି ରୂପରେ ଭଦ୍ରେ ଭଦ୍ରପଦେ ଶୁଭେ ।
ଉତ୍ସବାୟ ଦଶମ୍ୟାଂ ତାଂ ଦୁର୍ଗାମାଜ୍ଞାପୟେଶ୍ୱରୀମ୍" ॥

ଏହାପରେ ଠାକୁରମାନଙ୍କ ଦେହଲଗି ମାଳା ଆଣି ବଜାର ପ୍ରଭୃତିଙ୍କୁ ଦିଆଯାଏ ଏବଂ ନୃତ୍ୟଗୀତ ବାଦ୍ୟାଦିଦ୍ୱାରା ମନ୍ଦିର ପ୍ରଦକ୍ଷିଣ ପରେ ବନ୍ଦାପନାଦିଦ୍ୱାରା ଉତ୍ସବ ସମାହିତ ହୋଇଥାଏ ।

ରାସପୂର୍ଣ୍ଣିମା :

• କାର୍ତ୍ତିକ ମାସର ଏକାଦଶୀଠାରୁ ପୂର୍ଣ୍ଣିମାବଧି ଶ୍ରୀଜଗନ୍ନାଥଙ୍କ ରାସୋତ୍ସବ ପାଳିତ ହୁଏ ।

"କାର୍ତ୍ତିକେ ମାସି ସମ୍ପ୍ରାପ୍ତେ ଯା ଶୁକ୍ଳୈକାଦଶୀ ଭବେତ୍ ।
ରାସୋତ୍ସବୋ ଭବେତ୍ତତ୍ର ବର୍ଷେ ବର୍ଷେ ମହାମୁନେ" ॥

ଏହି ପଞ୍ଚଦିବସାବଧି ଉତ୍ସବ 'ଭୀଷ୍ମପଞ୍ଚକ' ନାମରେ ଅଭିହିତ ହୋଇଥିବାର 'ପଦ୍ମପୁରାଣ'ରୁ ଜଣାଯାଏ—

"ଶୁକ୍ଳୈକାଦଶୀ ମାରଭ୍ୟ ଯାବତ୍ପଞ୍ଚଦଶୀ ଭବେତ୍ ।
ଭୀଷ୍ମପଞ୍ଚକମେତଦ୍ଧି ତସ୍ମିନ୍ ରାସୋତ୍ସବୋ ଭବେତ୍" ॥

ରାସୋତ୍ସବର ପ୍ରଶସ୍ତି ସ୍କନ୍ଦ ପୁରାଣରେ ବର୍ଣ୍ଣିତ ହୋଇଛି—

"ରାସୋତ୍ସବ ପଞ୍ଚଦିନଂ ଚ କାର୍ଯ୍ୟଂ ।
ପ୍ରତ୍ୟବ୍ଦକେ କାର୍ତ୍ତିକ ଶୁକ୍ଳପକ୍ଷେ ॥
କଦାପି ନୈବ କ୍ଷୟବୃଦ୍ଧି କାର୍ଯ୍ୟଂ ।
ଭକ୍ତ୍ୟା ସଦା ପଞ୍ଚଦିନଂ ହି କୁର୍ଯ୍ୟାତ୍" ॥

ଉକ୍ତ ପଞ୍ଚଦିନାବଧି ଉତ୍ସବ ମଧ୍ୟରେ କାର୍ତ୍ତିକମାସ ଶୁକ୍ଳ ଏକାଦଶୀ ତିଥିଟି ଶ୍ରୀଜଗନ୍ନାଥଙ୍କ ଉତ୍ଥାପନ ଉତ୍ସବ ରୂପେ ପାଳିତ ହୁଏ—

"ମାସାନାଂ ପ୍ରବରେ ମାସି କାର୍ତ୍ତିକେ ପୁଣ୍ୟବର୍ଦ୍ଧନେ ।
ଏକାଦଶ୍ୟାଂ ଚ ଶୁକ୍ଳାୟାଂ ଲକ୍ଷ୍ମୀଦାମୋଦରସ୍ୟ ବୈ ॥"

ନିତ୍ୟପୂଜା, ଆରତ୍ରିକ, ବନ୍ଦାପନାଦି ପରେ ତିନିଠାକୁରଙ୍କର ମହାସ୍ନାନ କରାଯାଏ । ମଧ୍ୟାହ୍ନ ପୂଜା ଓ ଚତୁର୍ଥ ପ୍ରହର ଶେଷରେ ଶୟନ ମନ୍ଦିରର ଦ୍ୱାର ଉଦ୍‌ଘାଟିତ ହୁଏ । ନାନାଦି ବାଦ୍ୟଧ୍ୱନି, ସ୍ତୁତି ଓ ପ୍ରାର୍ଥନା ମଧ୍ୟରେ ଠାକୁରଙ୍କୁ ନୃତ୍ୟ ମଣ୍ଡପରେ ସ୍ନାନ, ଚନ୍ଦନଲେପନ ଓ ନାନାଦି ଉପଚାରରେ ପୂଜା କରାଯାଏ ।

ଦ୍ୱାଦଶୀ ତିଥିରେ ଉତ୍ଥାପନ ଉତ୍ସବ ଯଥାବିଧି ପାଳିତ ହୁଏ । ପୂର୍ଣ୍ଣିମା ଦିନ ଲକ୍ଷ୍ମୀ ଦାମୋଦରଙ୍କ ପୂଜା ପରେ ନାରାୟଣ ପ୍ରତିକୃତି ନେଇ ଶ୍ରୀଜଗନ୍ନାଥଙ୍କ ଠାରେ ଦୀପୋତ୍ସବ ନିମିତ୍ତ ପ୍ରାର୍ଥନା କରାଯାଏ । ସେହି ପ୍ରତିକୃତି ସହିତ କ୍ଷେତ୍ର ପରିକ୍ରମାରେ ମାର୍କଣ୍ଡେୟେଶ୍ୱର, ମୁକ୍ତେଶ୍ୱର, ବଟଗଣେଶ ପ୍ରଭୃତିଙ୍କୁ ସ୍ତୁତିକରି ଶ୍ରୀ ଜଗନ୍ନାଥଙ୍କ ଠାରେ ଏକୋଇଶଟି ବର୍ତ୍ତିକାଯୁକ୍ତ ପ୍ରଜ୍ୱଳିତ ଦୀପ ଉତ୍ସର୍ଗ କରାଯାଏ । ଦ୍ୱାଦଶଯାତ୍ରା ଅନ୍ତର୍ଗତ 'ଦେବୋତ୍ଥାପନ ଉତ୍ସବ' କାର୍ତ୍ତିକ ମାସରେ ପାଳିତ ହେଉଥିଲେ ମଧ୍ୟ ଶ୍ରୀମନ୍ଦିରରେ 'ରାସୋତ୍ସବ'ର ଅଧିକ ପ୍ରାଧାନ୍ୟ ଥିବାର ମନେ ହୁଏ । 'ଶରତ୍ ରାସ' ଗ୍ରନ୍ଥ ବର୍ଣ୍ଣିତ ସୁଲଳିତ ପଦାବଳୀଯୁକ୍ତ ଶ୍ଳୋକାବଳୀ ମଧ୍ୟରୁ ମାତ୍ର କେତୋଟିର ପ୍ରାସଙ୍ଗିକ ଉଦାହରଣ ଉପସ୍ଥାପିତ କରାଯାଇଛି—

କାଳିନ୍ଦୀ ବିପିନେ ହିରଣ୍ୟଭୁବନେ ଶ୍ରୀରତ୍ନବେଦୀସ୍ଥଳେ
ପୂର୍ଣ୍ଣଂ ବ୍ରହ୍ମସନାତନଂ ହୃଦଗତେ ରାସକ୍ରୀଡ଼ା ଚିନ୍ମୟମ୍ ।
ନାନା ଭୂଷଣ ଭୂଷିତଂ ସୁମନସା ବଂଶୀ କରେ ଧାରଣଂ
ରାସୋଲ୍ଲାସ ମହୋତ୍ସବଂ ମଧୁରିପୁଃ କୋଟିସ୍ମରୋ ମୂର୍ତ୍ତିମାନ୍ ॥

× × ×

ରାସୋଲ୍ଲାସ ମହୋତ୍ସବଂ ସୁରୁଚିରଂ ଗୋବିନ୍ଦଗୋପୀଗଣେ
ଦୃଷ୍ଟ୍ୱା ଦୁନ୍ଦୁଭିବାଦନଂ ସୁରପୁରେ ଦତ୍ତ୍ୱା ତୁ ପୁଷ୍ପାଞ୍ଜଳୀ ।
ଭୃଙ୍ଗଭେରୀଧ୍ୱନି ତଦା ପଞ୍ଚବୃନ୍ଦଂ କେକୀଗଣୈର୍ଗାୟନଂ
ସତ୍‌ପ୍ରେମା ଶରଦିନ୍ଦୁସୁନ୍ଦରମୁଖୀଭାବେ ବଶୋ ମାଧବଃ ॥

**ପ୍ରାବରଣ ଉତ୍ସବ :**

ମାର୍ଗଶିର ମାସର ଶୁକ୍ଳ ପକ୍ଷ ଷଷ୍ଠୀ ତିଥିରେ ପ୍ରାବରଣୋତ୍ସବ ଅନୁଷ୍ଠିତ ହୁଏ—

"ତତଃ ଷଷ୍ଠୀ ଦିନେ ପ୍ରାତଃ ପୂଜାନନ୍ତରତୋ ହରେଃ ।
ନବ୍ୟାଂଶୁକାର୍ପଣଂ କୁର୍ଯ୍ୟାଦଭିଷବ ସମନ୍ୱିତଃ ॥"

ପୂର୍ବଦିନ ଚତୁର୍ଥ ପ୍ରହର ପୂଜା ପରେ ଚଉଷଠି ପ୍ରକାର ଉପଚାର ଦ୍ୱାରା ତିନି ଠାକୁରଙ୍କ ପୂଜା କରାଯାଏ । ତା'ପରେ ମହାସ୍ନାନ, ଗନ୍ଧତୈଳଲେପନ, ପରିଧାନ, ଉତ୍ତରୀୟାଦି ସମର୍ପଣ ପରେ ସମ୍ମୁଖରେ ଅଷ୍ଟଦଳ ପଦ୍ମତ୍ରୟ ଅଙ୍କିତ ହେବ ଏବଂ ପ୍ରତ୍ୟେକ ପଦ୍ମରେ ଶୁକ୍ଳ, ରକ୍ତ, କୃଷ୍ଣ ବସନମାନ ସଜ୍ଜିତ ହୁଏ । ତିନି ଠାକୁରଙ୍କ ଆଗରେ ଥିବା ପାତ୍ରରେ ସାତଟି କରି ନୂତନ ଶୁକ୍ଳ ଓ ରଞ୍ଜିତ ରଙ୍ଗର ଏକୋଇଶ ଖଣ୍ଡ ନୂତନ ବସ୍ତ୍ର ଅଙ୍ଗାବରଣ ନିମନ୍ତେ ଯଥାବିଧି ସଂରକ୍ଷିତ ହୁଏ । ଏହାପରେ ଅଧିବାସରେ ତିନି ଠାକୁରଙ୍କ ସହିତ ଗଣେଶ, ଦିକ୍‌ପାଳ, କ୍ଷେତ୍ରପାଳ, ମହାଦେବ ଓ ଦୁର୍ଗାଙ୍କୁ ପୂଜା କରାଯାଏ ।

ତତ୍ପରଦିନ ପ୍ରାତଃ ପୂଜାନନ୍ତର ନବବସ୍ତ୍ର, ଅଧିବାସିତ ଦ୍ରବ୍ୟାଦି ତିନି ଠାକୁରଙ୍କୁ ସମର୍ପିତ ହୁଏ । ଏହାପରେ ପୂଜକଗଣ ଘଣ୍ଟାଦି ବାଦ୍ୟ ସହିତ ତିନି ଥର ମନ୍ଦିର ପରିକ୍ରମା କରିବା ପରେ ଆଚ୍ଛାଦିତ ପୂର୍ବ ବସ୍ତ୍ର ଠାକୁରଙ୍କ ଦେହରୁ ବାହାର କରି ନୂତନ ବସ୍ତ୍ର ଦିଆଯାଏ । ପରେ ପରେ ନାନାବିଧ ଅଳଙ୍କାର, ମାଲ୍ୟାଦି ପ୍ରଦାନ ଓ ବନ୍ଦାପନା କରାଯାଏ । ସେଦିନ ନାନାପ୍ରକାର ପିଠା ଭୋଗ ଦିଆଯାଏ । ମୋକ୍ଷପ୍ରାର୍ଥୀଙ୍କ ଏ ଉତ୍ସବ ଦର୍ଶନୀୟ ।

"ଏତତ୍ ପ୍ରାବରଣୋତ୍ସବଂ ଚ କୁରୁତେ ଯୋ ବା ମୁଦା ପଶ୍ୟତି ।
କ୍ଷିପ୍ରଂ ସର୍ବମନୋରଥଂ ଚ ଲଭତେ ପୁତ୍ରପ୍ରପୌତ୍ରୈଃ ସମମ୍ ॥
ଅନ୍ତେ ବିଷ୍ଣୁପୁରଂ ବ୍ରଜେତ୍ ସ ତୁ ପୁନସ୍ତତ୍ରୈବ ଲବ୍ଧ୍ୱା ପରଂ
ଜ୍ଞାନଂ ମୋକ୍ଷମନନ୍ୟ ଲଭ୍ୟମମରୈସ୍ତଦ୍ ବାଞ୍ଛନୀୟଂ ବ୍ରଜେତ୍ ॥

ଯାତ୍ରା ଭାଗବତରେ ମଧ୍ୟ ଅନୁରୂପ ଉଲ୍ଲେଖ ଥିବାର ଦେଖାଯାଏ—

ପ୍ରାବୃତଂ ଯେ ଚ ପଶ୍ୟନ୍ତି ଦେବଦେବଂ ସନାତନମ୍ ।
ନ ତେ ଗର୍ଭଗୃହଂ ଯାନ୍ତି ଯାବଚ୍ଚନ୍ଦ୍ରଦିବାକରୌ ॥

## ପୁଷ୍ୟାଭିଷେକ :

ପୌଷମାସ ଶୁକ୍ଳ ପୂର୍ଣ୍ଣିମା ତିଥିରେ ଶ୍ରୀଜଗନ୍ନାଥଙ୍କ ଅଭିଷେକ ମହୋତ୍ସବ ପାଳିତ ହୁଏ—

"ପୌଷେ ମାସି ସିତେ ପକ୍ଷେ ପୌର୍ଣ୍ଣମ୍ୟାଂ ରୁକ୍ମିଣୀପତେଃ ।
ପୁଷ୍ୟାଭିଷେକଂ କୁର୍ବୀତ ସର୍ବକାମାର୍ଥସିଦ୍ଧୟେ" ॥

ଶ୍ରୀଜଗନ୍ନାଥଙ୍କର ନିତ୍ୟ ପୂଜା ପରେ ନୂତନ ବସ୍ତ୍ର, ଭୂଷଣ, ଗନ୍ଧପୁଷ୍ପାଦି ଦ୍ୱାରା ଠାକୁରଙ୍କୁ ବେଶ କରାଇ ଯାଗମଣ୍ଡପକୁ ନିଆଯାଏ । ସେଠାରେ ବରୁଣ ପୂଜା ସ୍ୱସ୍ତିବାଚନ, ମଙ୍ଗଳାରୋପଣ, ଯଜ୍ଞୋପବୀତ ସମର୍ପଣ, ହୋମ, ଆରତିକାଦି ବିଧିରେ

ବଳେ ପ୍ରଥମା ଓ ତେଡ଼୍‌ଗ ପୂଜା ପରେ ଉକ୍ତ ଯଜ୍ଞେପବୀତ ପ୍ରଥମେ ଶ୍ରୀଜଗନ୍ନାଥଙ୍କୁ ଓ ପରେ ଯାହା ମଣ୍ଡପରେ ଯଥାବିଧି ଉପସ୍ଥିତ ସହିତ ରାଜାଙ୍କୁ ଅର୍ପଣ କରାଯାଏ । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ଅଭିଷେକୋତ୍ସବ ରାଜାଙ୍କ ଅଭିଷେକୋତ୍ସବ ରୂପେ ପାଳିତ ହୁଏ । ଏହି ଅଭିଷେକୋତ୍ସବ ଦର୍ଶନରେ ଲୋକ ପାପ ବିନିର୍ମୁକ୍ତ ହୋଇ ବୈଷ୍ଣବ ଧାମ ଲଭିକରିଥାଏ । ନୀଳାଦ୍ରି ମହୋଦୟ ବିବରଣୀରୁ ଜଣାଯାଏ—

"ଏବଂ ଚ ପରୟା ଭକ୍ତ୍ୟା ତୋଷୟେତ୍ପରମେଶ୍ୱରମ୍ ।
ଅଭିଷେକୋତ୍ସବଂ ଯେ ବୈ ପଶ୍ୟନ୍ତି ଭୁବି ମାନବାଃ ॥
ସର୍ବପାପ ବିନିର୍ମୁକ୍ତା ଭୁକ୍ତ୍ୱା ଶର୍ମାଖିଲଂ ପରମ୍ ।
ଦିବ୍ୟାନ୍ କାମାନ୍ ପରଂ ଲବ୍ଧା ବିଷ୍ଣୁଲୋକଂ ବ୍ରଜନ୍ତିତେ" ॥

ଏହି ଅବସରରେ ଶ୍ରୀଜଗନ୍ନାଥଙ୍କର ରାଜବେଶ ଅନୁଷ୍ଠିତ ହୁଏ । କବି ଦୀନକୃଷ୍ଣ ଦାସ ଏହି ବେଶକୁ ଲକ୍ଷ୍ୟ କରି ଗାଇଛନ୍ତି—

ଜୟ ଜୟ ଜଗନ୍ନାଥ ନୀଳଗିରି ପତି । ଅଭିନବ ଜଳଧର ସୁନ୍ଦର ମୂରତି ॥
ସୁହଞ୍ଚ ଠାଣିରେ ଶୋହେ ସୁବର୍ଣ୍ଣର ସୂତା । ଚୂଳରେ ଦସୁଣାଗନ୍ଧ କସ୍ତୁରୀର ଚିତା ॥
ଢଳ ଢଳ ଦିଶଇ ମୁକୁତା କର୍ଣ୍ଣିମାଳ । ଶ୍ରବଣପୁଟରେ ବେନି ମର୍କତ କୁଣ୍ଡଳ ॥
ନବରତ୍ନ ପଦକ ହୃଦରେ ଭଲ ସାଜେ । ମର୍କତ କଙ୍କଣ ବେନି ଭୁଜରେ ବିରାଜେ ॥

× × ×

କଳାମୁଖ ଗୋଟିକ ସୁନ୍ଦର ଚକାଡୋଳା । ପଦ୍ମଫୁଲ ଭିତରେ କି ଭୃଙ୍ଗ କରେ ଖେଳା ॥
ଭକତଜନ ସଙ୍କାଳ ମୁକତିର ଘର । ଶରଣ ମାଗଇ ଦୀନକୃଷ୍ଣ ଦାସ ଗୁରୁ ॥

## ମକରୋତ୍ସବ :

ଶ୍ରୀମନ୍ଦିରରେ ଅୟନଦ୍ୱୟ ଯାତ୍ରା ବା ଦକ୍ଷିଣାୟନ ଓ ଉତ୍ତରାୟଣ ଯାତ୍ରା ପାଳିତ ହୁଏ । ଦକ୍ଷିଣାୟନ ଯାତ୍ରା କର୍କଟ ସଂକ୍ରାନ୍ତି ଓ ଉତ୍ତରାୟଣ ଯାତ୍ରା ମକର ସଂକ୍ରାନ୍ତି ଦିନ କରିବା ବିଧି ବର୍ଣ୍ଣିତ ହୋଇଛି—

"ମିଥୁନଂ ତୁ ପରିତ୍ୟଜ୍ୟ ଯଦା କର୍କଟ ଗୋ ରବିଃ ।
ଅୟନାଖ୍ୟଂ ହରେଃ ପୂଜା କୁର୍ଯ୍ୟାନ୍ମଙ୍ଗଳ—ପ୍ରାପ୍ତୟେ ॥

× × ×

କାର୍ମୁକଂ ତୁ ପରିତ୍ୟଜ୍ୟ ମୃଗଂ ଗଚ୍ଛତି ଯଦା ରବିଃ ।
ଉତ୍ତରାୟଣେଙ୍କଃ ସ୍ୟାଦୁତ୍ସବଂ କାରୟେଦ୍ଧରେଃ" ॥

ଦକ୍ଷିଣାୟନ ପୂର୍ବ ବିଂଶତି ଘଟିକା ଓ ଉତ୍ତରାୟଣ ପରବିଂଶତି ଘଟିକା ଶୁଦ୍ଧକାଳ ରୂପେ ଗୃହୀତ ହୋଇଥିଲେ ଦୈବ ଓ ପୈତୃକ କାର୍ଯ୍ୟ ପୂର୍ବ ଦିବସରେ କରାଯାଇଥାଏ—

ଅୟନେ ବିଂଶତିଃପୂର୍ବା ମକରେ ବିଂଶତି ପରା ।
ବର୍ତ୍ତିମାନେ ତୁଲା ମେଷେ ନାଡ୍ୟସ୍ତୁଭୟତୋ ଦଶ ॥

× × ×

ସଂକ୍ରାନ୍ତିସ୍ତୁ ଯଦା ରାତ୍ରୌ ଦିବା ବା ଯଦି ବା ନଶିଃ ।
ପୂର୍ବମେବ ଦିନଂ ଗ୍ରାହ୍ୟଂ ଦୈବେ ପିତ୍ରେ ଚ କର୍ମଣି ॥

କର୍କଟ ସଂକ୍ରାନ୍ତି ଦିନ ନୀତିପୂଜା ପରେ ଶ୍ରୀଜଗନ୍ନାଥଙ୍କର ଶତୋପଚାର ବା ଷୋଡ଼ଶୋପଚାର ବିଶେଷ ପୂଜା ଓ ବନ୍ଦାପନା ଅନୁଷ୍ଠିତ ହୁଏ । ମକର ସଂକ୍ରାନ୍ତି ପୂର୍ବ ତୃତୀୟ ଦିବସରେ ଦୁଗ୍ଧ ପରିସ୍କରଣ, ପୂର୍ବ ଦିବସ ସନ୍ଧ୍ୟାରେ ଦୁଗ୍ଧାବାସ କରାଯାଏ । ମାସାନ୍ତଦିନ ଦଧି ନିମିତ୍ତ ସେହି ଦୁଗ୍ଧ ଦେବତାଙ୍କ ପାର୍ଶ୍ୱରେ ସଂରକ୍ଷିତ ହୁଏ । ରାତ୍ରିରେ ନିତ୍ୟପୂଜାନନ୍ତର ମଦନମୋହନଙ୍କୁ ବେଶ କରାଯାଇ ସାଢ଼େ ଚାରିଥର ସିଂହାସନ ପ୍ରଦକ୍ଷିଣ ପରେ ବାହାରେ ଥିବା ବିମାନରେ ବସାଇ ମନ୍ଦିରକୁ ସାଢ଼େ ଚାରିବାର ପ୍ରଦକ୍ଷିଣ କରାଯାଏ । ଏପରି ନଅ ଥର ପ୍ରଦକ୍ଷିଣ କରାଯାଉଥିବାରୁ ଏହି ଯାତ୍ରା ନବାଙ୍କ ଯାତ୍ରା ନାମରେ ଅଭିହିତ—

"ନବାଙ୍କେ ନବବାରଂ ବା ପ୍ରସାଦଭ୍ରମଣଂ ହରେଃ ।
ଯଃ କରୋତି ନରୋ ଗଚ୍ଛେଦ୍ ବୈକୁଣ୍ଠଂ ସର୍ବକାମଦମ୍" ॥

ମକର ସଂକ୍ରାନ୍ତି ଦିନ ଅମିକ୍ଷା, ଦଧି, ଦୁଗ୍ଧ, ଶର୍କରା, ଘୃତ, କଦଳୀ, ନାରିକେଳ, ଅଦା, କର୍ପୂର, ଲବଙ୍ଗ, ଜାତିକୋଷକ (ଜାଇଫଳ) ତଣ୍ଡୁଳ, ଇକ୍ଷୁରସାଦିଦ୍ୱାରା ମକର ତଣ୍ଡୁଳ ପ୍ରସ୍ତୁତ କରାଯାଏ । ମାଧ୍ୟାହ୍ନିକ ନିତ୍ୟ ପୂଜା ପରେ ନବୀନ ବସ୍ତ୍ରାଳଙ୍କାରାଦିଦ୍ୱାରା ଠାକୁରଙ୍କୁ ସୁବେଶ କରାଇବା ପରେ ପଞ୍ଚ ଘୋଷ ସହିତ ଥରେ ଏକବାର ମନ୍ଦିର ପ୍ରଦକ୍ଷିଣ କରି ତାହି ଶ୍ରୀଜଗନ୍ନାଥଙ୍କୁ ସମର୍ପିତ ହୁଏ । ଏହା ସର୍ବସାଧାରଣରେ 'ମକର ଭୋଗ' ନାମରେ ନାମିତ । ଭକ୍ତଜନତା ତାହାକୁ ପ୍ରସାଦ ରୂପେ ଗ୍ରହଣ କରନ୍ତି ।

**ଦୋଳଯାତ୍ରା :**

ଫାଲ୍ଗୁନ ଦଶମୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଛଅଦିନବ୍ୟାପୀ ଦୋଳଯାତ୍ରା ପାଳିତ ହୁଏ । ଦଶମୀ ଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ପ୍ରତିଦିନ ସନ୍ଧ୍ୟାଧୂପ ପରେ

ଶ୍ରୀଜଗନ୍ନାଥଙ୍କ ଚଳନ୍ତି ମୂର୍ତ୍ତି ଗୋବିନ୍ଦ, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସହିତ ଲୋକନାଥ, ଯମେଶ୍ୱର, ମାର୍କଣ୍ଡେଶ୍ୱର, ନୀଳକଣ୍ଠ ଓ କପାଳମୋଚନାଦି ପଞ୍ଚଦେବଙ୍କ ଗହଣରେ ଜଗନ୍ନାଥ ବଲ୍ଲଭ ମଠ ପର୍ଯ୍ୟନ୍ତ ଯାଆନ୍ତି । ଚତୁର୍ଦ୍ଦଶୀ ରାତ୍ରିରେ ବହ୍ନ୍ୟୁତ୍ସବ ପାଳିତ ହୁଏ । ପୂର୍ଣ୍ଣିମା ଦିନ ନିତ୍ୟ ଅର୍ଚ୍ଚନାନନ୍ତର ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସହିତ ଦୋଳ-ଗୋବିନ୍ଦ ଦୋଳମଣ୍ଡପକୁ ବିଜେ କରନ୍ତି । ସେଦିନ ଠାକୁରଙ୍କୁ ବିମାନରେ ନେଇ ମନ୍ଦିର, ଦୋଳବେଦୀ ଓ ମଣ୍ଡପ ଉପରେ ସାତଥର କରି ଏକୋଇଶ ବାର ପରିକ୍ରମା କରାଯିବାର ବିଧାନ ରହିଛି । ଦୋଳାସ୍ଥିତ ଦେବ ଦର୍ଶନରେ ଲୋକ ସଂସାର-ବନ୍ଧନରୁ ମୁକ୍ତିଲାଭ କରିଥାଏ—

"ଯୋ ପଶ୍ୟତି ଜଗନ୍ନାଥ ଦୋଳାୟାଂ ପରମେଶ୍ୱରମ୍ ।
ନ ସ ଗର୍ଭଂ ତୁହିଂ ଯାତି ଯାବଦାଚନ୍ଦ୍ରତାରକୌ" ॥

ଦୋଳଯାତ୍ରା ଉତ୍ସବଟି ଫଲ୍‌ଗୁତ୍ସବ ରୂପେ ଅଭିହିତ । ଲୋକ ସାଧାରଣରେ ଏହା ଫଗୁ ଦଶମୀ, ଫଗୁ ପୁନେଇ ନାମରେ ପରିଚିତ । ଖୁବ୍ ସମ୍ଭବତଃ ମାସର ନାମ ଅନୁସାରେ ଉତ୍ସବଟିର ନାମକରଣ କରାଯାଇଛି । ଭବିଷ୍ୟୋତ୍ତର ଖଣ୍ଡରେ ଉଲ୍ଲେଖ ଅଛି—

"ଫାଲ୍‌ଗୁନେ ପୌର୍ଣ୍ଣମାସ୍ୟାଂ ତୁ ବିବିଧ୍ୟାର୍ଦ୍ଧୈଶ୍ଚ ସହ୍ରି ।
ଶ୍ରୀକୃଷ୍ଣ ପ୍ରିୟ ଭକ୍ତସ୍ୟ ବସନ୍ତସ୍ୟାର୍ଚ୍ଚନୋତ୍ସବମ୍ ॥
ସ ଏବଂ କୁରୁତେ ପାର୍ଥ ଶାସ୍ତ୍ରୋକ୍ତଂ ଫଲ୍‌ଗୁନୋତ୍ସବମ୍ ।
ତତ୍ ପ୍ରସାଦାର୍ଥସିଦ୍ଧିଶ୍ଚ ତସ୍ୟ ସର୍ବେ ମନୋରଥାଃ" ॥

ଓଡ଼ିଶାର ପ୍ରଖ୍ୟାତ କବି ହଳଧର ମିଶ୍ର ଏହି ଉତ୍ସବକୁ ବସନ୍ତୋତ୍ସବ ରୂପେ ବର୍ଣ୍ଣନା କରିଛନ୍ତି । ନୀଳାଦ୍ରି ମହୋଦୟ ଚଉତିରିଶ ଅଧ୍ୟାୟରେ ଦୋଳଯାତ୍ରା ଉଦ୍ଦେଶ୍ୟରେ ଗୋଟିଏ ପ୍ରାର୍ଥନା ମୂଳକ ଶ୍ଳୋକ ଉଲ୍ଲିଖିତ ଅଛି ।

"ଧ୍ୟାୟେତ୍କେଳି କଦମ୍ବମୂଳନିଳୟଂ ବୃନ୍ଦାବନେ ଶୋଭନେ
ନାନା ପୁଷ୍ପଲତା ବିତାନ ମଧୁରେ ରଞ୍ଜତ୍ପ୍ରିକାଳସ୍ୱରେ ।
କାଳିନ୍ଦୀଜଲଶୀକରାଞ୍ଚିତ ମରୁତ୍‌ସଂସେବ୍ୟମାନେ ଘନେ
କ୍ରୀଡ଼ନ୍ତଂ ନବମଞ୍ଜୁ ଗୋପରମଣୀଜୁଷ୍ଟଂ ସହୁଷ୍ଣାନ୍ତକମ୍ ॥

ନୀଳେନ୍ଦୀବର ସୁନ୍ଦରଂ ସୁନୟନଂ ଚନ୍ଦ୍ରାନନଂ ପାବନଂ
ବନ୍ଧୂକାଧରସସ୍ମିତଂ ପରିଲସଦ୍ ଭୂଷାବଳି ବେଷ୍ଟିତମ୍ ।
ଚଞ୍ଚଚ୍ଚକ୍ରଗଦାବ୍ଜଶଙ୍ଖବଲସଦ୍ଧସ୍ତାରବିନ୍ଦଂ ଲସଦ୍
ବେଣୁଂ ପୀତତରାଂଶୁକଂ ସୁମଧୁରଂ ଦୋଳାୟମାନଂ ପରମ୍ ॥

ପଦ୍ମାକ୍ଷ ସନ୍ନତଂ ସୁବର୍ଣ୍ଣମୁକୁଟଂ ପ୍ରଦ୍ୟୋତମାନଂ ସୁରୈ—
ର୍ଗନ୍ଧର୍ବୈର୍ମୁନିପୁଙ୍ଗବୈଃ ସରଭସଂ ପ୍ରସ୍ତୂୟମାନଂ ସଦା ।
ରାଜଦ୍ଗୋରକସାଞ୍ଛିତଂ ଘନମଣିବ୍ୟୂହପ୍ରଭାଭାସ୍ୱରଂ
କନ୍ଦର୍ପାର୍ବୁଦସୁନ୍ଦରଂ ସୁଚତୁରଂ ଗୋବିନ୍ଦମାନନ୍ଦଦମ୍ ।।”

**ଦମନକ ଯାତ୍ରା :**

ଚୈତ୍ର ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ଦମନକାର୍ପଣ ଉତ୍ସବ ଅନୁଷ୍ଠିତ ହୁଏ । ପୂର୍ବଦିନ ଅପରାହ୍ଣରେ ଶ୍ରୀ ଜଗନ୍ନାଥଙ୍କ ବିଜୟ ପ୍ରତିମାଙ୍କୁ ବିମାନରେ ନେଇ ଦମନକ ବାଟିକାରେ ପୂଜା ଓ ବନ୍ଦାପନା ପରେ ଦମନକ ହରଣ କାର୍ଯ୍ୟ କରାଯାଏ । ସେହି ଦମନକ ଶୁଦ୍ଧ ସ୍ଥାନରେ ସଂରକ୍ଷିତ ହୁଏ ! ଚତୁର୍ଦ୍ଦଶୀ ଦିନ ନିତ୍ୟ ପୂଜା ପରେ ମହାପୂଜା ଏବଂ ପରେ ପଞ୍ଚମହାଘୋଷ ମଧ୍ୟରେ ଶ୍ରୀଜଗନ୍ନାଥଙ୍କୁ ଦମନକ ମାଳା (ଦୟଣା) ଅର୍ପଣ କରାଯାଏ । ଏହି ମାଳାରେ ନାନାବିଧ ମଣିମୁକ୍ତା ପୁଷ୍ପାଦି ଗ୍ରଥିତ ଥିବାର ଜଣାଯାଏ—

“ମଣି ବିଦ୍ରୁମମାଳାଭିର୍ମନ୍ଦାର କୁମୁଦାଦିଭିଃ ।
ଇୟଂ ସାମ୍ୱତ୍ସରୀ ପୂଜା ତବାସ୍ତୁ ଗରୁଡଧ୍ୱଜ ।।”

ମାଳା ଅର୍ପଣ ନିମିତ୍ତ ଗୋଟିଏ ପ୍ରାର୍ଥନା ବିଧିର ଉଲ୍ଲେଖ ରହିଛି ।

“ଦେବ ଦେବ ଜଗନ୍ନାଥ ବାଞ୍ଛାର୍ଥିସୁ ପ୍ରଦାୟକ ।
ହୃତ୍ ସ୍ଥାନଂ ପୂରୟ ମେ ଦେବ କାମାନ୍ କାମେଶ୍ୱରପ୍ରିୟଃ ।।
ଇଦଂ ଦମନକଂ ଦେବ ଗୃହାଣ ମଦନୁଗ୍ରହାତ୍ ।
ଇମାଂ ସାମ୍ୱତ୍ସରୀଂ ପୂଜାଂ ଭଗବନ୍ ପରିପୂରୟ ।।”

ଉଦ୍ୱେଗ-ଶୋକ-ତାପ-ପାପରୁ ମୁକ୍ତି ପାଇବା ନିମିତ୍ତ ଦମନକ ଧାରଣ ଓ ସେବନର ନିର୍ଦ୍ଦେଶ ଦିଆଯାଇଛି—

“ଏତଦ୍ଦମନକଂ ଯେ ବୈ ଖାଦନ୍ତି ଚ ବହନ୍ତି ଚ ।
ସର୍ବପାପବିନିର୍ମୁକ୍ତାସ୍ତଥା ରୋଗୈଃ ପ୍ରମୁଚ୍ୟତେ ।।”

ଶ୍ରୀଜଗନ୍ନାଥଙ୍କ ଦୟଣା ଭୂଷଣକୁ ମାନସ ଦୃଷ୍ଟିରେ କଳ୍ପନା କରି ଭକ୍ତକବି ସାଲବେଗ ଗାଇଛନ୍ତି—

ଆହେ ନୀଳଗିରି,
ତୁମ୍ଭ ଶ୍ରୀଭୁଜେ ଦସ୍ତୁଣା କେତେ କେରି ।
ତୁଳସୀ ଚଉରା ପାଶେ ଜଗି          ବସି ଧ୍ୟାଉଛନ୍ତି କେତେ ଯୋଗୀ
ବ୍ୟାଘ୍ର ଚର୍ମ ପାଠ ସ୍ତୁତି କରୁଛନ୍ତି,
ଜପୁଛନ୍ତି ନାମ ସଂଖ୍ୟା କରି ।।

\+          ×          +

କହେ ସାଲବେଗ ହୀନଜାତି          ଶ୍ରୀରଙ୍ଗା ଚରଣେ ରହୁ ମତି
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛୁ,
ଦୟାକର ବାରେ ଲକ୍ଷ୍ମୀପତି ।

ପୂର୍ବୋକ୍ତ ଯାତ୍ରା ବ୍ୟତୀତ 'ଯାତ୍ରା ଭାଗବତ' ପ୍ରଭୃତି ଗ୍ରନ୍ଥ ଅନୁସାରେ ମାର୍ଗଶିର ମାସ ଠାରୁ କାର୍ତ୍ତିକ ମାସ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଯେଉଁ ଉପଯାତ୍ରା ଗୁଡ଼ିକ ପାଳିତ ହୁଏ ତନ୍ମଧ୍ୟରେ ପ୍ରଥମାଷ୍ଟମୀ, ଦୀପାବଳୀ, ସ୍ୱୟମ୍ବର ଦଶମୀ, ବକୁଳାମାବାସ୍ୟା, ରଟନ୍ତୀ ଚତୁର୍ଦ୍ଦଶୀ, ବସନ୍ତ ପଞ୍ଚମୀ, ତିଳସପ୍ତମୀ, ଭୀଷ୍ମାଷ୍ଟମୀ, ଭୈମୀ ଏକାଦଶୀ, ମାଘ ପୌର୍ଣ୍ଣମାସୀ, ଶିବରାତ୍ରି, ଅଶୋକାଷ୍ଟମୀ, ଶ୍ରୀରାମନବମୀ, ଅନଙ୍ଗତ୍ରୟୋଦଶୀ, ନୃସିଂହ ଚତୁର୍ଦ୍ଦଶୀ, ବୈଶାଖ ପୂର୍ଣ୍ଣିମା, ଜଳକ୍ରୀଡ଼ା, ସାବିତ୍ରୀ ଅମାବାସ୍ୟା, ଆରଣ୍ୟକ ଷଷ୍ଠୀ, ରୁକ୍ମିଣୀ ବିବାହ, ଚିତାଲାଗି ଅମାବାସ୍ୟା, ରକ୍ଷାପଞ୍ଚମୀ, ସପ୍ତପୁରଟକୋତ୍ସବ, ଗୌଷ୍ଠବ୍ରତ, ବିନାୟକପୂଜା, କୁକ୍କୁଟୀବ୍ରତ, ରାଧାଷ୍ଟମୀ, ବାମନଜନ୍ମ, ଇନ୍ଦ୍ରୋତ୍ସବ, ସୋମନାଥବ୍ରତ, କୁମାରୋତ୍ସବ, ଦାମୋଦରପୂଜା, ନାଗଚତୁର୍ଥୀ ଆଦିର ନାମ ଉଲ୍ଲେଖଯୋଗ୍ୟ ।

ଶ୍ରୀମନ୍ଦିରରେ ଯାତ୍ରା ଉତ୍ସବ ସବୁବେଳେ ଲାଗି ରହିଛି । ଏହି ଉତ୍ସବଗୁଡ଼ିକ ମନ୍ଦିରର ବିଧିବିଧାନ ଅନୁସାରେ ଅନୁଷ୍ଠିତ ହେଉ ଥିବାରୁ ହିନ୍ଦୁ ଜନତା ସେଥିପ୍ରତି ସମ୍ମାନ ପ୍ରଦର୍ଶନ କରିଆସୁଛନ୍ତି ଏବଂ ତଦନୁସାରେ ସମାଜରେ ଯାତ୍ରା ମହୋତ୍ସବାଦି ଅନୁଷ୍ଠିତ ହୋଇ ଆସୁଛି । ଏଥିରୁ ଓଡ଼ିଆ ଜାତିର ସାଂସ୍କୃତିକ ମହନୀୟତା ଓ ଜୀବନ ବୈଚିତ୍ର୍ୟର ସ୍ପଷ୍ଟ ପରିଚୟ ମିଳେ । ଓଡ଼ିଆର ଶ୍ରୀଜଗନ୍ନାଥୀୟ ଭାବନା ଯୁଗଯୁଗ ଧରି ବିଶ୍ୱମୈତ୍ରୀର ପ୍ରଚାର ଏବଂ ଶିଳ୍ପ, କଳା, ଓ ସାହିତ୍ୟ କ୍ଷେତ୍ରରେ ସଫଳ ନେତୃତ୍ୱ କରୁଥିବ, ଏଥିରେ ସନ୍ଦେହ ନାହିଁ । ଶେଷରେ—

ନୀଳାଚଳନିବାସାୟ ନିତ୍ୟାୟ ପରମାତ୍ମନେ ।
ବଳଭଦ୍ର ସୁଭଦ୍ରାଭ୍ୟାଂ ଜଗନ୍ନାଥାୟ ତେ ନମଃ ।।

# ଶ୍ରୀଜଗନ୍ନାଥ ଧର୍ମଧାରା

ଶ୍ରୀଜଗନ୍ନାଥ ସନାତନ ଧର୍ମ-ଚେତନାର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି । ସେ ଓଡ଼ିଆ ଜାତିର ଧର୍ମ, ସମ୍ପଦ, ଗୌରବ, ସାହିତ୍ୟ, ସଭ୍ୟତା, ସଂସ୍କୃତି ଓ ଆତ୍ମିକ ବିକାଶର ଉତ୍କ୍ରାନ୍ତ ପ୍ରତୀକ ଓ ପରିଣତି । ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତି ହିଁ ଓଡ଼ିଶାର ସଂସ୍କୃତି, ପରମ୍ପରା, ଜାତୀୟତା, ସଭ୍ୟତା ଓ ଗୌରବର ପ୍ରତୀକ ସ୍ୱରୂପ ପୃଥିବୀରେ ପ୍ରଖ୍ୟାତି ଲାଭ କରିଛି । ଏହି ଦାରୁବ୍ରହ୍ମ-ଜଗନ୍ନାଥ ସହସ୍ର ବର୍ଷ ଧରି ସମସ୍ତ ପ୍ରକାର ଅଧ୍ୟାତ୍ମ ଧାରଣାର ସାକ୍ଷୀରୂପେ ରହି ଆସିଛନ୍ତି । ଅନାର୍ଯ୍ୟ ଓ ଆର୍ଯ୍ୟ, ଧର୍ମ ଓ ସଂସ୍କୃତିର, ସମସ୍ତ ପ୍ରକାର ଉପଲବ୍ଧିର, ପୂର୍ଣ୍ଣ ଅଭିବ୍ୟକ୍ତିର ଜୀବନ୍ତ ପ୍ରତୀକରୂପେ ସେ ନୀଳାଚଳର ରତ୍ନ ସିଂହାସନରେ ବିରାଜମାନ । ଏହି ଦାରୁବ୍ରହ୍ମ ପ୍ରତୀକ ଲୋକରେ ଓ ବେଦରେ ପୁରୁଷୋତ୍ତମ ତତ୍ତ୍ୱରୂପେ ପରିଗୃହୀତ । ଜଗନ୍ନାଥ 'ପତିତପାବନ' ନାମରେ ଅଭିହିତ । ତେଣୁ ଜଗନ୍ନାଥଙ୍କର ପତିତପାବନ ବାନା ଏବେ ମଧ୍ୟ ବଡ଼ ଦେଉଳରେ ଉଡ଼୍ଡୀୟମାନ । ଏହି ଧର୍ମରେ ଶାନ୍ତି, ସହାବସ୍ଥାନ, ସାମ୍ୟ, ମୈତ୍ରୀ, ସଂପ୍ରୀତି, ଐକ୍ୟ ପ୍ରଭୃତି 'ବସୁଧୈବକୁଟୁମ୍ବକମ୍' ଭାବରେ ପରିପ୍ରକାଶ ଲାଭ କରିଛି । ଓଡ଼ିଆ ଜାତି ପ୍ରଗତି, ପ୍ରଜ୍ଞା, ବିଶ୍ୱାସ, ଭକ୍ତି ଓ କର୍ମସାଧନାର ଅନୁପ୍ରେରଣା ଲାଭ କରିଛି ଏହି ଜଗନ୍ନାଥ ଚେତନାରୁ । ଶ୍ରୀ ଜଗନ୍ନାଥ ଚେତନାର ସାଧନା ଏକ ଦୀର୍ଘାୟିତ ପରମ୍ପରା ଉପରେ ପ୍ରବହମାନ । ସେହି ଶ୍ରୀଜଗନ୍ନାଥ ଚେତନା ଆଜି ଭାରତର ସୀମା ଅତିକ୍ରମ କରି ବିଶ୍ୱ ପ୍ରସାରୀ ହୋଇ ଚାଲିଛି । ଏହି ଧର୍ମରେ ବୈଷ୍ଣବ, ଶୈବ, ଶାକ୍ତ, ବୌଦ୍ଧ, ଜୈନ ପ୍ରଭୃତି ଧର୍ମମତାବଲମ୍ବୀମାନଙ୍କର ସମନ୍ୱୟ ହୋଇଥିବା ସ୍ଥଳେ ଅନେକ ଏହା ସହିତ ପ୍ରାଗୈତିହାସିକ ଆଦିବାସୀ ଧର୍ମ ଓ ସଂସ୍କୃତିକୁ ସଂଯୁକ୍ତ କରିଛନ୍ତି । ସମସ୍ତେ ଜଗନ୍ନାଥଙ୍କୁ ନିଜର ଆରାଧ୍ୟ ଦେବତାରୂପେ ଗ୍ରହଣ କରିଛନ୍ତି । ଆଦିବାସୀ, ଯବନ, ହରିଜନ, ବ୍ରାହ୍ମଣ, ଚଣ୍ଡାଳ—ସମସ୍ତେ ଜଗନ୍ନାଥ ଆରାଧନା ଓ ଦର୍ଶନ ପାଇଁ ବ୍ୟାକୁଳ । ତାଙ୍କର ବିବର୍ତ୍ତନ ଖୋଜିବାକୁ ଯାଇ ତାଙ୍କୁ ବ୍ରାହ୍ମଣ୍ୟ, ଜୈନ, ବୌଦ୍ଧ ବା ତାନ୍ତ୍ରିକ ଯାହାକିଛି କୁହାଯାଉ ପଛେ, ସେ ସମ୍ପୂର୍ଣ୍ଣଭାବେ କୌଣସିଟି ନୁହଁନ୍ତି । ଓଡ଼ିଶାରେ ବହୁ ଧର୍ମ ମତବାଦର ବାତ୍ୟା ବିଭିନ୍ନ ଯୁଗରେ ବହି ଯାଇଥିଲେ ମଧ୍ୟ କେହି ସେହି ଚକାଡ଼ୋଳାଙ୍କୁ ତିଳେ ହେଲେ ତାଙ୍କ ସ୍ଥାନରୁ ଟଳାଇ ପାରି ନାହାନ୍ତି । ଓଡ଼ିଆ

ମନୋଧାରାର ବଡ଼ ଠାକୁର ରୂପେ ସେ ଶତାବ୍ଦୀ ଧରି ପୂଜା ପାଇ ଆସୁଛନ୍ତି । ତେଣୁ ଯାହା କିଛି ନୂତନ ବୋଲି ଜନମତ ଦ୍ୱାରା ଗୃହୀତ ହୁଏ ତାହା ଜଗନ୍ନାଥଙ୍କ ଠାରେ ହିଁ ଆରୋପିତ ହୋଇଥାଏ । ଏଣୁ ଶାକ୍ତ, ତାନ୍ତ୍ରିକ, ବୈଷ୍ଣବ-ସବୁପ୍ରକାର ବିଧି ତାଙ୍କଠାରେ ପ୍ରଚଳିତ । କେବଳ ରଥଯାତ୍ରାରୁ ତାଙ୍କୁ ବୌଦ୍ଧ ବୋଲି କହିବା ବା କେବଳ ଏକାନଂଶା ଦେବୀଙ୍କର ପ୍ରଭାବରୁ ତାଙ୍କୁ ବ୍ରାହ୍ମଣ୍ୟ ବୋଲି କହିଲେ ଓଡ଼ିଶାର ଧର୍ମକୁ ଆମେ ହୃଦୟଙ୍ଗମ କରିପାରିବା ନାହିଁ । ସହସ୍ର ବର୍ଷ ଧରି ଭାରତବର୍ଷ ଓ ବିଭିନ୍ନ ଦେଶରୁ ବହୁ ସାଧୁ ସନ୍ନ୍ୟାସୀ, ପରିବ୍ରାଜକ, ବହୁ ବିଶିଷ୍ଟ ସନ୍ଥ, ଅବତାର ପୁରୁଷ, ଧର୍ମ ସଂସ୍ଥାପକ ନୀଳାଚଳକୁ ଆସିଛନ୍ତି । ସକଳ ପ୍ରକାର ଆଧ୍ୟାତ୍ମ ସାଧନାର ପରୀକ୍ଷା ନିରୀକ୍ଷା ହୋଇଛି ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନ ତଳେ । ଯୁଗ ଯୁଗଧରି ଜଗନ୍ନାଥଙ୍କୁ କେନ୍ଦ୍ର କରି ଅନେକ ଘଟଣା ଘଟି ଯାଇଛି । ବିଭିନ୍ନ ଯୁଗରେ ଶଙ୍କରାଚାର୍ଯ୍ୟ, ରାମାନୁଜ, ନାନକ, ଶ୍ରୀଚୈତନ୍ୟ ପ୍ରଭୃତି ବହୁ ଧାର୍ମିକ ପଣ୍ଡିତ ଜଗନ୍ନାଥଙ୍କର ପୂଜା ପଦ୍ଧତିରେ ସଂସ୍କାର ପାଇଁ ମନ ବଳାଇଛନ୍ତି । ଏପରିକି ରାମାନୁଜଙ୍କର ପ୍ରଭାବରେ ଦେଉଳ ବେଢ଼ାରେ ଲକ୍ଷ୍ମୀଙ୍କର ମନ୍ଦିର ତୋଳା ଯାଇଛି ଏବଂ ଶ୍ରୀ କ୍ଷେତ୍ରରେ ମହାପ୍ରସାଦର ପ୍ରଚଳନ ହେବାକଥା ତନ୍ତ୍ର ଶାସ୍ତ୍ରରେ ମଧ୍ୟ ରହିଛି । ଜଗନ୍ନାଥଙ୍କ ମନ୍ଦିରରେ ଯେପରି କୌଣସି ଉଚ୍ଚ ନୀଚ ଭେଦଭାବ ପରିଲକ୍ଷିତ ହୁଏ ନାହିଁ, ସେହିପରି ଜଗନ୍ନାଥଙ୍କର ଏ ମହାପ୍ରସାଦ ସେବାପାଇଁ ସମସ୍ତଙ୍କ ମନରେ ଉତ୍ସାହ ଉଦ୍ଦୀପନା ଓ ଭକ୍ତିଭାବ ଜାଗ୍ରତ ହୋଇଥାଏ । ମହାପ୍ରସାଦ ସେବନ ପୂର୍ବରୁ ଧର୍ମପ୍ରାଣ ବ୍ୟକ୍ତିମାନେ ଜଗନ୍ନାଥଙ୍କୁ ପ୍ରାର୍ଥନାକରି ଭକ୍ତିପୂର୍ଣ୍ଣ ଚିତ୍ତରେ, "ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ, ବଳଭଦ୍ର ସୁଭଦ୍ରାଭ୍ୟାଂ ଜଗନ୍ନାଥାୟ ତେ ନମଃ" ବୋଲି ଉଚ୍ଚାରଣ କରିଥାନ୍ତି । ଏମାନେ ସେଥିପାଇଁ ଜଗନ୍ନାଥଙ୍କୁ ନୀଳାଚଳବାସୀ ନିତ୍ୟ ପରମାତ୍ମାରୂପେ ଗ୍ରହଣ କରିଥାନ୍ତି । ଏହିପରି ଭାବରେ ସର୍ବ ସମନ୍ୱୟର ପ୍ରତୀକ ଜଗନ୍ନାଥଙ୍କୁ ଅଜ୍ଞାତ ପୁଣି ଖ୍ରୀଷ୍ଟିୟାନ ଧର୍ମର ଏବଂ ଯିଶୁଙ୍କ ସଙ୍ଗେ ତାଙ୍କର ବହୁ ପ୍ରାଚୀନ ସମ୍ପର୍କର ଲୁପ୍ତ ଇତିହାସ ଉଦ୍‌ଘାଟିତ ହେବାକୁ ଗଲଣି । ସେ ଯାହାହେଉ, କଳିଯୁଗରେ ଏହି ଶୂନ୍ୟ ପୁରୁଷ ଜଗନ୍ନାଥଙ୍କୁ ସମସ୍ତେ ନିଜ ନିଜର ଧର୍ମ ଭିତରକୁ ଟାଣି ନେବାକୁ ଆପ୍ରାଣ ଚେଷ୍ଟା କରିଛନ୍ତି, କିନ୍ତୁ ଅବଶେଷରେ ସମସ୍ତେ ସେହି ଜଗନ୍ନାଥଙ୍କ ସତ୍ତା ଭିତରେ ଲୀନ ହୋଇ ଯାଇଛନ୍ତି । ଜଗନ୍ନାଥଙ୍କ ଉପରେ ଯେତେ ଗବେଷଣା ତଥା ଆଲୋଚନା ହେଲେ ମଧ୍ୟ, ସେ ଯେ ପ୍ରକୃତରେ କ'ଣ, ତାହା ଅଦ୍ୟାବଧି ରହସ୍ୟାବୃତ ହୋଇ ରହି ଯାଇଛି । ଏହାହିଁ ଓଡ଼ିଶାରେ ଜଗନ୍ନାଥ ଧର୍ମର ମୂଳଭିତ୍ତି । ଏହି ପରିପ୍ରେକ୍ଷୀରେ ଏଠାରେ ଜଗନ୍ନାଥ ଧର୍ମର ଇତିହାସ ଉପରେ ଯଥାସମ୍ଭବ ଆଲୋକପାତ କରାଯାଇ ପାରେ ।

ନିର୍ଗୁଣ ବ୍ରହ୍ମର ପ୍ରତୀକ ଶ୍ରୀଜଗନ୍ନାଥ ସକଳ ଶକ୍ତିର ଆଧାର । ମନୁଷ୍ୟର ଆତ୍ମା ତୁଲ୍ୟ ସତ୍ତ୍ୱ, ରଜ, ତମ ରହିତ ଅଥଚ ସେ ସତ୍ତ୍ୱାଦିଗୁଣର ପାଳକ, ଚାଳକ, ଧାରକ ଓ ପୋଷକ । ତାଙ୍କୁ ସଗୁଣ ଓ ନିର୍ଗୁଣଭାବେ ମଧ୍ୟ ଉପାସନା କରାଯାଏ । ସେ କଳିଯୁଗର

ସ୍ରଷ୍ଟା । ଏହାଙ୍କର ମୂଳତତ୍ତ୍ୱ ପୁରୁଷୋତ୍ତମ ତତ୍ତ୍ୱ ବୋଲି ଅନେକ ମତ ଦିଅନ୍ତି । ତେଣୁ ଶାସ୍ତ୍ରରେ ଜଗନ୍ନାଥଙ୍କ ଅପରିସୀମ ଶକ୍ତିମତ୍ତା ଓ ଗୌରବର ଜୟଗାନ କରାଯାଇ କୁହାଯାଇଛି, "ସର୍ବତଃ ପାଣି ପାଦୌତତ୍ ସର୍ବତୋଽକ୍ଷି ଶିରୋମୁଖଂ, ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ।"

ଶ୍ରୀଜଗନ୍ନାଥ ଓ ଜଗନ୍ନାଥ ଧର୍ମ ଏତେ ପ୍ରାଚୀନ ଯେ ଯେ ବିଷୟରେ କୌଣସି ତଥ୍ୟକୁ ଇତିହାସ ଭିତ୍ତିରେ ପ୍ରତିଷ୍ଠିତ କରିବା ଅସମ୍ଭବ। ଏହା ହୋଇପାରିଥିଲେ ଶ୍ରୀଜଗନ୍ନାଥ ଜଗତର 'ନାଥ'ତ୍ୱ ନିଶ୍ଚୟ ହରାଇଥାନ୍ତେ ଏବଂ ହିନ୍ଦୁ ଧର୍ମର ରହସ୍ୟମୟ ଦେବତା ଭାବରେ ତାଙ୍କୁ କେହି ଆରାଧନା କରୁ ନଥାନ୍ତେ । ସେ ଯାହାହେଉ, ଏହି ଜଗନ୍ନାଥଙ୍କ ଉତ୍ପତ୍ତି ସୃଷ୍ଟି ପରି ଅଦିଅନ୍ତହୀନ ଓ ବର୍ତ୍ତମାନ ସୁଦ୍ଧା ଗଭୀର ତମସାଚ୍ଛନ୍ନ । ଜଗନ୍ନାଥ ତଥା ତାଙ୍କ ସମ୍ପର୍କିତ ଧର୍ମର ଆରମ୍ଭ ଓ ବିକାଶ ଯେକ ଐତିହାସିକ ଓ ଗବେଷକମାନଙ୍କ ମଧ୍ୟରେ ନାନା ମତ ଦେଖାଯାଏ ।

ଶ୍ରୀଜଗନ୍ନାଥ ଯେପରି ରହସ୍ୟମୟ, ତାଙ୍କର ପ୍ରଥମ ମୂର୍ତ୍ତି ନିର୍ମାଣ, ପ୍ରତିଷ୍ଠା ଓ ମନ୍ଦିର ନିର୍ମାଣ ମଧ୍ୟ ସେହିପରି ତମସାଚ୍ଛନ୍ନ । ଏ ସମ୍ପର୍କରେ ବହୁ ପୌରାଣିକ ଉପାଖ୍ୟାନର ଅବତାରଣା କରାଯାଇଥାଏ । ମହାଭାରତରେ ବର୍ଣ୍ଣିତ ଅଛି ଯେ, ପୂର୍ବରେ ପ୍ରଥମେ କୌଣସି ଗ୍ରହ ବା ମନ୍ଦିର ନଥିଲା । ପୁଣି ଜଗନ୍ନାଥଙ୍କର ପୂର୍ଣ୍ଣାବୟବ ମୂର୍ତ୍ତି କାହିଁକି ନାହିଁ, ସେ ସମ୍ପର୍କରେ ମଧ୍ୟ ପ୍ରାଚୀନ ଆଖ୍ୟାନମାନ ପୁରାଣଯୁଗରୁ ଏପର୍ଯ୍ୟନ୍ତ ପ୍ରଚଳିତ ରହିଛି । ଜଗନ୍ନାଥଙ୍କର ହସ୍ତ, ପଦ, ନାସା, କର୍ଣ୍ଣ ପ୍ରଭୃତି କାହିଁକି ନାହିଁ, ସେ ସମ୍ବନ୍ଧରେ ଏହି ଆଖ୍ୟାନଗୁଡ଼ିକରେ କାରଣ ବର୍ଣ୍ଣନା କରାଯାଇଥିଲେ ହେଁ ଯୁକ୍ତିଯୁକ୍ତ ତତ୍ତ୍ୱାନୁସନ୍ଧାନୀ ଦାର୍ଶନିକ ଗବେଷକମାନଙ୍କ ପକ୍ଷରେ ସେଗୁଡ଼ିକ ପୂର୍ଣ୍ଣତଃ ହୃଦବୋଧ ହୋଇପାରୁ ନାହିଁ । କିନ୍ତୁ ସାଧାରଣ ଲୋକ ଯେ ସେଥିରେ ଆସ୍ଥା ସ୍ଥାପନ କରିଆସିଛନ୍ତି, ଏକଥା ଅସ୍ୱୀକାର କରି ହେବନାହିଁ । ଉପନିଷଦରେ ବର୍ଣ୍ଣନା କରାଯାଇଛି ଯେ, ପରମ ପୁରୁଷ ପରମାତ୍ମା ଚକ୍ଷୁ, କର୍ଣ୍ଣ, ପଦ, ହସ୍ତ ଇତ୍ୟାଦି ବିନା ସମସ୍ତ ଦ୍ରବ୍ୟ ଗ୍ରହଣ କରି ପାରୁଛନ୍ତି । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିରେ ଏହି ପରମାତ୍ମା ପୁରୁଷଙ୍କର ସମସ୍ତ ଲକ୍ଷଣ ପରିସ୍ଫୁଟ ହୋଇଛି । ବାମଦେବକୃତ 'ଇନ୍ଦ୍ର ନୀଳମଣି' ପୁରାଣ ମତରେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିରେ ଅକ୍ଷୟ, ଅବ୍ୟୟ ବ୍ରହ୍ମ ପଦାର୍ଥ ରହିଛି । ଶ୍ରୀକୃଷ୍ଣଙ୍କ ପାର୍ଥିବ ଶରୀର ତ୍ୟାଗପରେ ତାଙ୍କର ସଖା ଓ ବନ୍ଧୁ ପାଣ୍ଡବମାନେ ସେହି ଶରୀରକୁ ଦାହ କରିବାବେଳେ, ଶରୀରର ଗୋଟିଏ ଅଂଶକୁ ଅଗ୍ନି ଦହନ କରିପାରି ନ ଥିଲା । ସୁତରାଂ ସେମାନେ ତାହାକୁ ସମୁଦ୍ରରେ ଭସାଇ ଦେଇଥିଲେ । ସେହି ଅଦଗ୍ଧ ଅଂଶଟି 'ଇନ୍ଦ୍ର ନୀଳମଣି' ନାମରେ ଖ୍ୟାତ ଏବଂ ଏହା ବର୍ତ୍ତମାନ ଶ୍ରୀଜଗନ୍ନାଥଙ୍କ ଶରୀରରେ ରହିଥିବା ବିଷୟ ଧର୍ମତତ୍ତ୍ୱବିଦ୍‌ମାନେ ପ୍ରକାଶ

କରିଛନ୍ତି । ଏହାକୁ ହିଁ ବୋଧହୁଏ ଶ୍ରୀମଦ୍ ଭଗବତ୍‌ଗୀତାରେ କୁହାଯାଇଛି, "ବ୍ରହ୍ମ ପଦାର୍ଥ ଏବଂ ଏହା ନିତ୍ୟ, ସର୍ବଗତଃ, ଅଚଳ, ସନାତନ ପଦାର୍ଥ, ଅଚ୍ଛେଦ୍ୟ, ଅଦାହ୍ୟ ଅକ୍ଳେଦ୍ୟ ଓ ଅଶୋଷ୍ୟ ଅଟେ ।" କେତେକ ଐତିହାସିକଙ୍କ ମତରେ କେବଳ ଶ୍ରୀ ଜଗନ୍ନାଥଙ୍କ ଠାରେ ବ୍ରହ୍ମପଦାର୍ଥ ଥିବା ଯୋଗୁଁ ତାଙ୍କୁ ରତ୍ନବେଦୀ ଉପରେ ଉପାସନା କରାଯାଉଥିଲା । ତେଣୁ ସେ ହେଉଛନ୍ତି ବୈଷ୍ଣବମାନଙ୍କ ଆରାଧ୍ୟ ଦେବତା । ରତ୍ନସିଂହାସନ ଉପରେ ଶ୍ରୀ ବଳଭଦ୍ର ଓ ସୁଭଦ୍ରା ଯଥାକ୍ରମେ ଶିବ ଓ ଶକ୍ତିରୂପିଣୀ କାତ୍ୟାୟନୀରୂପେ ଏବଂ ପରେ ପରେ ଚକ୍ର ବା ସୁଦର୍ଶନଙ୍କୁ ପ୍ରତିଷ୍ଠା କରାଗଲା । ସେତେବେଳକୁ ବଳଭଦ୍ର ଓ ସୁଭଦ୍ରାଙ୍କର ବ୍ରହ୍ମପଦାର୍ଥ ନ ଥିଲା । ପରବର୍ତ୍ତୀକାଳରେ ଯେଉଁମାନେ ... ସେତେବେଳେ ବଳଭଦ୍ର ଓ ସୁଭଦ୍ରାଙ୍କ ପୂଜା ଆରାଧନା ପ୍ରତିଷ୍ଠା କଲେ ସେତେବେଳେ ନେପାଳରୁ ବୈଷ୍ଣବ ସଂକେତପୂର୍ଣ୍ଣ ବିଷ୍ଣୁଶିଳା ବା ଶାଳଗ୍ରାମ ପଠାଇବା ପାଇଁ ନେପାଳରାଜାଙ୍କୁ ଅନୁରୋଧ କରାଯାଇ ଥିଲା । ନେପାଳରୁ ବିଷ୍ଣୁଶିଳା ଅଣାଯାଇ ରତ୍ନବେଦୀ ଉପରେ ସଂସ୍ଥାପିତ ହେବାପରେ ବଳଭଦ୍ର ଓ ସୁଭଦ୍ରାଙ୍କର ଯଥାବିଧି ଆରାଧନା ଓ ସେବାପୂଜା ଇତ୍ୟାଦି ଆରମ୍ଭ ହେଲା । ସେଥିପାଇଁ ଅନେକ ଏହି ତ୍ରିମୂର୍ତ୍ତି- ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ରୂପେ ବର୍ଣ୍ଣନା କରିଥିବା ସ୍ଥଳେ ଅନ୍ୟମାନେ ସେମାନଙ୍କୁ ରଜଃ, ସତ୍ତ୍ୱ, ତମ ବା ସୃଷ୍ଟି, ସ୍ଥିତି ଓ ଲୟରୂପେ ବର୍ଣ୍ଣନା କରିଛନ୍ତି ।

ଶ୍ରୀଜଗନ୍ନାଥଙ୍କୁ କେହି କେହି ଶବର ଦେବତା ବା ଦାରୁଦେବତା ବୋଲି କହିଥାନ୍ତି । ମହାଭାରତ ଯୁଗପରେ ପୁରୁଷୋତ୍ତମ କ୍ଷେତ୍ରର ପ୍ରତିଷ୍ଠା ହୋଇ କେତେବେଳ-ଯାଏ ଇନ୍ଦ୍ର ନୀଳମୟୀ ମୂର୍ତ୍ତି ସମୁଦ୍ରରେ ଭାସମାନ ହେଲେ । ଶବରରାଜ ବିଶ୍ୱାବସୁ ତାଙ୍କୁ ଉଦ୍ଧାର କରି ନୀଳକନ୍ଦର ପର୍ବତରେ 'ନୀଳମାଧବ' ରୂପେ ଆରାଧନା କରିଥିବା କିମ୍ବଦନ୍ତୀ ଅଦ୍ୟାବଧି ପ୍ରଚଳିତ । କଳିଙ୍ଗର ଶବରମାନେ ନିଜକୁ ବିଶ୍ୱାମିତ୍ରଙ୍କର ବଂଶଧର ବୋଲି ଦାବୀ କରନ୍ତି । ଶ୍ରୀଜଗନ୍ନାଥଙ୍କର ବିଶିଷ୍ଟ ସେବକଙ୍କୁ 'ସୋଇ ମହାପାତ୍ର ବୈଶ୍ୱା-ମିତ୍ରୀ' ବୋଲି କୁହାଯାଏ । ସେମାନେ ବର୍ତ୍ତମାନ ସୁଦ୍ଧା ଜଗନ୍ନାଥଙ୍କ ଉପାସନା ଏବଂ ଶ୍ରୀ ଜଗନ୍ନାଥ ମଧ୍ୟ ଶବର ମନ୍ତ୍ରରେ ପୂଜିତ ହେଉଥିବା ଜଣାଯାଏ । ଏହି ପ୍ରସଙ୍ଗରେ ତେଣୁ କୁହାଯାଇ ପାରେ ଯେ ଐତିହାସିକ ଯୁଗରେ ଓଡ଼ିଶା ଶବର ଅଧ୍ୟୁଷିତ ଥିଲା । ଏହାର ଆଦିମ ଅଧିବାସୀ ଶବରମାନେ ଥିଲେ ବୃକ୍ଷ ଉପାସକ । ପରେ ପରେ ସେମାନେ ବୃକ୍ଷର ଗଣ୍ଡିକୁ ପୂଜା କରିବାକୁ ଲାଗିଲେ । ଶବରମାନଙ୍କର ଏହି ବୃକ୍ଷ ଉପାସନା ଅତି ପ୍ରାଚୀନକାଳରୁ ବୈଦିକ ପରମ୍ପରାରେ ପ୍ରବେଶ କରି ଧର୍ମୀୟ ଚେତନାରେ ପରିଣତ ହୋଇ କାଳକ୍ରମେ ବ୍ରାହ୍ମଣ୍ୟ ପରମ୍ପରାରେ ମଧ୍ୟ ଗୃହୀତ ହୋଇଗଲା । ତେଣୁ ବୃକ୍ଷକୁ ଏକ ଜୀବନ୍ତ ପ୍ରତୀକରୂପେ ଗ୍ରହଣକରି 'ଶବର-ବ୍ରାହ୍ମଣ୍ୟ' ମିଳିତ ପରମ୍ପରାରେ ଆଧ୍ୟାତ୍ମିକ

ଜୀବନାଦର୍ଶ ରୂପ ଲାଭକଲା । ଏହି କ୍ରମରେ ପରବର୍ତ୍ତୀକାଳରେ ଶବର ପୂଜିତ ସେହି କାଠର ଗଣ୍ଡି ଶ୍ରୀଜଗନ୍ନାଥ ରୂପେ ପରିବର୍ତ୍ତିତ ହୋଇଥିବା ବିଶ୍ୱାସକୁ ଅବିଶ୍ୱାସ କରିହୁଏ ନାହିଁ । ଅଧିକାଂଶ ଗବେଷକ ଶ୍ରୀଜଗନ୍ନାଥଙ୍କୁ ଶବର ପୂଜକ ଥିଲେ ବୋଲି ମତ ଦେଇ-ଛନ୍ତି । ସୁତରାଂ ଏହି 'ଦାରୁଦେବତା' କାଳକ୍ରମେ ଶବରି-ନାରାୟଣ ରୂପେ ଆତ୍ମପ୍ରକାଶ କଲେ । ଆରଣ୍ୟ ଚେତନାର ସହଜ ବୃକ୍ଷ ଉପାସନା କ୍ରମେ ଦାରୁ ଉପାସନା, ଦାରୁ ଦେବତା ଉପାସନା ଓ ପରିଶେଷରେ ଦାରୁବ୍ରହ୍ମ ଉପାସନାରେ ପରିବର୍ତ୍ତିତ ହୋଇ ଯାଇଥିବା ଅନୁମାନ । ଦାରୁ-ଦେବତା ଶବରି-ନାରାୟଣ, ଦାରୁବ୍ରହ୍ମ ଜଗନ୍ନାଥ ରୂପରେ ନୀଳାଦ୍ରି ମଣ୍ଡପ ଅଳଂକୃତ କଲେ । ଉତ୍କଳରେ ଶ୍ରୀ ଜଗନ୍ନାଥ ସଂସ୍କୃତି ସମସ୍ତ ସ୍ରୋତରେ ଏହିପରି ଭାବରେ ଆର୍ଯ୍ୟ ଓ ଆର୍ଯ୍ୟେତରଙ୍କ ମଧ୍ୟରେ ମଧୁର ମିଳନ ଘଟାଇ, ସେମାନଙ୍କ ମଧ୍ୟରେ ସାମ୍ୟ ଓ ମୈତ୍ରୀ ଚେତନାର ଉଦ୍ରେକ କରିପାରିଥିଲା । ବିଦ୍ୟାପତି ଓ ଲଳିତାଙ୍କ ବିବାହ ଏ ସାମ୍ୟ ଓ ମୈତ୍ରୀ ଚେତନାର ଉଦ୍ରେକ କରିପାରି ଥିଲା । ବିଦ୍ୟାପତି ଓ ଲଳିତାଙ୍କ ବିବାହ ଏ ସାମ୍ୟ ଓ ମୈତ୍ରୀ ମିଳନର ରାକ୍ଷୀ ବନ୍ଧନ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶ୍ୱାବସୁ ଶବରର ବଂଶଧର ରୂପେ ଦଇତାପତିମାନେ ଓ ବିଦ୍ୟାପତି ବ୍ରାହ୍ମଣର ବଂଶ ପ୍ରତିନିଧି ରୂପେ ପଣ୍ଡାପୂଜକମାନେ ଶ୍ରୀ ଜଗନ୍ନାଥଙ୍କର ସେବା ଅଧିକାର ପ୍ରାପ୍ତ ହେଲେ । ଶବର ଓ ବ୍ରାହ୍ମଣଙ୍କ ମିଳିତ ବଂଶଧରରୂପେ ଲଳିତା ଓ ବିଦ୍ୟାପତିଙ୍କ ଔରସ ସନ୍ତାନମାନେ ବଂଶପରମ୍ପରା କ୍ରମେ ଜଗନ୍ନାଥଙ୍କ ଅନ୍ନପାକକାରୀ ସୁପକାର ବା ସୁଆର ରୂପେ ସେବା ଅଧିକାର ପାଇଲେ । ଏହିପରି ଶବର, ବ୍ରାହ୍ମଣ ଓ ଶବରବ୍ରାହ୍ମଣ ଏହି ତିନ ସମ୍ପ୍ରଦାୟ ଦ୍ୱାରା ଜଗନ୍ନାଥଙ୍କ ସେବା ନିର୍ବାହ ହୋଇ, ଛୁଆଁ ଅଛୁଆଁର ଭେଦଭାବ ଦୂର ପୂର୍ବକ କ୍ରମଶଃ ଏକାତ୍ମବୋଧର ଅଦ୍ୱୈତ ବନ୍ୟା ଜଗନ୍ନାଥ ଧର୍ମ ଓ ସଂସ୍କୃତିରେ ପ୍ରବାହିତ ହେବାକୁ ଲାଗିଲା ।

ପୁରାଣରେ ଉଲ୍ଲେଖ ରହିଛି ଯେ, ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କ ଆବିର୍ଭାବ ପୂର୍ବରୁ, ନୀଳମାଧବ ହିଁ ପୀଠ ଦେବତାରୂପେ ଶବର ରାଜା ବିଶ୍ୱାବସୁଙ୍କ କର୍ତ୍ତୃକ ପୂଜା ପାଉଥିଲେ ଏବଂ ପ୍ରଳୟ କାଳରେ ମଧ୍ୟ ତାଙ୍କର ଅସ୍ତିତ୍ୱ ଥିଲା । ସେତେବେଳକୁ ବଳଭଦ୍ର ପ୍ରଭୃତି ମୂର୍ତ୍ତିମାନଙ୍କର ଆବିର୍ଭାବ ହୋଇ ନଥିଲା । ନୀଳମାଧବ ମୂର୍ତ୍ତି ନୀଳକାନ୍ତମଣିରେ ନିର୍ମିତ ଥିବା ପୁରାଣରୁ ଜଣାଯାଏ । ଏହି ଚକ୍ର-ଗଦାଧାରୀ ବାସୁଦେବ ମୂର୍ତ୍ତି ସ୍ଫଟିକ ମଣିମୟ ବେଦୀ ଉପରେ ସ୍ୱର୍ଣ୍ଣପଦ୍ମ ଆସନରେ ଅବସ୍ଥାନ କରୁଥିଲେ । କଣ୍ଠଦେଶରେ ତାଙ୍କର ମନୋହର ଭୂଷଣ । ଏକ ହସ୍ତରେ ଦକ୍ଷିଣାବର୍ତ୍ତ ଶଙ୍ଖ । ଆଜାନୁଲମ୍ବିତ ବାହୁ । ଗଳାରେ କୌସ୍ତୁଭମଣି । ପରିଧାନ ପୀତ ବସନ । ହାର, କଙ୍କଣ, କେୟୂର, ମୁକୁଟ ପ୍ରଭୃତି ଅଳଙ୍କାରରେ ପ୍ରଭୁଙ୍କ ତନୁ ଶୋଭିତ । ଏହି ନୀଳମାଧବଙ୍କ ପାଖରେ ଲକ୍ଷ୍ମୀ ସର୍ବବିଧ ଅଳଙ୍କାରରେ ବିଭୂଷିତା ହୋଇ ରହିଛନ୍ତି ।

ଅଥ ଗୋପନରେ ଶବର ବିଶ୍ୱାବସୁ ଏହି ଗୁହାବାସୀ ଇନ୍ଦ୍ରନୀଳମଣିମୟ ପଦ୍ମାସନାସୀନ ଚତୁର୍ଭୁଜ ନୀଳମାଧବ ମୂର୍ତ୍ତିଙ୍କୁ ପୂଜା କରୁଥିଲେ । ମାଳବ ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ଆରାଧନା ନିମିତ୍ତ ଅତ୍ୟନ୍ତ ଆଗ୍ରହୀ ହୋଇ ବିଷ୍ଣୁଙ୍କ ସନ୍ଧାନ କରିବାପାଇଁ ବିଦ୍ୟାପତି ନାମକ ଜଣେ ବ୍ରାହ୍ମଣଙ୍କୁ ପଠାଇଲେ । ବିଦ୍ୟାପତି ନିବିଡ଼ ଅରଣ୍ୟ ଭେଦକରି ଅବଶେଷରେ ଶବରରାଜା ବିଶ୍ୱାବସୁଙ୍କ ଆତିଥ୍ୟ ଗ୍ରହଣକରି ପୁରୁଷୋତ୍ତମ କ୍ଷେତ୍ର ନିକଟରେ ରହିଲେ । ବ୍ରାହ୍ମଣ ଓ ଅରଣ୍ୟବାସୀ ଶବର ମଧ୍ୟରେ ହୃଦୟର ମିଳନ ହେଲା । କ୍ରମଶଃ ବିଦ୍ୟାପତି ବିଶ୍ୱାବସୁର କନ୍ୟା ଲଳିତା ସହ ପ୍ରଣୟ ପାଶରେ ଆବଦ୍ଧ ହୋଇ ଶେଷରେ ତାକୁ ବିବାହ କରି ବିଶ୍ୱାବସୁର ବିଶ୍ୱାସର ପାତ୍ର ହୋଇପାରିଲେ । ଫଳରେ ସ୍ୱୀୟ କନ୍ୟାର ପ୍ରବର୍ତ୍ତନାରେ ବିଶ୍ୱାବସୁ ବିଦ୍ୟାପତିଙ୍କୁ ନୀପମୂଳରେ ନୀଳପ୍ରସ୍ତର ପ୍ରତିମୂର୍ତ୍ତି ନୀଳମାଧବଙ୍କୁ ଦେଖାଇବାକୁ ରାଜି ହେଲେ । କିନ୍ତୁ ସେଦିନ ଆଉ ନୀଳମାଧବ ବିଶ୍ୱାବସୁ ହସ୍ତରୁ ତା'ର ଭକ୍ତି ଅର୍ପିତ ବସ୍ତୁ ଗ୍ରହଣ ନକରି, ଏକ ଶୂନ୍ୟ ବାଣୀଦ୍ୱାରା ସେ ଆଉ ନୀଳମାଧବ ରୂପରେ ବନ୍ୟ ଫଳମୂଳ ଗ୍ରହଣ ନକରି, ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ରୂପରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଅନ୍ନ-ପିଷ୍ଟକାଦି ଭୋଗ ଗ୍ରହଣ କରିବେ ବୋଲି ଜଣାଇ-ଦେଲେ । ବିଶ୍ୱାବସୁ ତାଙ୍କର ଆରାଧ୍ୟଦେବ ନୀଳମାଧବଙ୍କର ଆଉ ଦର୍ଶନ ନପାଇ ପାଗଳପ୍ରାୟ ହୋଇଗଲେ । ବିଦ୍ୟାପତି ତେଣେ ଏ ପ୍ରସଙ୍ଗ ଇନ୍ଦ୍ରଦ୍ୟୁମ୍ନଙ୍କୁ ଜଣାଇବାରୁ ରାଜା ସୈନ୍ୟସାମନ୍ତ ସହ ସେଠାରେ ଆସି ବିଷ୍ଣୁଙ୍କୁ ଖୋଜିବାରେ, ପୁଣି ଦୈବୀବାଣୀ ହେଲା ଯେ, ସମୁଦ୍ରରେ ବିଷ୍ଣୁ ଚିହ୍ନିତ ଥିବା ଏକ ଦାରୁ ଭାସିଆସି ବାଙ୍କି ମୁହାଣରେ ଲାଗିବ ଏବଂ ଏହି ଦାରୁରେ ବିଷ୍ଣୁଙ୍କ ମୂର୍ତ୍ତି ନିର୍ମାଣ କରି ଆରାଧନା କରିବାକୁ ହେବ । ରାଜା ଅତ୍ୟନ୍ତ ଆଗ୍ରହର ସହିତ ଯଜ୍ଞ ସମାପନ କରି ବ୍ରହ୍ମଦାରୁର ଅପେକ୍ଷାରେ ରହିଲେ । ପରେ ପରେ ଦାରୁର ସନ୍ଧାନ ମିଳିଲା; କିନ୍ତୁ ରାଜାଙ୍କ ବଢ଼େଇମାନେ ଦାରୁ-ବିଗ୍ରହ ନିର୍ମାଣ କରି ନ ପାରିବାରୁ ସ୍ୱୟଂ ବିଷ୍ଣୁ ବିଶ୍ୱକର୍ମା ରୂପରେ ଦାରୁମୂର୍ତ୍ତି ଗଠନ ପାଇଁ ପ୍ରସ୍ତୁତ ହୋଇଗଲେ । କିନ୍ତୁ ସୀମିତ ସମୟ ଶେଷ ହେବା ପୂର୍ବରୁ ବିଷ୍ଣୁଦର୍ଶନାକାଂକ୍ଷୀ ମହାରାଣୀ 'ଶ୍ରୀଗୁଣ୍ଡିଚା' ମନ୍ଦିରର ରୁଦ୍ଧଦ୍ୱାର ଖୋଲିଦେବାରୁ ଦେଖାଗଲା ଯେ, ମୂର୍ତ୍ତିନିର୍ମାଣ ବିଶ୍ୱକର୍ମା ଅନ୍ତର୍ହିତ ହୋଇଯାଇଛନ୍ତି ଏବଂ ମୂର୍ତ୍ତିନିର୍ମାଣ ଖଣ୍ଡିଆ ହୋଇ 'ଅପାଣିପାଦ' ଅବସ୍ଥାରେ ରହିଛି । ସେହି ଅପୂର୍ଣ୍ଣ ପ୍ରତିମୂର୍ତ୍ତି ହିଁ ଆଜିର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ଇନ୍ଦ୍ରଦ୍ୟୁମ୍ନ ଏ ମୂର୍ତ୍ତିମାନଙ୍କର ଆରାଧନା ନିମିତ୍ତ ମନ୍ଦିର ସ୍ଥାପନା କଲେ । ରାଣୀଙ୍କ ନାମାନୁସାରେ 'ଗୁଣ୍ଡିଚା ମଣ୍ଡପ' ଓ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନାମାନୁସାରେ 'ଇନ୍ଦ୍ରଦ୍ୟୁମ୍ନ ତୀର୍ଥ' ପୁଷ୍କରିଣୀ ହେଲା । କିନ୍ତୁ ପୁରାଣ ପ୍ରସିଦ୍ଧ ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ଅଦ୍ୟାବଧି ଠିକଭାବରେ ଚିହ୍ନିତ କରାଯାଇ ପାରିନାହିଁ । ତେବେ ସେ ଯାହାହେଉ, ଇନ୍ଦ୍ରଦ୍ୟୁମ୍ନ ମହାରାଜା ଜଗନ୍ନାଥଙ୍କୁ ପୁରୁଷସୂକ୍ତ ମନ୍ତ୍ରରେ, ବଳଭଦ୍ରଙ୍କୁ ଦ୍ୱାଦଶାକ୍ଷର ମନ୍ତ୍ରରେ ଏବଂ ଦେବୀ ସୁଭଦ୍ରାଙ୍କୁ ଦେବୀସୂକ୍ତ ମନ୍ତ୍ରରେ ପୂଜା କଲେ । ପରେ

ପରେ ମୋନଙ୍କ ସହିତ ସୁଦର୍ଶନଙ୍କର ସଂଯୋଗ କରାଯାଇ ଜଗଦେବତା ନୀଳମାଧବ ଐଶ୍ୱର୍ଯ୍ୟ ଭୋଗ ଇଚ୍ଛାକରି ନିଜେ ଚତୁର୍ଦ୍ଧାମୂର୍ତ୍ତିରୂପେ ପ୍ରକାଶିତ ହେଲେ । ଏଥିରୁ ଅନୁମାନ କରାଯାଇପାରେ ଯେ, ପ୍ରଥମେ ନୀଳମାଧବ ହିଁ କ୍ଷେତ୍ରର ଅଧିଷ୍ଠିତ ଦେବତା-ରୂପେ ଥିଲେ । ଜନଶ୍ରୁତିରୁ ନୀଳମାଧବ ଏକ ବୋଲି ପ୍ରକାଶ ପାଏ । ଏହି ଏକମୂର୍ତ୍ତି ପ୍ରଥମେ ତ୍ରିମୂର୍ତ୍ତି ଓ ପରେ ପରେ ଚତୁର୍ଦ୍ଧା ମୂର୍ତ୍ତି ରୂପେ ଆତ୍ମପ୍ରକାଶ କଲେ । ବୋଧହୁଏ ଶବର ପୂଜିତ ନୀଳମାଧବ ପ୍ରଥମେ ଦାରୁମୂର୍ତ୍ତି ନଥିଲେ । ପରବର୍ତ୍ତୀ ସମୟରେ ଏହିମୂର୍ତ୍ତି ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରାର୍ଥନା ଯୋଗୁଁ ଦାରୁମୂର୍ତ୍ତିରୂପେ ପ୍ରକାଶ ପାଇଲେ । ଏବେ ବି ଏହି ନୀଳମାଧବ ଜଗନ୍ନାଥରୂପରେ ଆଦିବାସୀ ଶବରମାନଙ୍କ ପ୍ରଭୁରୂପେ ପୂଜା ପାଉଛନ୍ତି । ଆଜିକାଲି ଆଦିବାସୀ ଶବରମାନେ 'କିତୁଙ୍ଗ୍' ନାମକ ଠାକୁରଙ୍କୁ ପୂଜାକରନ୍ତି । ଏ ଠାକୁରଙ୍କ ମୂର୍ତ୍ତି କାଠରେ ତିଆରି ଏବଂ ଏହା ନାଲି, ଧଳା ଓ ହଳଦିଆ ରଙ୍ଗରେ ଚର୍ଚ୍ଚିତ ହୋଇଥାନ୍ତି । ମୂର୍ତ୍ତି ଉପରେ ଛଣ ତିଆରି ଏକ ଛତା ଟଣାଯାଇଥାଏ । 'କିତୁଙ୍ଗ୍'ର ଅର୍ଥ 'ଜଗତର ନାଥ'—ସୁତରାଂ ଏହି ଆଦିବାସୀ ପୂଜିତ ଦେବତା ଯେ, 'ଜଗନ୍ନାଥ', ଏଥିରେ ଦ୍ୱିରୁକ୍ତି ଥାଇ ନପାରେ । ସେ ଯାହା ହେଉ, ଏହିପରି ଭାବରେ ବହୁ ହଜାର ବର୍ଷ ତଳର ଅନାର୍ଯ୍ୟଦ୍ୱାରା ଆରାଧିତ ଦେବତା ନୀଳମାଧବ କାଳକ୍ରମେ ଆର୍ଯ୍ୟଙ୍କ ଦ୍ୱାରା ଆରାଧିତ ହେଲେ । ସେ 'ଜଗନ୍ନାଥ' ନାମ ବହିଥିବାରୁ ପୃଥିବୀରେ ସବୁ ଜାତି ତଥା ସବୁଧର୍ମର ଉପାସ୍ୟ । ଏବେ ବି ଶବରଙ୍କ ବଂଶଧର ଦଇତାମାନେ ପ୍ରତିବର୍ଷ ମ[illegible]ହିଁଏ ତାଙ୍କର ପୂଜା ଆରାଧନାର ଦାୟିତ୍ୱ ନେଇଥାନ୍ତି । ଏହି 'ଦଇତା' ପୁରାଣ ବର୍ଣ୍ଣିତ 'ଦୈତ୍ୟ' ଏବଂ ଏହି 'ଦୈତ୍ୟ' ହିଁ 'ଅନାର୍ଯ୍ୟ' ବୋଲି ଗବେଷକମାନେ ମତବ୍ୟକ୍ତ କରିଥାନ୍ତି । ତତ୍‌କାଳୀନ ଅନାର୍ଯ୍ୟ-ଦେବତାଙ୍କ ଗୁରୁତ୍ୱ ତଥା ମହିମା ଉପଲବ୍‌ଧିକରି ଜୈନ, ବୌଦ୍ଧ, ତନ୍ତ୍ର, ବୈଷ୍ଣବ ଓ ବ୍ରାହ୍ମଣ୍ୟର ଦେବତା ବୋଲି ଶ୍ରୀଜଗନ୍ନାଥ ଗବେଷକ ତଥା ପଣ୍ଡିତମାନଙ୍କର ଦୃଷ୍ଟିକୋଣରେ ପ୍ରତିପାଦିତ ହୋଇସାରିଛନ୍ତି ।

ପଣ୍ଡିତ ନୀଳକଣ୍ଠ ଦାସ ଜଗନ୍ନାଥଙ୍କୁ ବେଦ ପୁଟର ବୋଲି ବର୍ଣ୍ଣନା କରିଛନ୍ତି । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତଥା ସୁଦର୍ଶନ ପ୍ରଭୃତି ମୂର୍ତ୍ତିଙ୍କର ତାତ୍ତ୍ୱିକ ବ୍ୟାଖ୍ୟାକରି ସେ ଚତୁର୍ଦ୍ଧାମୂର୍ତ୍ତିର ସୃଷ୍ଟିତତ୍ତ୍ୱ ଉପରେ ଆଲୋକପାତ କରିଛନ୍ତି । ପଞ୍ଚସଖାଙ୍କ ରଚନା ଉଲ୍ଲେଖ କରି ସେ ଦର୍ଶାଇଛନ୍ତି ଯେ, ସୁଦର୍ଶନ ହେଲେ 'ମହାଶୂନ୍ୟ', ତା'ପରେ 'ଶୂନ୍ୟ' ବା 'ଜ୍ୟୋତି'ର ପରିକଳ୍ପନା ଯାହାକି ଓଡ଼ିଆ ବୈଷ୍ଣବମାନଙ୍କର କୃଷ୍ଣରୂପ । ଏହାହିଁ ଚତୁର୍ଦ୍ଧା ମୂର୍ତ୍ତିର ଜଗନ୍ନାଥ ସ୍ୱରୂପ । ତା'ପରେ ରଜୋରୂପିଣୀ ଯୋଗମାୟା ପ୍ରକୃତି ଏବଂ ତାହା ରାଧାରୂପୀ ସୁଭଦ୍ରା ନାମରେ ପରିଚିତା । ତା'ପରେ

କର୍ମେନ୍ଦ୍ରିୟର ସଂକେତ ସ୍ୱରୂପ ବଳଭଦ୍ର । ଭାରତୀୟ ସଂସ୍କୃତିର ପରମ ଓ ଚରମ ଅଭିବ୍ୟକ୍ତି ବେଦରେ ପୁଣି ଶ୍ରୀଜଗନ୍ନାଥଙ୍କ ପ୍ରାଚୀନତା ସମ୍ବନ୍ଧରେ ସୂଚନା ମିଳିଥାଏ । ଋକ୍ ବେଦର "ଅଦଃ ଯଦ୍ଦାରୁ ପ୍ଲବତେ ସିନ୍ଧୋ ପାରେ ଅପୁରୁଷମ୍, ତଦାରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍" ଯେଉଁ ସୂକ୍ତଟି ଅଛି, ତାହା ସାୟଣାଚାର୍ଯ୍ୟଙ୍କ ମତରେ ଦାରୁଦେବତା ଜଗନ୍ନାଥଙ୍କ ପ୍ରତି ଉଦ୍ଦିଷ୍ଟ । ଅନ୍ୟମାନଙ୍କ ମତରେ ଋକ୍ ବେଦରେ ଓଡ଼ିଶାର ନାମୋଲ୍ଲେଖ ନ ଥିବାରୁ ଶ୍ରୀଜଗନ୍ନାଥଙ୍କ ପୂଜା ସର୍ବ ଲୋକପ୍ରିୟ ହେବାପରେ ଏହାର ବୈଦିକ ପ୍ରାଚୀନତ୍ୱ ଦେଖାଇବା ପାଇଁ କରାଯାଇଛି । ମାତ୍ର କପିଳେଶ୍ୱର ଗଜପତିଙ୍କ ତାମ୍ରପଟ୍ଟା ସନନ୍ଦ ଅନୁଯାୟୀ ଶ୍ରୀଜଗନ୍ନାଥଙ୍କୁ ଶ୍ରୁତିକଥିତ ବା ବେଦୋକ୍ତ ବୋଲି ବର୍ଣ୍ଣନା କରାଯାଇଛି । ସମଗ୍ର ବେଦର ସାରତତ୍ତ୍ୱ ହିଁ ବ୍ରହ୍ମ । ଚାରିବେଦ ଏ ବ୍ରହ୍ମଙ୍କର ମୂର୍ତ୍ତିମୟ ପ୍ରତୀକ ଚତୁର୍ଦ୍ଧାମୂର୍ତ୍ତି ବୋଲି ବର୍ଣ୍ଣନା କରାଯାଇଛି । ଜଗନ୍ନାଥଙ୍କୁ ଯଜୁର୍ବେଦ, ବଳରାମଙ୍କୁ ସାମବେଦ, ସୁଭଦ୍ରାଙ୍କୁ ଋକ୍ ବେଦ ଏବଂ ସୁଦର୍ଶନଙ୍କୁ ଅଥର୍ବବେଦ ରୂପେ ପରିକଳ୍ପନା କରାଯାଇଛି । ପୁଣି ଏହି ଚତୁର୍ଦ୍ଧାମୂର୍ତ୍ତିଙ୍କୁ 'ସି-କ୍ଷି-ର-ସ୍ତୁ' ଏହି ଚାରି ଅକ୍ଷର ସହିତ ଅଭିନ୍ନ ବୋଲି ବର୍ଣ୍ଣନା କରାଯାଇଛି । ଏହି ଚାରି ଅକ୍ଷର ସମସ୍ତ ଲେଖା, କାର୍ଯ୍ୟ ଓ ପଠନର ଆରମ୍ଭରେ ସାଧାରଣତଃ ସ୍ଥାନ ପାଇଥାଏ । ଏହି ସବାରମ୍ଭ ହିଁ ଚତୁର୍ଦ୍ଧାମୂର୍ତ୍ତି ଏବଂ ସୃଷ୍ଟିର ଆରମ୍ଭ ଏହି ଚାରିମୂର୍ତ୍ତିଙ୍କ ଠାରୁ ହୋଇଥିବାର ସୂଚନା ମିଳେ । ତେଣୁ ସି'-ଶିଶୁବେଦ ବଳଭଦ୍ର, 'କ୍ଷି' ଯଜୁର୍ବେଦ ଜଗନ୍ନାଥ, 'ର'-ଋକ୍‌ବେଦ ସୁଭଦ୍ରା, 'ସ୍ତୁ'-ଅଥର୍ବବେଦ ସୁଦର୍ଶନ ଭାବରେ ଚର୍ଚ୍ଚିତ ହୋଇଛନ୍ତି । ପୁଣି ଅନ୍ୟ ଏକ ପ୍ରସଙ୍ଗରେ ଏହି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଶରୀରରୂପେ ପରିକଳ୍ପନା କରାଯାଇ ବଳଭଦ୍ରଙ୍କୁ ଶ୍ରବଣ, ଜଗନ୍ନାଥଙ୍କୁ ନୟନ, ସୁଭଦ୍ରାଙ୍କୁ ଅଧର ତଥା ସୁଦର୍ଶନଙ୍କୁ 'ନାସିକା' ଭାବରେ ଗ୍ରହଣ କରି, ସେମାନଙ୍କୁ ଶୁକ୍ଳ, ପୀତ, ହରିତ ତଥା ଲୋହିତ ପ୍ରଭୃତି ରଙ୍ଗରେ ରଞ୍ଜିତ କରାଯାଇଛି । 'ପଞ୍ଚରାତ୍ର ଆଗମ' ଗ୍ରନ୍ଥାନୁଯାୟୀ ବଳଭଦ୍ର ବିରାଟ, ସୁଭଦ୍ରା-ସୂତ୍ରାତ୍ମା, ଜଗନ୍ନାଥ ଅନ୍ତର୍ଯ୍ୟାମୀ ଓ ସୁଦର୍ଶନ-ଶୁଦ୍ଧ ବୋଲି ଚର୍ଚ୍ଚିତ ହୋଇଛନ୍ତି । ସଂହିତାନୁଯାୟୀ ସେମାନେ ବିଶ୍ୱ, ତୈଜସ, ପ୍ରାଜ୍ଞ ଓ ତୁରୀୟ । ରାମାନୁଜାଚାର୍ଯ୍ୟଙ୍କ ପଞ୍ଚରାତ୍ର ପୂଜାବିଧି ଅନୁସାରେ ଜଗନ୍ନାଥଙ୍କ ଜ୍ଞାନ ଇଚ୍ଛା ଓ କ୍ରିୟାଶକ୍ତିରୂପେ ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ଗ୍ରହଣ କରିଥିବା ଜଣାଯାଏ । ପୁନଶ୍ଚ ଜଗନ୍ନାଥଙ୍କୁ ଓଁକାର ବ୍ରହ୍ମ ବୋଲି ପ୍ରତିପାଦନ କରି ଯାଇଛି । ଏହା 'ଅ'କାର, 'ଉ'କାର ଓ 'ମ'କାରର ସମଷ୍ଟି । 'ଅ'କାର ବ୍ରହ୍ମାତ୍ମିକ 'ଉ'କାର ବିଷ୍ଣୁତ୍ମିକ ଓ 'ମ'କାର ଶିବ ପ୍ରତୀକ । ତେଣୁ ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱରଙ୍କ ସମଷ୍ଟି ହିଁ 'ଓଁ' । ଏହା ତ୍ରିଗୁଣାତ୍ମକ ଥିବାଯୋଗୁଁ ତ୍ରିମୂର୍ତ୍ତିର କଳ୍ପନା କରାଯାଇଛି । ଏହି 'ଓଁ' ଶବ୍ଦକୁ ପଣ୍ଡିତ ନୀଳକଣ୍ଠ ସଂପୂର୍ଣ୍ଣଭାବେ ଝଙ୍କାଳୀୟ ବୋଲି ମତ ଦେଇଛନ୍ତି । ଏହାକୁ ପ୍ରମାଣ କରିବାକୁ ଯାଇ ସେ କହିଛନ୍ତି ଯେ ଯେଉଁଭଳି ଜଣେ ବ୍ୟକ୍ତି ଅନ୍ୟ ଏକ ବ୍ୟକ୍ତିକୁ ଡାକିଲେ, ସେ

ସମ୍ବୋଧନର ଉତ୍ତର ଓ ସ୍ୱୀକାରାର୍ଥକ ଶବ୍ଦ ମାଧ୍ୟମରେ ଦେଇଥାଏ ସେହିଭଳି ଆତ୍ମା ପରମାତ୍ମା ମଧ୍ୟରେ ସମ୍ବୋଧନ ସ୍ୱୀକାର ବା ସମ୍ପର୍କ 'ଓଁ' ମାଧ୍ୟମରେ ହିଁ ହୋଇଥାଏ । ମାଣ୍ଡୁକ୍ୟ ଉପନିଷଦ ଅନୁସାରେ ଏହି 'ଓଁ' ହେଉଛି ସମଗ୍ର ଜଗତ୍ । ତେଣୁ ଏହି ଜଗତ ଯାହା ପ୍ରକୃତିର ରୂପାନ୍ତର ତାହା ଜଗନ୍ନାଥଙ୍କ ଭିତରେ ହିଁ କଳ୍ପିତ । ଏ ଦୃଷ୍ଟିରୁ ଜଗତ ମାତ୍ର ଅପର ବ୍ରହ୍ମ ଓ ଜଗନ୍ନାଥ ହେଉଛନ୍ତି ପରବ୍ରହ୍ମ । ଗୀତାର 'ଏକାଂଶେନ ସ୍ଥିତଂ ଜଗତ୍' ଏହି ଦୃଷ୍ଟିକୋଣରୁ ଯଥାର୍ଥ । ଏତଦ୍ବ୍ୟତୀତ ଶ୍ରୀମହାପ୍ରଭୁଙ୍କ ଚକ୍ଷୁ, ଅଧର ପଲ୍ଲବ, ଭ୍ରୂଲତା ମଧ୍ୟରେ ପ୍ରଣବ ଭାବରେ ଓଁ ହେ ରୂପାନ୍ତରିତ ହୋଇଛି ଏବଂ ଶ୍ରୀ ଜଗନ୍ନାଥଙ୍କ ମୁଖାରବିନ୍ଦରେ କେବଳ ଉଚ୍ଚାରଣୀୟ ଲିପି 'ଅ ଉ ମ' ପ୍ରତିଫଳିତ ହୋଇଛି ତାର ସୂଚନା ଅନେକ ଗବେଷକମାନଙ୍କ ଆଲୋଚନାରୁ ପ୍ରତିପାଦିତ ହେଉଅଛି । ପୁଣି ନିର୍ଗୁଣ ବ୍ରହ୍ମବାଦୀମାନଙ୍କ ଦୃଷ୍ଟିରେ ଶ୍ରୀ ଜଗନ୍ନାଥ ନିର୍ଗୁଣ ବ୍ରହ୍ମ । ସେଥିପାଇଁ ଜଗନ୍ନାଥଙ୍କୁ ଓଡ଼ିଶାର ବହୁ ପ୍ରାଚୀନ କବି ଅଲେଖ, ଶୂନ୍ୟରୂପୀ, ନିର୍ଗୁଣ ବ୍ରହ୍ମ ପ୍ରଭୃତି ଆଖ୍ୟା ପ୍ରଦାନ କରିଛନ୍ତି । ନିର୍ଗୁଣ ନିରାକାର, ନିର୍ବିଶେଷ ବ୍ରହ୍ମଙ୍କୁ ଉପାସନା କଲେ ମୁକ୍ତିଲାଭ ହେବ ବୋଲି ସେମାନଙ୍କର ମତ । ପୁରୁଷୋତ୍ତମ ଜଗନ୍ନାଥଙ୍କୁ ସାକାର ଓ ନିରାକାର, ସଗୁଣ ଓ ନିର୍ଗୁଣ, ସବିଶେଷ ଓ ନିର୍ବିଶେଷ ଭାବେ ଆରାଧନା କରାଯାଇ ଥାଏ । ଅନେକ ଗବେଷକ ପୁଣି ଶ୍ରୀ ଜଗନ୍ନାଥଙ୍କୁ ବ୍ରହ୍ମ ଏବଂ ସେ ଏକ ହୃଦୟ ଭିତରେ ସନ୍ନିବିଷ୍ଟ ବୋଲି ବର୍ଣ୍ଣନା କରିଛନ୍ତି । ଏ କ୍ଷେତ୍ରରେ ଶ୍ରୀମନ୍ଦିରକୁ ସେମାନେ ତାଙ୍କର କ୍ଷେତ୍ରରୂପ ପରିକଳ୍ପନା କରିଥାନ୍ତି । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା- ଏହି ତ୍ରିମୂର୍ତ୍ତିଙ୍କୁ ପୁଣି ସଚ୍ଚିଦାନନ୍ଦ ପୁରୁଷ ରୂପେ ଗ୍ରହଣ କରାଯାଇଛି । ସେମାନେ ସତ୍-ଚିତ୍-ଆନନ୍ଦର ପ୍ରତୀକ । ପୁନଶ୍ଚ ସେମାନଙ୍କୁ ଯଥାକ୍ରମେ ଭଗବାନଙ୍କର ପ୍ରେମଘନ, ଜ୍ଞାନଘନ ଓ ଆନନ୍ଦଘନ ମୂର୍ତ୍ତି ରୂପେ ପରିକଳ୍ପନା କରାଯାଏ । ଏତଦ୍ଭିନ୍ନ ଅବ୍ୟକ୍ତ, ବ୍ୟକ୍ତ, ବ୍ୟକ୍ତାବ୍ୟକ୍ତ, ଶିବ, ଶକ୍ତି ଓ ପୁରୁଷ, ଜ୍ଞାନ, କର୍ମ ଓ ଭକ୍ତି, ନିର୍ଗୁଣ, ସଗୁଣ ଓ ପରବ୍ରହ୍ମ ଇତ୍ୟାଦି ରୂପରେ ମଧ୍ୟ ଜଗନ୍ନାଥଙ୍କ ମୂର୍ତ୍ତିକୁ ଗ୍ରହଣ କରାଯାଇ ଥିବାର ସୂଚନା ମିଳେ । ଏହି ସବୁ ଦାର୍ଶନିକ ମତବାଦ ଭିତରେ ଜଗନ୍ନାଥ ଅପୂର୍ବ ନିବିଡ ଭାବରେ ଯୋଗସୂତ୍ର ସ୍ଥାପନକରି ସମସ୍ତଙ୍କୁ ଶାନ୍ତି ପ୍ରଦାନ କରିପାରନ୍ତି, ଚିନ୍ତାକଲେ ମନ ବିସ୍ମୟ ସାଗରରେ ମଗ୍ନ ହୁଏ । ପ୍ରକୃତରେ ଜଗନ୍ନାଥ ସଚ୍ଚିଦାନନ୍ଦମୟ ପୁରୁଷୋତ୍ତମ, ଜୀବାତ୍ମାର ନିୟାମକ, ଉପନିଷଦର ବ୍ରହ୍ମ ଏବଂ ଜନ ସମାଜର ପରମ ବନ୍ଦନୀୟ ତଥା ପରମ ଆଦର୍ଶ ପୁରୁଷ । ଏହି ଦାରୁବ୍ରହ୍ମଙ୍କ ଦ୍ୱାରା ସାରୂପ୍ୟ, ସାଯୁଜ୍ୟ ଓ ସାଲୋକ୍ୟ ମୁକ୍ତିପାଇଁ ଯେ କୌଣସି ଭକ୍ତ ଆକାଂକ୍ଷା ପ୍ରକାଶ କରିଥାଏ ।

ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶରେ ଶବର ସଂସ୍କୃତି ପରେ ଜୈନ ସଂସ୍କୃତିର ଭୂମିକା ମଧ୍ୟ ବିଶେଷ କୌତୁହଳୋଦ୍ଦୀପକ ତଥା ତାତ୍ପର୍ଯ୍ୟପୂର୍ଣ୍ଣ । ଅନେକ

ଐତିହାସିକଙ୍କ ମତରେ ଶ୍ରୀଜଗନ୍ନାଥ ଜୈନଧର୍ମର ଦେବତା ଏବଂ ତାଙ୍କ ସହ 'ଜୀନତ୍ୱ' ଆରୋପ କରିବା କୌଣସି ଦୃଷ୍ଟିକୋଣରୁ ଅପ୍ରାସଙ୍ଗିକ ମନେହୁଏ ନାହିଁ । ଜୈନଧର୍ମ ସହିତ ପ୍ରାଚୀନ କଳିଙ୍ଗର ନିବିଡ଼ ସମ୍ପର୍କ ଥିଲା । ଜୈନଧର୍ମର ପ୍ରବର୍ତ୍ତକ ଆଦିନାଥ ଋଷଭଦେବଙ୍କୁ ଅନେକ କାଳ୍ପନିକ ବ୍ୟକ୍ତିରୂପେ ଗ୍ରହଣ କରିଥିଲେ ମଧ୍ୟ, ଅନ୍ୟମାନଙ୍କ ମତରେ ସେ ଏକ ଐତିହାସିକ ବ୍ୟକ୍ତିରୂପେ ବିଦିତ । ଋଷଭଦେବ ସମ୍ଭବତଃ ସେତେବେଳେ କଳିଙ୍ଗର ଆରାଧ୍ୟ ଦେବତା ଥିଲେ । ଖଣ୍ଡଗିରିରେ ଥିବା ଋଷଭନାଥ ମନ୍ଦିର ତଥା ହାତୀଗୁମ୍ଫା ଶିଳାଲିପିରେ 'ଅଗ୍ରଜିନ' କଳିଙ୍ଗରେ ପୂଜିତ ହେଉଥିବାର ସୂଚନା ମିଳେ । ଖ୍ରୀ.ପୂ. ଚତୁର୍ଥ ଶତକରେ ନନ୍ଦରାଜା ମହାପଦ୍ମନନ୍ଦ କଳିଙ୍ଗ ଜୟକରି 'ଜୀନାସନ'କୁ ଅପହରଣ କରିଥିବା ଏବଂ ପରବର୍ତ୍ତୀକାଳରେ ତାହା ଖାରବେଳଙ୍କ ଦ୍ୱାରା କଳିଙ୍ଗକୁ ପ୍ରତ୍ୟାହୃତ ହୋଇଥିବା ବିଷୟ ଏହି ଶିଳାଲେଖରୁ ସୂଚିତ ହୁଏ । ଏହି ଶିଳାଲିପି-ବର୍ଣ୍ଣିତ 'ଜୀନାସନ' ଯେ କଳିଙ୍ଗର ଗୌରବରେ କଳିଙ୍ଗର 'ଆଦିଜୀନ'— ଏଥିରେ ସନ୍ଦେହ ନାହିଁ । କଳିଙ୍ଗର ପିଥୁଣ୍ଡ ନଗରୀରେ ଏହି ଆଦିଜୀନ ମୂର୍ତ୍ତି ପୂଜିତ ହେଉଥିବାର ସୂଚନା ମିଳେ । 'ପିଥୁଣ୍ଡ'କୁ ବର୍ତ୍ତମାନର ପୁରୀ ସହିତ ଚିହ୍ନିତ କରାଯାଇଛି ଯେହେତୁ ଏହା ମାନଦା (ମହାନଦୀ) ଓ ମୋଷୋଲେଇ (ଋଷିକୁଲ୍ୟା) ନଦୀ ଦ୍ୱୟର ମଧ୍ୟବର୍ତ୍ତୀ ଅଞ୍ଚଳରେ ଅବସ୍ଥିତ । ସୁତରାଂ ପୁରୀରେ ପୂର୍ବରୁ ଋଷଭଦେବଙ୍କୁ 'ଜାତୀୟ ଦେବତା' ରୂପେ ଉପାସନା କରାଯାଉଥିବା ଏଥିରୁ ଅନୁମାନ କରାଯାଇପାରେ । ତତ୍କାଳୀନ ଓଡ଼ିଶାର ଧର୍ମଜୀବନର ପ୍ରତୀକ ତଥା ମହାନ୍ ସମ୍ପତ୍ତି 'ଜୀନାସନ' ଯେ ଜିନନାଥ ବା ଜଗନ୍ନାଥଙ୍କ ଆସନ ଏବଂ 'ଆଦିଜୀନ' ଯେ ସ୍ୱୟଂ ଜଗନ୍ନାଥଙ୍କ ନାମାନ୍ତର ମାତ୍ର ହୋଇପାରେ । ସାଧାରଣତଃ 'ଜଗତର ନାଥ' ବୋଲି ଜଗନ୍ନାଥଙ୍କୁ ମାନବ ସମାଜ ଗ୍ରହଣ କରିଥାଏ । କିନ୍ତୁ ଜୈନ ଅନୁଷ୍ଠାନର ଏକ ଅଂଶବିଶେଷ ରୂପେ 'ଜଗନ୍ନାଥ' 'ଜଗତର ନାଥ' ନହୋଇ ବରଂ 'ଜଗତନାଥ' ହେବା ଅଧିକ ପ୍ରାସଙ୍ଗିକ ମନେହୁଏ । ଏଠାରେ 'ଜଗତ'କୁ ନାମ ବିଶେଷ ଏବଂ 'ନାଥ' କୁ 'ଉପାଧି' (Surname) ରୂପେ ଗ୍ରହଣ କରାଯାଇପାରେ । କାରଣ ଋଷଭନାଥ, ଶାନ୍ତିନାଥ, ନେମିନାଥ ପ୍ରଭୃତି ପ୍ରାୟ ସମସ୍ତ ଜୈନତୀର୍ଥଙ୍କରମାନଙ୍କୁ ବ୍ୟକ୍ତିବିଶେଷ ରୂପେ ଗ୍ରହଣ କରାଯାଇ, ପ୍ରତ୍ୟେକଙ୍କୁ 'ନାଥ' ରୂପକ ଉପାଧି ପ୍ରଦାନ କରାଯାଇଛି । 'ଜଗତ ନାଥ'ରୁ ଅନେକେ 'ଜଗନ୍ନାଥ' ଶବ୍ଦର ସୃଷ୍ଟି ହେବାର ସମ୍ଭାବନା ଥିବାରୁ, 'ଜଗନ୍ନାଥ'ଙ୍କୁ ଜୈନଧର୍ମ ଭିତରକୁ ଟାଣିନେବା ଅସ୍ୱାଭାବିକ ମନେହୁଏ ନାହିଁ । ପୁଣି ଜଗନ୍ନାଥଙ୍କ ପ୍ରଚଳିତ ରଥଯାତ୍ରା ପୂର୍ବରୁ ଜୈନମାନଙ୍କ ରଥଯାତ୍ରା ଉତ୍ସବର ପରିଣତି ବୋଲି ମନେହୁଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା (ଗୁଣ୍ଡିଚା ଯାତ୍ରା) ତିଥି ହେଉଛି ପ୍ରଥମ ଜୈନ-ତୀର୍ଥଙ୍କର ଋଷଭନାଥଙ୍କ ଗର୍ଭ କଲ୍ୟାଣ ଦିବସ । ଏହି ଦିନ ଋଷଭନାଥ ଗର୍ଭ ମଧ୍ୟରେ ଅବସ୍ଥାନ କରିଥିଲେ ବୋଲି ଜୈନମାନେ ବିଶ୍ୱାସ କରନ୍ତି । ସେଥିପାଇଁ ଏହି ଦିନକୁ

ଜୈନମାନେ ଅତି ପବିତ୍ର ଦିବସ ବୋଲି ମନେ କରିଥାନ୍ତି । ଏହିଦିନ ଋଷଭଦେବଙ୍କ ରଥଯାତ୍ରା ବିଧାନଥିବା ଜୈନଧର୍ମ ଗ୍ରନ୍ଥମାନଙ୍କରୁ ଜଣାଯାଏ । ସେହି ପରିପ୍ରେକ୍ଷିରେ ହୁଏତ ପ୍ରୋକ୍ତ ତିଥିରେ ଜଗନ୍ନାଥଙ୍କ ରଥଯାତ୍ରା ସମ୍ପାଦିତ ହେଉଥିବ ବୋଲି ଅନୁମାନ କରାଯାଇପାରେ । ପୁଣି ଜଗନ୍ନାଥଙ୍କ ଭଳି ଜୈନ ପ୍ରତିମାମାନଙ୍କର ସ୍ନାନଯାତ୍ରାର ବିଧି ମଧ୍ୟ ରହିଛି । ଜଗନ୍ନାଥଧାମର କଳ୍ପବୃକ୍ଷ ଯେ ଜୈନ କଳ୍ପବୃକ୍ଷ ଏବଂ ଖାରବେଳଙ୍କ ଆନୀତ 'ଜୀନାସନ' ଯେ ଜଗନ୍ନାଥଙ୍କର ପ୍ରସିଦ୍ଧ 'ରତ୍ନବେଦୀ'—ଏହା ଅନେକ ଗବେଷକ ତଥା ପଣ୍ଡିତମାନଙ୍କର ମତ । ଅନେକ ସ୍ଥଳରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଜୈନ ତ୍ରିରତ୍ନ ବା ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର ବୋଲି କୁହାଯାଇଛି । କମ୍ବଦନ୍ତୀ ବର୍ଣ୍ଣିତ ନୀଳମାଧବ ମୂର୍ତ୍ତି ପ୍ରସ୍ତରଖଣ୍ଡ ଖୋଦିତ ଜୈନ ଓ ତ୍ରିରତ୍ନମୂର୍ତ୍ତି । ପ୍ରଥମେ ଏହା ଶବର ପୂଜିତ ଥିବାରୁ ଏମାନେ ହସ୍ତ ପଦ ଶୂନ୍ୟ । ପୁଣି ଅନେକ ଶ୍ରୀମନ୍ଦିରସ୍ଥ ବାଇଶ ପାବଚ୍ଛକୁ ବାଇଶ ଜଣ 'ଜୈନତୀର୍ଥଙ୍କର'ଙ୍କର ପ୍ରତୀକ ବୋଲି ମତପ୍ରକାଶ କରନ୍ତି । ଉପନିଷଦ୍ ଓ ବୈଦିକ ଦର୍ଶନରେ ଜୈନଧର୍ମର ପ୍ରଭାବ ଶ୍ରୀଜଗନ୍ନାଥଙ୍କ ପ୍ରସାଦକୁ 'କୈବଲ୍ୟ' କୁହାଯାଇଥାଏ । ପଣ୍ଡିତ ନୀଳକଣ୍ଠଙ୍କ ମତରେ ଅଜୀବରୁ ଜୀବକୁ ପୃଥକ୍ କଲେ ବ୍ୟକ୍ତି କେବଳ ଜୀବମାତ୍ର ବା 'କେବଳୀ' ହେବ । ଏହି 'କେବଳୀ' ଠାରୁ 'କୈବଲ୍ୟ' ଉଦ୍ଭବ ହୋଇଥାଏ ଏବଂ 'କୈବଲ୍ୟ' ପ୍ରାପ୍ତି ପରେ ଲୋକ ନିର୍ବାଣ ଲାଭ କରେ । ଏହି 'କୈବଲ୍ୟ' ଶବ୍ଦ ଜୈନଦର୍ଶନରୁ ଆସିଥିବା ଅନୁମାନ । ସେଥିପାଇଁ ବୋଧହୁଏ ଶ୍ରୀଜଗନ୍ନାଥଙ୍କ 'ମହାପ୍ରସାଦ'କୁ 'କୈବଲ୍ୟ' ନାମରେ ନାମିତ କରାଯାଇଛି ଏବଂ ଏହି ମହାପ୍ରସାଦ ଲାଭକରି ମନୁଷ୍ୟ ଇହ ଜଗତରୁ ଉଦ୍ଧାର ପାଇ ନିର୍ବାଣ ପ୍ରାପ୍ତି ହୋଇଥାଏ । କମ୍ବଦନ୍ତୀ ଓ ପୁରାଣବର୍ଣ୍ଣିତ ନୀଳମାଧବ ଓ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ପୁଷ୍ପମନ୍ଦିର ନିର୍ମାଣ ବୃତ୍ତାନ୍ତକୁ ଏ ପରିପ୍ରେକ୍ଷିରେ ଅନେକ ଖାରବେଳଙ୍କ ରାଜତ୍ୱର ବୃତ୍ତାନ୍ତବୋଲି ଅଭିହିତ କରିଛନ୍ତି । ସେଥିପାଇଁ ଋଷଭଦେବ ଓ ଜଗନ୍ନାଥଂକ ସମ୍ପର୍କ ନେଇ ଅଧିକ ଗବେଷଣାର ପ୍ରୟୋଜନ ରହିଛି । ସମୟକ୍ରମେ 'ଋଷଭପୂଜା'ରୁ 'ଶ୍ରୀଜଗନ୍ନାଥଙ୍କ ପୂଜା' ଉଦ୍ଭବ ହୋଇଛି ବୋଲି ଅନେକଙ୍କର ମତ । ପୁଣି ମାଦଳ ପାଞ୍ଜିରେ ଜଗନ୍ନାଥ ଓ ଋଷଭଦେବ ପୂଜାପାଇଁ ଶବର ଓ ଜୈନମାନଙ୍କ ମଧ୍ୟରେ ବିପ୍ଳବ ସୃଷ୍ଟି ହୋଇଥିବାର ସୂଚନା ମିଳେ । 'ଗିରିନାର' ନାମରେ ଦଳେ ଜୈନ ଶବରମାନଙ୍କ ସହିତ କୌଶଳରେ ମଧ୍ୟ ତାଙ୍କ ପୂଜାରେ କିଛି ପରିବର୍ତ୍ତନ ଘଟାଇଥିଲେ ମାତ୍ର ଋଷଭ ଭକ୍ତ 'ନାଥ' ଗଣ ଏହାକୁ ଗ୍ରହଣ କଲେ ନାହିଁ । ଏହାର ପ୍ରତିବାଦରେ ଦଳେ 'କଙ୍ଗୋଦ' ଅଞ୍ଚଳକୁ ଓ ଅନ୍ୟଦଳେ ମହାନଦୀ ପାରହୋଇ ମାଳ ଅଞ୍ଚଳକୁ ଚାଲିଗଲେ । ଏହା ଋଷଭ ପୂଜାରୁ ଜଗନ୍ନାଥଙ୍କ ପୂଜାକୁ ପରିବର୍ତ୍ତିତ ହୋଇଥିବାର ଜଣାଯାଏ । ଯେ ଯାହାହେଉ, ଏସବୁ ଦୃଷ୍ଟିରୁ ଜଗନ୍ନାଥଙ୍କଠାରେ 'ଜୈନତ୍ୱ' ଆରୋପ କରିବା ଅପ୍ରାସଙ୍ଗିକ ମନେହୁଏ ନାହିଁ ବା ଜଗନ୍ନାଥ ଯେ, ଜୈନଧର୍ମର ଦେବତା—ଏହାକୁ ଅବିଶ୍ୱାସ ମଧ୍ୟ କରିହୁଏ ନାହିଁ ।

ଓଡ଼ିଶାର ଧର୍ମ ଓ ସଂସ୍କୃତିର ପ୍ରାଣକେନ୍ଦ୍ର ଓ ପ୍ରତୀକଶିଖ ଶ୍ରୀଜଗନ୍ନାଥ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ବୌଦ୍ଧଧର୍ମ ସହିତ ସମ୍ପୃକ୍ତ ଥିବାର ବହୁ ପ୍ରମାଣ ମିଳେ । ବୌଦ୍ଧଧର୍ମ ବୁଦ୍ଧଦେବଙ୍କ ଜୀବିତାବସ୍ଥାରୁ ଓଡ଼ିଶାର ସାଂସ୍କୃତିକ ଜୀବନର ଅସ୍ଥିମଜ୍ଜାଗତ ହୋଇଯାଇ ଅନ୍ୟୂନ ଦେଢ଼ହଜାର ବର୍ଷଧରି ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ଧର୍ମ ଉପରେ ପ୍ରଭାବ ବିସ୍ତାର କରିଆସିଛି ଅଥବା ବିଭିନ୍ନ ଧର୍ମର କଳେବର ଭିତରେ ନିଜର ଅସ୍ମିତାକୁ ସ୍ଥାପନକରି ଭିନ୍ନ ରୂପରେ ରହିଆସିଛି । ଓଡ଼ିଶାର ସକଳ ଧର୍ମ ଯେହି ଜଗନ୍ନାଥ ଭିତରେ ହିଁ ନିଜସ୍ୱ ସନ୍ଧାନ କରିଥିବାରୁ, ସେହି ଜଗନ୍ନାଥ ଧର୍ମ ବା ଚେତନାର ବିବର୍ତ୍ତନରେ ବୌଦ୍ଧଧର୍ମର ପ୍ରଭାବ ଯେ, ନିଶ୍ଚିତ ଭାବରେ ଗୁରୁତ୍ୱ ତଥା ତାତ୍ପର୍ଯ୍ୟପୂର୍ଣ୍ଣ-ଏହା ନିଃସନ୍ଦେହରେ କୁହାଯାଇପାରେ ।

ଓଡ଼ିଶାର ସଂସ୍କୃତି ଓ ସାହିତ୍ୟରେ ଜଗନ୍ନାଥ ବୁଦ୍ଧରୂପେ ପ୍ରତିଷ୍ଠିତ । ଜଗନ୍ନାଥଙ୍କ ମଧ୍ୟରେ 'ବୁଦ୍ଧତ୍ୱ' ଆରୋପଣ ଓ ଜଗନ୍ନାଥ ଉପାସନାର ଉନ୍ମେଷ ସମ୍ପର୍କରେ କେତେକ କୌତୂହଳୋଦ୍ଦୀପକ କିମ୍ବଦନ୍ତୀ ସହିତ, ଏ ସମ୍ବନ୍ଧରେ ଅନେକ ଐତିହାସିକ ତଥ୍ୟ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ଧର୍ମକୀର୍ତ୍ତିଙ୍କ ଦ୍ୱାରା ରଚିତ 'ଦାଠାବଂଶ'କୁ ଭିତ୍ତିକରି ବୁଦ୍ଧଦେବଙ୍କ ବାମଦନ୍ତ ବିଷୟରେ ଯେଉଁ କିମ୍ବଦନ୍ତୀ ଅଛି, ତାହାକୁ ଆଣି ଅନେକ ଜଗନ୍ନାଥଙ୍କ ସହିତ ସମ୍ପର୍କିତ କରିଥାନ୍ତି । ଜଗନ୍ନାଥଙ୍କ 'ନବକଳେବର' ଅର୍ଥାତ୍ ପ୍ରତି ବାରବର୍ଷରେ ନୂତନ ମୂର୍ତ୍ତି ନିର୍ମାଣବେଳେ ବସ୍ତ୍ରାବୃତ ଚକ୍ଷୁ ଏକ ପୂଜକ ଜଗନ୍ନାଥଙ୍କ ପ୍ରାଚୀନ ପ୍ରତିମାର କୁକ୍ଷିକନ୍ଦରରୁ କୌଷେୟ ବସ୍ତ୍ରାବୃତ କୌଣସି ରହସ୍ୟ-ଜନକ ଦ୍ରବ୍ୟ କାଢ଼ିଆଣି ନୂତନ ପ୍ରତିମାର ଠିକ୍ ସେହି ସ୍ଥାନରେ ରଖିଦିଏ । ପଣ୍ଡିତ ମାନଙ୍କର ମତ ଯେ ଏହି ରହସ୍ୟମୟ ବସ୍ତୁଟି 'ଦାଠାବଂଶ' ରଚିତ ବୁଦ୍ଧଙ୍କ ଦନ୍ତାବଶେଷ ବ୍ୟତୀତ ଅନ୍ୟ କିଛି ନୁହେଁ । କିନ୍ତୁ ଏ ଦନ୍ତର ସିଂହଳ ସ୍ଥାନାନ୍ତର ତଥା ଏହାକୁ ସମୁଦ୍ରରେ କ୍ଷେପଣ ପ୍ରଭୃତି ଅନ୍ୟାନ୍ୟ ଭିନ୍ନଭିନ୍ନ କାହାଣୀରୁ, ଏହାର ସତ୍ୟତା ଉପରେ ସାଧାରଣତଃ ସନ୍ଦେହ ଘନୀଭୂତ ହୋଇଥାଏ । ପ୍ରୋକ୍ତ ଦନ୍ତ ଉପାସିତ ହେଉଥିବା ସ୍ଥଳୀ 'ଦନ୍ତପୁରୀ' ମଧ୍ୟ 'ପୁରୀ' ବୋଲି ଅନେକ ସନ୍ଦେହ ପ୍ରକାଶ କରନ୍ତି । ତେବେ ଏହି ବୁଦ୍ଧ-ଦନ୍ତ ଗଳ୍ପର ଛାୟା ଜଗନ୍ନାଥଙ୍କ ଉତ୍ପତ୍ତି ସମ୍ବନ୍ଧୀୟ ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀ ଉପରେ ପଡ଼ିଥିବା ଅନୁମାନ । କଥିତ ଅଛି ଯେ ଭଗବାନ୍ ଶ୍ରୀକୃଷ୍ଣଙ୍କର ମହାପ୍ରୟାଣ ପରେ ତାଙ୍କର ଶବଦାହ କରାଗଲାବେଳେ କୌଣସି ଅସ୍ଥି ବିଶେଷ ଅଦାହ୍ୟ ରହିଥିବାରୁ ତାହାକୁ ବଟ ଡାଳରେ ବାନ୍ଧି, ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ଦର୍ଶନ ପାଇଁ ତପସ୍ୟା କରୁଥିବା ନୀଳାଚଳ ନିକଟସ୍ଥ ସମୁଦ୍ରରେ ଭସାଇ ଦିଆଗଲା । ଅସ୍ଥିଟି ପାଇ ବିଷ୍ଣୁଙ୍କ ଆଦେଶରେ ଦାରୁ-ବିଗ୍ରହ ମଧ୍ୟରେ ସ୍ଥାପନ କରି ଇନ୍ଦ୍ରଦ୍ୟୁମ୍ନ ଯାହାଙ୍କର ପୂଜା ଆରମ୍ଭ କଲେ, ସେହି ଦାରୁବିଗ୍ରହ ହେଉଛନ୍ତି ସ୍ୱୟଂ ଜଗନ୍ନାଥ । କୃଷ୍ଣଙ୍କର ଏହି ଅସ୍ଥିକୁ ପୁଣି ଅନେକ

ବୁଦ୍ଧଙ୍କ ଦନ୍ତ ବୋଲି ମତ ପ୍ରକାଶ କରନ୍ତି । କିନ୍ତୁ ଏହା ଯେ ଏକ ଅସାର ଯୁକ୍ତି, ଏହା ନିଃସନ୍ଦେହ । କାରଣ ବୈଷ୍ଣବମାନେ ସାଧାରଣତଃ ମୃତ ବ୍ୟକ୍ତିର ଦେହାବଶେଷ ପୂଜାର ବିରୋଧୀ ହୋଇଥିବାରୁ, ସେମାନେ ଜଗନ୍ନାଥଙ୍କ ଠାରେ ଏ ପ୍ରକାର ବ୍ରହ୍ମପରିବର୍ତ୍ତନକୁ ଗ୍ରହଣ କରିପାରନ୍ତି ନାହିଁ ।

ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର—ବୌଦ୍ଧ ଧର୍ମର ତିନୋଟି ମୁଖ୍ୟ ପ୍ରତୀକ ବା ତ୍ରିରତ୍ନ, ବୁଦ୍ଧ, ଧର୍ମ ଓ ସଙ୍ଘରୁ ଉତ୍ପତ୍ତି ବୋଲି ଐତିହାସିକମାନେ ମତ ଦିଅନ୍ତି । ଏହି ତ୍ରିରତ୍ନ ଭିତରେ ଧର୍ମକୁ ସ୍ତ୍ରୀ ରୂପରେ କଳ୍ପନା କରାଯାଇଛି । ମଥୁରା ଓ ବନାରସରେ ଜଗନ୍ନାଥ ଶବ୍ଦଟି ଚକ୍ରଯୁକ୍ତ ବୌଦ୍ଧାବତାରେ ଶବ୍ଦ ବୋଲି ପ୍ରକାଶ ପାଉଥିବାରୁ ଜଗନ୍ନାଥଙ୍କ ବୌଦ୍ଧ ଉତ୍ପତ୍ତିରେ ସନ୍ଦେହ ପ୍ରକାଶ କରାଯାଇ ନ ପାରେ । ପୁଣି ବୌଦ୍ଧବିହାରମାନଙ୍କରେ ପୂଜିତ ଚକ୍ର ସର୍ବପ୍ରଧାନ ପୂଜା ଉପାଦାନ ହୋଇଥିବାରୁ ମନ୍ଦିର ଭିତରେ ମଧ୍ୟସ୍ଥଳରେ ଚକ୍ରକୁ ଲୋକେ ପୂଜା କରୁଥିବାର ଦୃଶ୍ୟ ବୌଦ୍ଧବିହାର ମୂର୍ତ୍ତି ଚକ୍ରର ପ୍ରତିଫଳନ ବୋଲି ଅନୁମାନ କରାଯାଏ । ସେଥିପାଇଁ ବୋଧହୁଏ ଏହି ବୌଦ୍ଧଚକ୍ରକୁ ଜଗନ୍ନାଥଙ୍କ 'ସୁଦର୍ଶନ' ସହିତ ତୁଳନା କରାଯାଇଛି । ତେବେ ଏ ଯୁକ୍ତିକୁ ଅନେକ ଐତିହାସିକ ତଥା ଗବେଷକ ଅଦ୍ୟାବଧି ଗ୍ରହଣ କରିନାହାନ୍ତି ।

ଅଶୋକଙ୍କ ରାଜତ୍ୱକାଳରେ ଓଡ଼ିଶାର ଶବରମାନେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ସେହି ସମୟରେ ପୁରୀରେ ମଧ୍ୟ ଏକ ବୌଦ୍ଧସ୍ତୂପ ସ୍ଥାପିତ ହୋଇ ଏହି ତ୍ରିରତ୍ନର ପ୍ରତୀକ ସେଠାରେ ରଖାଯାଇଥିଲା । ଏ ସ୍ତୂପ ବୌଦ୍ଧ ଶବରମାନଙ୍କର ଥିଲା ପ୍ରଧାନ ଉପାସନା ପୀଠ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀବେଳକୁ ମହାଯାନ ପନ୍ଥାର ପ୍ରବର୍ତ୍ତନ ଫଳରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ପୂଜା ଆରମ୍ଭ ହେଲା, ସରଳବିଶ୍ୱାସୀ ଶବରମାନେ ସ୍ତୂପର ତ୍ରିରତ୍ନ ମଧ୍ୟରେ ବୁଦ୍ଧଙ୍କୁ ଉପାସନା କଲେ । ଏବେ ବି ବହୁ ସ୍ଥାନରେ ସ୍ୱସ୍ତିକ ଚିହ୍ନର ପୂଜା ପରମ୍ପରା ରହିଛି । ତିନୋଟିଯାକ ଚିହ୍ନ ସମୂହଭାବରେ 'ଜଗନ୍ନାଥ' ନାମରେ ଅଭିହିତ ଥିଲା । ପରବର୍ତ୍ତୀକାଳରେ ଯେତେବେଳେ ମୂର୍ତ୍ତି ପୂଜାର ପ୍ରଚଳନ ହେଲା, ସେତେବେଳେ ଏକମୂର୍ତ୍ତି ବଦଳରେ ବୌଦ୍ଧ ଧର୍ମର ବୌଦ୍ଧ, ଧର୍ମ, ସଂଘ—ଏହି ତ୍ରିରତ୍ନକୁ ସ୍ୱତନ୍ତ୍ର ଭାବରେ ରଖି ତ୍ରିମୂର୍ତ୍ତିର କଳ୍ପନା କରାଗଲା । ଏମାନଙ୍କ ମଧ୍ୟରୁ ବୁଦ୍ଧ ହେଉଛନ୍ତି ମୁଖ୍ୟ । ବୌଦ୍ଧଧର୍ମରେ ଧର୍ମ ନାରୀ ରୂପରେ ପରିକଳ୍ପିତ ହୁଅନ୍ତି ଏବଂ ସଙ୍ଘରେ ପରସ୍ପର ସହିତ ଭାଇ ଭଉଣୀର ସମ୍ପର୍କ ନିହିତ ଥାଏ । ତେଣୁ ଜଗନ୍ନାଥଙ୍କ ଠାରେ ବୁଦ୍ଧ, ସୁଭଦ୍ରାଙ୍କ ଠାରେ ଧର୍ମ ଓ ବଳଭଦ୍ରଙ୍କ ଠାରେ ସଙ୍ଘର ଆରୋପ କରାଗଲା । ଶବରମାନେ ପୂର୍ବରୁ ଦାରୁ ଉପାସକ ଥିବାରୁ ଦାରୁରେ ଏ ତିନମୂର୍ତ୍ତି ନିର୍ମାଣକରି ପୂଜା ଆରାଧନା ଆରମ୍ଭ କଲେ । ଏହିପରି

ଭାବରେ ପ୍ରତୀକ ପୂଜାରୁ ପ୍ରତିମା ପୂଜାର ସୂତ୍ରପାତ ହୋଇଥିବା ଅନୁମାନ । ବୌଦ୍ଧଧର୍ମ ଏ ଏହି ତ୍ରିମୂର୍ତ୍ତି ପରିକଳ୍ପନା ଓ ଗଠନର ସମୟ ଖ୍ରୀଷ୍ଟୀୟ ସପ୍ତମ ବା ଅଷ୍ଟମ ଶତାବ୍ଦୀ ଏବଂ ସେ ସମୟର ଭୌମ ରାଜତ୍ୱରେ ଓଡ଼ିଶାରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ଗ୍ରହଣ କରାଯାଇ ଥିଲା । ସେଥିପାଇଁ ଜଗନ୍ନାଥଙ୍କ ମନ୍ଦିରର ସିଂହଦ୍ୱାରର ଉପର ବନ୍ଧରେ ଥିବା 'ଦଶାବତାର' ଚିତ୍ରରେ, ନବମ ଅବତାର ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥ ହିଁ ଉତ୍କୀର୍ଣ୍ଣ ହୋଇଛନ୍ତି । ଓଡ଼ିଶାରେ କ୍ୱଚିତ୍ ଅନ୍ୟତ୍ର ଦଶାବତାର ମୂର୍ତ୍ତି ସମ୍ପୂର୍ଣ୍ଣ ଓ ଅକ୍ଷତଭାବରେ ପରିଦୃଷ୍ଟ ହୋଇଥାଏ । ମାତ୍ର ଯେଉଁଠାରେ ଏହା ଅଛି, ସେଠାରେ ନବମ ଅବତାର ବୁଦ୍ଧଙ୍କୁ ଜଗନ୍ନାଥ ରୂପରେ ହିଁ ବର୍ଣ୍ଣନା କରାଯାଇଛି । ଏ ପରମ୍ପରା ଏ ପର୍ଯ୍ୟନ୍ତ ପୁଣି ଓଡ଼ିଶାର ବିଗ୍ରହ ନିର୍ମାଣ ରୀତିରେ ପ୍ରଚଳିତ ରହିଛି । ଏହି ସମୟରେ ବୁଦ୍ଧ-ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଗ୍ରହଣ କରାଯାଉଥିବାରୁ ତାଙ୍କ ସହିତ ଥିବା ଅନ୍ୟ ଦୁଇ ମୂର୍ତ୍ତିଙ୍କ ସଂସ୍ଥାନର ଯଥାର୍ଥତା ପାଇଁ ବୁଦ୍ଧଙ୍କ ବାସୁଦେବ-କୃଷ୍ଣ ଅବତାରକୁ ଗ୍ରହଣ କରାଯାଇଛି । କୃଷ୍ଣଙ୍କର ଭାଇ ବଳରାମ, ବଳଦେବ ବା ବଳଭଦ୍ର-ରୂପେ ଓ ଭଗିନୀ ସୁଭଦ୍ରା ସେହି ନାମରେ ପରିଚିତ ହୋଇଛନ୍ତି । ପାଳିଭାଷାରେ ରଚିତ ବୌଦ୍ଧଧର୍ମ ଗ୍ରନ୍ଥରେ ବାସୁଦେବ ଓ ବଳଦେବ ପୂଜାକୁ ଅତି ଉଚ୍ଚ ସ୍ଥାନ ଦିଆ ଯାଇଛି । ଦୁଇ ଭାଇ ଓ ଭଉଣୀ ରୂପ ସ୍ୱୀକୃତ ଶତ ଶତ ବର୍ଷ ଧରି ଉପାସିତ ଏହି ମୂର୍ତ୍ତିତ୍ରୟଙ୍କଠାରେ ବିଷ୍ଣୁତ୍ୱ ଆରୋପଣବେଳେ କୃଷ୍ଣ, ବଳରାମ ଓ ସୁଭଦ୍ରା ପରିକଳ୍ପନା ଏକାବେଳକେ ଅପରିହାର୍ଯ୍ୟ ହୋଇପଡ଼ିଛି । ସେଥିପାଇଁ କୃଷ୍ଣ ଜଗନ୍ନାଥ ରୂପେ, ବଳରାମ ବଳଭଦ୍ର ରୂପେ ଓ ସୁଭଦ୍ରା ସୁଭଦ୍ରା ରୂପରେ ଅତି ସହଜରେ ଜନସମାଜକୁ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ପୁରୁଷୋତ୍ତମ କ୍ଷେତ୍ରର ପ୍ରସିଦ୍ଧି ବୃଦ୍ଧିଲାଭ କରିଛି ଏବଂ ବୁଦ୍ଧରୂପେ ପୂଜିତ ଜଗନ୍ନାଥଙ୍କ ପୂଜାରେ କୌଣସି ପରିବର୍ତ୍ତନ ଘଟିନାହିଁ ।

ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ସାଞ୍ଚିର ବୌଦ୍ଧସ୍ତୂପର ତୋରଣ ଦେଶରେ ଅଙ୍କିତ ଏକ ଚିତ୍ର ପାଲିଭାଷାର ଯ, ର, ଲ, ବ ଓ ନ -- ଏହି ପଞ୍ଚମହାଭୂତ ବୀଜାକ୍ଷରର ସମ୍ମିଶ୍ରଣ । ଏହି ପଞ୍ଚ ମହାଭୂତ ଯଥାକ୍ରମେ ମରୁତ୍‌ବୀଜ (ଯ), ଅଗ୍ନିବୀଜ (ର), ଅପ୍-ବୀଜ (ଲ), କ୍ଷିତି-ବୀଜ (ବ) ଓ ଶୂନ୍ୟ-ବୀଜ (ନ)ର ଦ୍ୟୋତକ ବୋଲି ଜଣାଯାଏ । ଏଗୁଡ଼ିକ ପୁଣି ବୌଦ୍ଧମାନଙ୍କର ଧର୍ମ ବା ପ୍ରକୃତିର ଚିହ୍ନ । ଏହି ଧର୍ମ ବା ପ୍ରକୃତି ସହିତ ବୁଦ୍ଧ ବା ପୁରୁଷର ସଂଯୋଗରେ ସଙ୍ଘର ଉଦ୍ଭବ । ବୁଦ୍ଧ ପୁଣି ଚକ୍ରଦ୍ୱାରା ଚିହ୍ନିତ ଏବଂ ପ୍ରକୃତି ବା ଧର୍ମର ଚିହ୍ନ ସହିତ ମିଶ୍ରିତ ହେଲେ ସଙ୍ଘର ଚିତ୍ର ହୋଇଥାଏ । ବୌଦ୍ଧ-ଧର୍ମର ତ୍ରିରତ୍ନ ସହିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା—ଏହି ତ୍ରିମୂର୍ତ୍ତିଙ୍କୁ ମେଳଥିବା ସେ ଅନୁମାନ କରନ୍ତି । କିନ୍ତୁ କେତେକାଂଶରେ ଏମତ ଗ୍ରହଣୀୟ ନୁହେଁ । କାରଣ ସେମାନଙ୍କ ଦ୍ୱାରା ପ୍ରଦର୍ଶିତ ଚିତ୍ରରେ ଜଗନ୍ନାଥ ଓ ବଳଭଦ୍ର ଊର୍ଦ୍ଧ୍ୱବାହୁ ହୋଇଥିବା

ଛିଲେ, ପ୍ରକୃତ ମୂର୍ତ୍ତିରେ ବୁଦ୍ଧିଙ୍କ ହାତ ସମ୍ମୁଖକୁ ସିଧାଭାବରେ ପ୍ରସାରିତ ହୋଇଛି । ଅନ୍ୟମାନଙ୍କ ମତରେ ଜଗନ୍ନାଥ ହେଉଛନ୍ତି 'ଧର୍ମ'ର ଚିହ୍ନ ଏବଂ ଏହି ଚିହ୍ନଟି 'ତ୍ରିରତ୍ନ'ର ବିଭିନ୍ନ-ରୂପ-ସୂଚକ ଛଅଟି ପାଲି ଅକ୍ଷର 'ଯ, ର, ଲ, ବ, ନ, ସ' ର ସମାବେଶ ମାତ୍ର । ବୌଦ୍ଧମନ୍ତ୍ରର ପାଲିବର୍ଣ୍ଣ ସହିତ ଏହାର ସାମଞ୍ଜସ୍ୟ ଥିବା ମଧ୍ୟ ଅନୁମାନ କରାଯାଇ ପାରେ ।

ଦାର୍ଶନିକ ଦୃଷ୍ଟିକୋଣରୁ ଦେଖିଲେ ବୌଦ୍ଧ-ସଂଘ, ଧର୍ମ ଓ ବୁଦ୍ଧ ଯଥାକ୍ରମେ ମୈତ୍ରୀଚେତନା, କରୁଣା ଓ ପତିତପାବନ ଚେତନା ଏବଂ ନିର୍ବାଣ ବା ମୁକ୍ତି ଚେତନାର ପରିପ୍ରକାଶ ଏବଂ ଏହି ଚେତନା ହିଁ ହେଉଛି ଜଗନ୍ନାଥ ଚେତନାର ଏକ ଏକ ବିଶିଷ୍ଟ ଭାବ । ସଂଘରୂପକ ଏକକ ଅନୁଷ୍ଠାନ ବୌଦ୍ଧଧର୍ମର ପ୍ରସାର ଓ ଦୃଢ଼ୀକରଣରେ ବିଶେଷ ସହାୟକ ହୋଇଥିଲା । ପୃଥିବୀର ପ୍ରାୟ ପ୍ରତ୍ୟେକ ଧର୍ମ ଏହି ସଂଘଧର୍ମୀ ଐକ୍ୟ ବା ମୈତ୍ରୀ ଚେତନାର ମହତ୍ତ୍ୱକୁ ଉଚ୍ଚସ୍ଥାନ ଦେଇ ଆସିଛନ୍ତି । ଜଗନ୍ନାଥ ଧର୍ମରେ ଏହି ମୈତ୍ରୀଭାବ ବିଶ୍ୱଚେତନା ଭାବେ ରୂପାନ୍ତରିତ ହୋଇଛି । ଏଥିରୁ ଆତ୍ମଦାନର ପ୍ରେରଣା ସୃଷ୍ଟି ହୋଇ କରୁଣ ଓ ପତିତର ସେବା କରିବାପାଇଁ ଉତ୍ସାହିତ କରିଥାଏ । ଏହା ହିଁ ଜଗନ୍ନାଥ ଧର୍ମର ଏକ ଅନନ୍ତ ତଥା ଅନନ୍ୟ ସାଧାରଣ ବୈଶିଷ୍ଟ୍ୟ ଏବଂ ଏହି ପରିପ୍ରେକ୍ଷିରେ ବୋଧହୁଏ ଜଗନ୍ନାଥ 'ପତିତପାବନ' ନାମର ଏକ ସାର୍ଥକ ମୂର୍ତ୍ତିମନ୍ତ ପ୍ରତୀକ ।

ଏହିପରି ଭାବରେ ଜଗନ୍ନାଥଙ୍କର କାଷ୍ଠମୂର୍ତ୍ତି ନିର୍ମାଣ ପରେ ବୌଦ୍ଧ ପ୍ରଥାନୁସାରେ ତାଙ୍କର ସ୍ନାନଯାତ୍ରା ଓ ରଥଯାତ୍ରା ପ୍ରଭୃତି ଆରମ୍ଭ ହୋଇଥିବା ଅନୁମାନ । ଜଗନ୍ନାଥଙ୍କର ଉଭୟଯାତ୍ରା ବୌଦ୍ଧ ପୂଜା ବିଧାନରେ ଏକ ପ୍ରଧାନ ଅଂଶ । ଜଗନ୍ନାଥଙ୍କର ଏହି ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମୋତ୍ସବ ଉପଲକ୍ଷେ ହେଉଥିବା ରଥଯାତ୍ରା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ସମୟରେ ଜଗନ୍ନାଥଙ୍କ ସେବାପୂଜାର ଭାର ଶବର ବଂଶଧର 'ଦଇତା' ନାମକ ସେବକମାନଙ୍କ ଉପରେ ନ୍ୟସ୍ତଥିବା ପୂର୍ବରୁ ସୂଚିତ ହୋଇଛି । ତେଣୁ ଶବର ପୂଜିତ ଜଗନ୍ନାଥ ଯେ ବୌଦ୍ଧଧର୍ମର ଦେବତା, ଏହା ନିଃସନ୍ଦେହ । ସେଥିପାଇଁ ଜଗନ୍ନାଥଙ୍କ ମହାପ୍ରସାଦରେ ଜାତିଭେଦର ସୂଚନା ମିଳେନାହିଁ । ପୁଣି ଏକଥା ମଧ୍ୟ ସର୍ବଜନସ୍ୱୀକୃତଭାବେ ସ୍ୱୀକୃତ ଯେ, ବୌଦ୍ଧ ଦେବତା 'ଜଗନ୍ନାଥ' ବୌଦ୍ଧ ତ୍ରିରତ୍ନର ବ୍ରାହ୍ମଣ୍ୟ ରୂପାନ୍ତର ଛଡ଼ା ଅନ୍ୟ କିଛି ନୁହେ । ଏବେ ଯାହା ଜଗନ୍ନାଥ ମନ୍ଦିର, ସେଠାରେ ପୂର୍ବେ ଏକ ମହାଯାନୀ ବୌଦ୍ଧ ପୀଠ ଥିବାର ଅନୁମାନ । ଏଠାରେ ପ୍ରତି ବାରବର୍ଷ ଅନ୍ତରରେ ପ୍ରାୟ 'ନବକଳେବର' ଅନୁଷ୍ଠିତ ହୁଏ । ପୁରୁଣା ପ୍ରତିମାଙ୍କୁ ପରିତ୍ୟାଗ କରି ତାଙ୍କ ସ୍ଥାନରେ ନୂତନ ପ୍ରତିମା ସ୍ଥାପନ କରାଯାଇଥାଏ । ବସ୍ତ୍ରାବୃତ ଚକ୍ଷୁ ଏକ ପୂଜକ ଜଗନ୍ନାଥଙ୍କ ପ୍ରାଚୀନ ପ୍ରତିମାର

କୁକ୍ଷି-କନ୍ଦରରୁ କୌଣସି ବସାବୃତ କୌଣସି ରହସ୍ୟଜନକ ପଦାର୍ଥ କାଢ଼ିଆଣି ନୂତନ ବିଗ୍ରହର ଠିକ୍ ସେହି ସ୍ଥାନରେ ରଖିଦିଏ । ପଣ୍ଡିତମାନଙ୍କ ମତ ଯେ, ଏହି ରହସ୍ୟମୟ ବସ୍ତୁଟି ପୂର୍ବବର୍ଣ୍ଣିତ ବୁଦ୍ଧଦେବଙ୍କ ବାମ ଦନ୍ତ ବା କୌଣସି ବୌଦ୍ଧାବଶେଷ ଛଡ଼ା ଅନ୍ୟ କିଛି ନୁହେଁ । ହିନ୍ଦୁ ଦେବ-ଦେବୀଙ୍କ ପରି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଆକୃତି ହୋଇ ନ ଥିବାରୁ ସେଥିପାଇଁ ତାଙ୍କୁ 'ଅ-ଲେଖ' ବା 'ଶୂନ୍ୟ' କହିବା ଏକାବେଳକେ ଅଯୌକ୍ତିକ ନୁହେଁ । ବୌଦ୍ଧ ମହାଯାନ ପନ୍ଥୀମାନେ ବୁଦ୍ଧ 'ମହାଶୂନ୍ୟ' ଓ 'ନିରାକାର' ଥିବା ପ୍ରତିପାଦନ କରନ୍ତି । ପୁରୁଷୋତ୍ତମ ନିରାକାର ଥିବାରୁ କେତେକ ଓଡ଼ିଆ କବି ତାଙ୍କୁ 'ବୁଦ୍ଧଦେବ' ବୋଲି ମଧ୍ୟ କହନ୍ତି । ପୁଣି ନିରାକାର ପୁରୁଷୋତ୍ତମ ଜଗନ୍ନାଥଙ୍କୁ ସବୁ ଅବତାରର ମୂଳ ବା ମହାଶୂନ୍ୟ ବୋଲି ମଧ୍ୟ ଅନେକ ବର୍ଣ୍ଣନା କରନ୍ତି । ବୌଦ୍ଧ ଶୂନ୍ୟବାଦକୁ ହିନ୍ଦୁ ଦର୍ଶନର ଏକ ଅଂଶ ବୋଲି ପରବର୍ତ୍ତୀ ସମୟରେ ହିନ୍ଦୁ ଦାର୍ଶନିକମାନେ ଗ୍ରହଣ କରିଥିବାରୁ ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କ ଅବତାର ଭିତରେ ଗ୍ରହଣ କରିବା ସହଜ ହୋଇଛି । ପୁଣି ଅନେକଙ୍କ ମତରେ ପୂର୍ବେ ପୁରୀରେ ଜଗନ୍ନାଥ ମନ୍ଦିର ବୌଦ୍ଧମନ୍ଦିର ରୂପେ ଥିଲା ଏବଂ ଏଥିରେ କୃଷ୍ଣାବତାର ଜଗନ୍ନାଥ ବୁଦ୍ଧରୂପେ ପୂଜିତ ହେଉଥିଲେ । ସେଥିପାଇଁ ବୋଧହୁଏ ସାରଳାଦାସଙ୍କ ମହାଭାରତରେ ଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ବହୁ ସ୍ଥାନରେ ବର୍ଣ୍ଣନା କରାଯାଇଛି । ସେ ଯାହାହେଉ, ଏ ମନ୍ଦିର ଭିତରେ ଅସ୍ଥି ରଖାଯାଇଥିଲା ଏବଂ ଏଠାରେ ଜାତିଗତ ଭେଦଭାବ ନଥାଇ ସବୁବର୍ଣ୍ଣର ଲୋକେ ଏକ ସଙ୍ଗରେ ପ୍ରସାଦ ସେବନ କରୁଥିଲେ । କିନ୍ତୁ ପରେ ପରେ ସେହି ଦେଉଳର ନାମ, ପ୍ରତିମା, ରଥ ଏବଂ ଦେଉଳ ନିଜେ ମଧ୍ୟ ବିଷ୍ଣୁ ହୋଇ ଯାଇଥିବାର ଅନୁମାନ କରାଯାଏ ।

ଏ ପ୍ରସଙ୍ଗରେ ଏଠାରେ ଏତିକି କୁହାଯାଇପାରେ ଯେ, ବୌଦ୍ଧଧର୍ମର ବିଲୋପ ସାଧନ କରିବା ସକାଶେ ଯେତେବେଳେ ବ୍ରାହ୍ମଣମାନେ ବଦ୍ଧପରିକର ହୋଇଥିଲେ, ସେମାନେ ବୌଦ୍ଧମତାମତକୁ ନିଜ ମତବାଦରେ ପ୍ରବର୍ତ୍ତିତ କରିଥିଲେ । ପୁରୀଠାରେ ସେଥିପାଇଁ ବହୁକାଳ ପର୍ଯ୍ୟନ୍ତ ବୁଦ୍ଧଦେବଙ୍କର ପୂର୍ବବର୍ଣ୍ଣିତ ପବିତ୍ର ଦନ୍ତ ରକ୍ଷିତ ଓ ପୂଜିତ ହୋଇଥିଲା । ବୌଦ୍ଧମାନେ ଜାତିଭେଦ ସ୍ୱୀକାର କରୁ ନଥିବାରୁ, ସେହି ପୁରୀଠାରେ ବ୍ରାହ୍ମଣମାନେ ଏକ ହସ୍ତ-ପଦଶୂନ୍ୟ ଦେବତା ଗଠନ କରାଇ, ପୁଣି ସେହି ଦେବତାଙ୍କୁ ବୁଦ୍ଧାବତାରରୂପେ ଗ୍ରହଣ କରି, ଅଦ୍ୱୈତବାଦ ବିଷ୍ଣୁମନ୍ତ୍ରରେ ତାଙ୍କର ପୂଜା ଆରାଧନା ସହିତ ତାଙ୍କ ଭୋଗରେ କୌଣସି ପ୍ରକାର ଜାତିବିଚାର ରଖି ନଥିଲେ । ଏହା ଫଳରେ ବୌଦ୍ଧଧର୍ମ ବା ହିନ୍ଦୁ ଧର୍ମ ମଧ୍ୟରେ ସାମଞ୍ଜସ୍ୟ ରକ୍ଷାକରିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ବୌଦ୍ଧମାନଙ୍କ ଦୃଷ୍ଟି ହିନ୍ଦୁଧର୍ମଆଡ଼କୁ ଅତ୍ୟନ୍ତ ଦକ୍ଷତାର ସହିତ ଆକର୍ଷିତ

କରା ଯାଇପାରିଥିଲା । ସେଥିପାଇଁ ସେହି ବୌଦ୍ଧ ତ୍ରିରତ୍ନର ପ୍ରତୀକ ତ୍ରିମୂର୍ତ୍ତିଙ୍କୁ କାଳକ୍ରମେ ହିନ୍ଦୁମାନେ ଆପଣାର ତ୍ରିମୂର୍ତ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ରୂପେ ଏବେ ମଧ୍ୟ ପୂଜା କରୁଛନ୍ତି ।

ଖ୍ରୀଷ୍ଟୀୟ ଅଷ୍ଟମ-ନବମ ଶତାବ୍ଦୀ ସୁଦ୍ଧା ଜଗନ୍ନାଥ ତାନ୍ତ୍ରିକ ବା ବଜ୍ରଯାନୀ ବୈଷ୍ଣବଧର୍ମର ଇଷ୍ଟଦେବତାରେ ପରିଣତ ହୋଇଯାଇଥିଲେ ବୋଲି ଅନେକ ମତପ୍ରକାଶ କରନ୍ତି । ଇନ୍ଦ୍ରଭୂତିଙ୍କର 'ଜ୍ଞାନସିଦ୍ଧି'ରେ ତାଙ୍କୁ ବୁଦ୍ଧସ୍ୱରୂପେ ବର୍ଣ୍ଣନା କରାଯାଇଛି । ଅଷ୍ଟମ-ନବମ ଶତାବ୍ଦୀବେଳକୁ ଓଡ଼ିଶାରେ ଏକ ଉନ୍ନତ ସଂସ୍କାର ସୁଗଠିତ ହୋଇ ସାରିଥିଲା । ଇନ୍ଦ୍ରଭୂତିଙ୍କର ପ୍ରବର୍ତ୍ତିତ 'ବଜ୍ରଯାନ'ର 'ଶୂନ୍ୟଦର୍ଶନ' ସେତେବେଳେ ଉତ୍କଳୀୟ ଜନତାର ଉପାସ୍ୟ ମୈତ୍ରୀଦେବ ଜଗନ୍ନାଥଙ୍କଠାରେ ଲୀନ ହୋଇଯାଇଥିଲା । ସ୍ପର୍ଶାସ୍ପର୍ଶ ବିଚାର, ଜାତିଭେଦ ପ୍ରଭୃତି ଶୂନ୍ୟରୂପୀ ଜଗନ୍ନାଥଙ୍କ ଠାରେ ନଥିଲା । ତାଙ୍କୁ ବଜ୍ରଯାନୀମାନେ ଶୂନ୍ୟର ପ୍ରତୀକରୂପେ ଧ୍ୟାନ କରୁଥିଲେ । ଏହି ତନ୍ତ୍ରପୂଜା ଓଡ଼ିଶାରେ ଭୌମକର ରାଜତ୍ୱକାଳରେ ପ୍ରବର୍ତ୍ତିତ ହୋଇଥିଲା ଏବଂ କାଳକ୍ରମେ ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ମତବାଦମାନ ତନ୍ତ୍ରରୁ ଅନେକ ଅଂଶ ନିଜ ସହିତ ମିଶାଇ ଦେଇଥିଲେ କିନ୍ତୁ ଶାକ୍ତ-ତାନ୍ତ୍ରିକମାନେ ଏହାକୁ ଅତି ତଳକୁ ଖସାଇଦେଇ ଏକପ୍ରକାର ସହଜଯାନରେ ପରିଣତ କରିଦେଇ, ଧର୍ମ ନାମରେ ଅବାଧ ନାରୀସେବା, ସହଜ ସୁଖଭୋଗ ଓ ପଞ୍ଚମକାର ଉପାସନା ପଦ୍ଧତିର ଉପସ୍ଥାପନା କଲେ । ଓଡ଼ିଶା ଏହି ସମୟରେ ସମ୍ପୂର୍ଣ୍ଣ ଭାବରେ ଏକ ତନ୍ତ୍ରକ୍ଷେତ୍ରରୂପେ ପ୍ରସିଦ୍ଧିଲାଭ କରିଥିବାରୁ, ଚଣ୍ଡୀର ତ୍ରିମୂର୍ତ୍ତି ଭାବେ ଶ୍ରୀଜଗନ୍ନାଥ ମହାକାଳୀରୂପେ, ସୁଭଦ୍ରା ସ୍ୱର୍ଣ୍ଣବର୍ଣ୍ଣା ମହାଲକ୍ଷ୍ମୀ ରୂପେ ଏବଂ ବଳଭଦ୍ର ଶ୍ୱେତବର୍ଣ୍ଣ ମହା ସରସ୍ୱତୀରୂପେ ଅବସ୍ଥାନ କରିଛନ୍ତି ବୋଲି ଶାକ୍ତ-ତାନ୍ତ୍ରିକମାନେ ମତ ପ୍ରଦାନ କରନ୍ତି । ଜଗନ୍ନାଥ ମାତ୍ର ଦ୍ୱାଦଶ ଶତାବ୍ଦୀରୁ ବିଷ୍ଣୁରୂପେ ଆରାଧିତ ହେଉଛନ୍ତି । ତା' ପୂର୍ବରୁ ସେ ମହାବୌଦ୍ଧ ଏବଂ ତନ୍ତ୍ରର ଦେବତାରୂପେ ଖ୍ୟାତ ଥିଲେ । ଏହି ସମୟରେ ତାନ୍ତ୍ରିକ ମତବାଦର ପ୍ରଭାବ ଜଗନ୍ନାଥ ତଥା ଜଗନ୍ନାଥ ମନ୍ଦିର ବେଢ଼ା ଭିତରେ ଥିବା 'ବିମଳା'ଙ୍କ ଉପରେ ପଡ଼ିଥିବା ଅନୁମାନ । ଏହା ବ୍ୟତୀତ ନାନା ତାନ୍ତ୍ରିକ ଉପଚାର ପୂଜା ମଧ୍ୟ ଜଗନ୍ନାଥ ମନ୍ଦିରରେ ଅଦ୍ୟାବଧି ରହିଅଛି । ଶାକ୍ତ ତାନ୍ତ୍ରିକମାନଙ୍କ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ 'ବିମଳା'ଙ୍କୁ 'ଭୈରବୀ', ଜଗନ୍ନାଥଙ୍କୁ 'ଭୈରବ' ଏବଂ ପୁରୀକୁ 'ଭୈରବଚକ୍ର' ରୂପେ ଗ୍ରହଣ କରାଯାଇଛି । "ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ" । ପୁଣି ତନ୍ତ୍ରମାନଙ୍କରେ ଜଗନ୍ନାଥ ଓ ବିମଳା ଉଭୟଙ୍କ ନାମ ଉଲ୍ଲେଖ କରାଯାଇଛି । ପୁରୁଷୋତ୍ତମ କ୍ଷେତ୍ର ଏକ ପ୍ରଧାନ ପ୍ରାଚୀନ ତନ୍ତ୍ରପୀଠ ଓ ବିମଳା ଏହାର ପୀଠଦେବୀ ହୋଇଥିବାରୁ, ବର୍ତ୍ତମାନ ସୁଦ୍ଧା ବିମଳାଙ୍କ ଆଧିପତ୍ୟ ଏଠାରେ ଦେଖାଯାଏ । ସେଥିପାଇଁ

ଜଗନ୍ନାଥଙ୍କ ପ୍ରସାଦ କେବଳ ବିମଳାଙ୍କ ଠାରେ ସମର୍ପଣ କରାଯାଇଥାଏ ଏବଂ ପୁଷ୍ଟିରେ ତନ୍ତ୍ରମତରେ ମହାପ୍ରସାଦର ପ୍ରଚଳନ କରାଯାଇଥାଏ । ବିମଳାଙ୍କ ଠାରେ ଏହି ଭୋଗ ସମର୍ପଣ ନହେବା ପର୍ଯ୍ୟନ୍ତ ତାହା 'ମହାପ୍ରସାଦ' ରୂପେ ଗଣ୍ୟ ହୁଏନାହିଁ । ପୁଣି ଆଶ୍ୱିନ ଶୁକ୍ଳାଷ୍ଟମୀ ଦିନ ବିମଳାଙ୍କ ଠାରେ ଛାଗବଳି ଦିଆଯାଏ ଏବଂ ପୁରୁଷୋତ୍ତମ କ୍ଷେତ୍ରରେ ଏହା ଏକମାତ୍ର ପଶୁବଳି ହୋଇଥିବାରୁ, ଏଥିରୁ ଶାକ୍ତ-ତାନ୍ତ୍ରିକତା ପ୍ରଭାବ ବିସ୍ତାର କରିଥିବା ସହଜରେ ଅନୁମାନ କରାଯାଇ ପାରେ । ପୁଣି ଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱ ସହିତ ସୁଭଦ୍ରାଙ୍କ ମୂର୍ତ୍ତି ସମ୍ପୃକ୍ତ ଥିବାରୁ, ଏଥିରେ ତାନ୍ତ୍ରିକତାର ସୂଚନା ମିଳିଥାଏ । ସ୍କନ୍ଦ ପୁରାଣରେ ସେଥିପାଇଁ ବୋଧହୁଏ, 'ତସ୍ୟ ଶକ୍ତି ସ୍ୱରୂପସ୍ଥଂ ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା' ବୋଲି ଉଲ୍ଲେଖ ଅଛି । ଅନେକ ସୁଭଦ୍ରାଙ୍କୁ ଜଗନ୍ନାଥଙ୍କର ଭଗିନୀ ବୋଲି ମତ ଦିଅନ୍ତି । କିନ୍ତୁ ସୁଭଦ୍ରା ସେଠାରେ ଭଉଣୀଭାବେ ଅବସ୍ଥାନ କରିଥିବା ଯୁକ୍ତିଯୁକ୍ତ ମନେ ହୁଏ ନାହିଁ । ଭଉଣୀକୁ ଶକ୍ତି ଭାବରେ ଗ୍ରହଣ କରିବା ତନ୍ତ୍ରମାନଙ୍କୁ ଛାଡ଼ିଦେଲେ, ଅନ୍ୟ କୌଣସିଠାରେ ସମର୍ଥିତ ହୁଏ ନାହିଁ । ଭଗ୍ନୀ ଶକ୍ତିରୂପେ ଅବସ୍ଥାପିତ ହେବା କୌଣସି ବ୍ରାହ୍ମଣ ଶାସ୍ତ୍ର ସମ୍ମତ ହୋଇ ନଥିବାରୁ, ଶ୍ରୀ ଜଗନ୍ନାଥଙ୍କ ଠାରେ ସୁଭଦ୍ରାଙ୍କ ସମାବେଶ ବ୍ରାହ୍ମଣ୍ୟ ଧର୍ମର ସଂକେତ ନ ହୋଇ, ତାନ୍ତ୍ରିକ ପ୍ରଭାବର ଯେ ସୂଚନା ଦିଏ, ଏଥିରେ ହୁଏତ ଦ୍ୱିମତ ଥାଇ ନ ପାରେ । ପୂର୍ବରୁ କୁହାଯାଇଛି ଯେ ପ୍ରତିମା ପୂଜା ପୂର୍ବରୁ ପ୍ରତୀକପୂଜା ପ୍ରଚଳିତ ଥିଲା ଏବଂ ଓଡ଼ିଶାର ଶାକ୍ତଧର୍ମର ଇତିହାସରେ ମଧ୍ୟ ଏହି ତାନ୍ତ୍ରିକ ପ୍ରତୀକର ପ୍ରଭାବ ଥିବାର ସୂଚନା ମିଳେ । ଓଡ଼ିଶାରେ ଥିବା ସମ୍ବଲପୁରର ସମଲେଶ୍ୱରୀ, ଗଞ୍ଜାମର ତାରାତାରିଣୀ ଓ ଆସ୍କାର ଖମ୍ବେଶ୍ୱରୀ ପ୍ରଭୃତିଙ୍କୁ ଏହି ପ୍ରତୀକ ଉପାସନା ପଦ୍ଧତିର ଜଳନ୍ତ ନିଦର୍ଶନ ରୂପେ ଗ୍ରହଣ କରାଯାଇ ପାରେ । ଏହି ପରିପ୍ରେକ୍ଷିରେ ଅନେକ କାଷ୍ଠ ଉପରେ ଚର୍ଚ୍ଚିତ ଜଗନ୍ନାଥଙ୍କ ମୁଖମଣ୍ଡଳକୁ 'ଭୟଂକର'ର ପ୍ରତୀକରୂପେ ଗ୍ରହଣକରି, ତାଙ୍କୁ ତାନ୍ତ୍ରିକ ଦେବତାରୂପେ ଚର୍ଚ୍ଚିତ କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । ପୁଣି ଶ୍ରୀ ଜଗନ୍ନାଥ ଉଡ୍‌ଡୀୟାନ ତନ୍ତ୍ରର ମହାକାଳ, ଯାହାଙ୍କ ନିକଟରେ ଦକ୍ଷିଣାଚାର ଓ ବାମାଚାର ପୂଜା ପ୍ରଚ୍ଛନ୍ନଭାବରେ ପ୍ରଚଳିତ । ବାମାଚାରର ମଦାନ୍ଧଲୁବ୍ଧ ଶ୍ରୀ ଜଗନ୍ନାଥ କେବଳ କାଳଭୈରବ ନୁହନ୍ତି, କାଳାତୀତ କାଳଭୈରବ, ଯାହାଙ୍କ ମନ୍ଦିର ତଥା ପୀଠ ନବତ୍ରିକୋଣ ବିଶିଷ୍ଟ ଶ୍ରୀଚକ୍ର ବା ତାନ୍ତ୍ରିକ ଚକ୍ର ଉପରେ ପ୍ରତିଷ୍ଠିତ । ଏହାଙ୍କ ମନ୍ଦିର ସନ୍ନିକଟରେ ଅଷ୍ଟଦେବୀ ଯଥା ଦକ୍ଷିଣ କାଳିକା, ରାମଚଣ୍ଡୀ, ଚର୍ଚ୍ଚିକା ପ୍ରଭୃତି ଓ ମନ୍ଦିରବେଢ଼ା ମଧ୍ୟରେ ଶ୍ରୀ ବିମଳାଦେବୀଙ୍କ ପୂଜା ଆରାଧନା ଏ ପ୍ରମାଣର ଅନ୍ୟତମ ସମର୍ଥକ ।

ପୁରୁଷୋତ୍ତମ କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ବିମଳା ଥିବାରୁ ଶାକ୍ତ ଉପାସନାର ପ୍ରଭାବ ଏ କ୍ଷେତ୍ରରେ ଥିବାର ଶାକ୍ତମାନେ ପ୍ରତିପାଦନ କରିଥାନ୍ତି । 'ଗଙ୍ଗାୟାଂ ମଙ୍ଗଳା । ନାମ ବିମଳା ପୁରୁଷୋତ୍ତମେ ।' ପୁଣି ସତୀଙ୍କର ନାଭି ଏହି ସ୍ଥାନରେ ପଡ଼ିଥିବାରୁ ଏହି କ୍ଷେତ୍ରର ନାମ ନାଭିକ୍ଷେତ୍ର ବୋଲି ପୁରାଣରୁ ସୂଚନା ମିଳେ । ବିମଳା ଶିବରୂପୀ ଜଗନ୍ନାଥଙ୍କ ଶକ୍ତି ବୋଲି ଅନେକଙ୍କର ମତ । ପୁଣି ଭବିଷ୍ୟପୁରାଣର ଉକ୍ତି ଅନୁସାରେ ସୁଭଦ୍ରା ଓ ବିମଳାଙ୍କ ଭିତରେ କିଛି ପ୍ରଭେଦ ନାହିଁ । × × × 'ଅନ୍ନପୂର୍ଣ୍ଣା ସୁଭଦ୍ରା ସ୍ୟାତ୍ ତୈର୍ବିକାନ୍ନମୁଲତେବତ୍ ।' ମହାପ୍ରସାଦ ମହାତ୍ମ୍ୟ, ପୂଜା ପଦ୍ଧତି ଓ ବେଶଭୂଷାରୁ ମଧ୍ୟ ଶ୍ରୀ କ୍ଷେତ୍ରରେ ଶାକ୍ତଉପାସନାର ପ୍ରାଧାନ୍ୟ ଉପଲବ୍ଧ ହୋଇଥାଏ । ଶାକ୍ତ ମତରେ ଭୈରବ ଚକ୍ରରେ ଜାତି, ବର୍ଣ୍ଣ ନିର୍ବିଶେଷରେ ଭୈରବୀଙ୍କ ପ୍ରସାଦ ଏକପତ୍ରରୁ ଉଚ୍ଛିଷ୍ଟା-ନୁଚ୍ଛିଷ୍ଟ ବିଚାରରେ ସେବା କରାଯାଇ ପାରେ । ଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀରୂପେ ଶାସ୍ତ୍ରରେ କଳ୍ପନା କରାଯାଇଥିବା ବିଷୟ ତଥା ବିମଳାଙ୍କୁ ବିନା ସମର୍ପଣରେ ଜଗନ୍ନାଥଙ୍କ ପ୍ରସାଦ ଯେ 'ମହାପ୍ରସାଦ' ହୋଇପାରିବ ନାହିଁ, ତାହା ପୂର୍ବରୁ ସୂଚନା ଦିଆଯାଇଛି । ପୁନଶ୍ଚ ଶାକ୍ତମତରେ ପ୍ରତିମା ଅପେକ୍ଷା ସିଂହାସନରେ ଯନ୍ତ୍ରାରୂଢ଼ ଠାକୁରମାନଙ୍କ ପାଖରେ ହିଁ କେବଳ ମହାପ୍ରସାଦ ହୋଇ ପାରିବ ବୋଲି ବିଶ୍ୱାସ ରହିଛି । ଏହି କାରଣରୁ ଗୁଣ୍ଡିଚାଘରେ ଓ ଅଣସରବେଳେ ଠାକୁରମାନେ ଯନ୍ତ୍ରାରୂଢ଼ ହୋଇ ନ ଥିବାରୁ, ସେ ସମୟର ଅନ୍ନଭୋଗକୁ 'ମହାପ୍ରସାଦ' ବୋଲି ଶାକ୍ତ-ବ୍ରାହ୍ମଣମାନେ ଗ୍ରହଣ କରୁନଥିଲେ । ବର୍ତ୍ତମାନ ଅବଶ୍ୟ ଏହାର ପ୍ରଚଳନ ଦେଖାଯାଏ ନାହିଁ । ତେବେ ପୂଜାବିଧିରେ ତନ୍ତ୍ରମତର ପ୍ରାଧାନ୍ୟ ରହିଛି ଏବଂ ସେଥିପାଇଁ ବୋଧହୁଏ କେହି କେହି ଜଗନ୍ନାଥଙ୍କୁ ଭୈରବମନ୍ତ୍ରରେ ପୂଜାହେବାର ମତ ବ୍ୟକ୍ତ କରନ୍ତି । ପୁଣି ଭୋଗ ଉପକରଣରେ ମଦ୍ୟ ପରିବର୍ତ୍ତେ କାଂସ ପାତ୍ରରେ ପଇତି ପାଣିର ବ୍ୟବସ୍ଥା ତଥା ଆମିଷ ପର୍ଯ୍ୟାୟଭୁକ୍ତ ବରି ଓ ଅଦାର ପିଠା ଏବଂ ମେଣ୍ଢାମୁଣ୍ଡ ପରିବର୍ତ୍ତେ ମେଣ୍ଢାମୁଣ୍ଡିଆ ଖେଚେଡ଼ିର ବ୍ୟବସ୍ଥା ଯେ ସମ୍ପୂର୍ଣ୍ଣଭାବେ ତାନ୍ତ୍ରିକ, ଏଥିରେ ଦ୍ୱିମତ ଥାଇ ନ ପାରେ । ଠାକୁରମାନଙ୍କର ନାକରେ ଫୁଲର ବସଣୀ ପିନ୍ଧାଯିବାର ବ୍ୟବସ୍ଥା ଶାକ୍ତମତର ପ୍ରଚଳନ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । ତା' ବ୍ୟତୀତ, ଅନେକ ଗବେଷକ ସୁଭଦ୍ରାଙ୍କୁ ବ୍ରହ୍ମାଙ୍କ ସହିତ ଚିହ୍ନିତ କରିଥାନ୍ତି । ସ୍ୱମାତା ଯୋଗମାୟାଙ୍କ ଠାରୁ ବ୍ରହ୍ମା ଶାପ ବଶରେ ସ୍ତ୍ରୀ ଯୋନି ହୋଇ ଅପୂଜା ରହିବା ବୃତ୍ତାନ୍ତ ଯଶୋବନ୍ତଙ୍କ ବର୍ଣ୍ଣନାରୁ ଜଣାଯାଏ । ପରେ ପରେ ସେହି ବ୍ରହ୍ମା ନିତ୍ୟ ରାହାସସ୍ଥଳ ପୁରୁଷୋତ୍ତମ କ୍ଷେତ୍ରରେ ରାଧାଙ୍କ ଗୁପ୍ତଅଙ୍ଗ ସ୍ୱରୂପ ବିଷ୍ଣୁରୂପୀ ଜଗନ୍ନାଥଙ୍କ ସଙ୍ଗେ ପୂଜା ପାଇଲେ । ଅନ୍ୟ ଏକ ପ୍ରସଙ୍ଗରୁ ମଧ୍ୟ ଜଣାଯାଏ ଯେ ବ୍ରହ୍ମା ଏକଦା ବିଷ୍ଣୁଙ୍କର ଗୋବତ୍ସ ହରଣ କରି ନେବାରୁ ବିଷ୍ଣୁ ତାଙ୍କୁ ଅପୂଜା ରହିବାପାଇଁ ପ୍ରଥମେ ଅଭିଶାପ ଦେଇ, ପରେ ପରେ ତାଙ୍କ ସ୍ତୁତିରେ ମୁଗ୍ଧ ହୋଇ ନୀଳାଚଳରେ ତାଙ୍କର ଭଗିନୀରୂପେ ତାଙ୍କ ସହିତ ପୂଜାରେ

ପୂଜା ପାଇବାପାଇଁ ବରଦାନ କରିଥିଲେ । ଏହି ବ୍ରହ୍ମଙ୍କ ମୁନିଋଷିମାନେ ବ୍ରହ୍ମଭାବେ ଏବଂ ମନ୍ତ୍ରୀର ନାରୀମାନେ ସୁଭଦ୍ରାଭାବେ ପୂଜା ଆରାଧନା କରୁଥିବାର ବର୍ଣ୍ଣନା ବିଭିନ୍ନ ପୁରାଣରୁ ମିଳେ । ବ୍ରହ୍ମା ଶାପରେ ସୁଭଦ୍ରାରୂପ ଧାରଣ କରିଛନ୍ତି ବୋଲି ସାରଳା ଦାସ ମଧ୍ୟ ତାଙ୍କ ମହାଭାରତରେ ଉଲ୍ଲେଖ କରିଥିବାରୁ, ଶ୍ରୀକ୍ଷେତ୍ରରେ ଶାକ୍ତଧର୍ମର ପ୍ରଭାବ ପ୍ରତିଷ୍ଠିତ ହୋଇଥିବା ନିଃସନ୍ଦେହରେ କୁହାଯାଇପାରେ ।

ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ—ଏ ତ୍ରିମୂର୍ତ୍ତିଙ୍କୁ ଯଥାକ୍ରମେ ମହେଶ୍ୱର, ବ୍ରହ୍ମା ଓ ବିଷ୍ଣୁ ବୋଲି ଅନେକ ମତ ଦିଅନ୍ତି । ଓଡ଼ିଶାରେ ଏହି ପରିକଳ୍ପନାରେ ଯଥେଷ୍ଟ ପ୍ରଚଳନ ଥିବା ଜଣାଯାଏ । ଏହି ତ୍ରିମୂର୍ତ୍ତିଙ୍କ ମଧ୍ୟରୁ ବଳଭଦ୍ର ଶିବ ବା ମହେଶ୍ୱର ରୂପେ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଥିବାର ସୂଚନା ମିଳେ । ପୁଣି ତନ୍ତ୍ରଶାସ୍ତ୍ରରେ ଜଗନ୍ନାଥଙ୍କୁ ପୀଠ ଭୈରବ ରୂପେ ବର୍ଣ୍ଣନା କରାଯାଇଥିବା ପୂର୍ବରୁ ସୂଚନା ଦିଆଯାଇଛି । ଏହି 'ଭୈରବ' ହିଁ ଶିବଙ୍କର ପ୍ରତୀକ ଏବଂ ପୁରୁଷୋତ୍ତମ କ୍ଷେତ୍ର ସେଥିପାଇଁ ବୋଧହୁଏ 'ଭୈରବ ପୀଠ' ରୂପେ ପରିଚିତ । ତା' ବ୍ୟତୀତ, ଶ୍ରୀକୃଷ୍ଣଙ୍କ ବସ୍ତ୍ରାହରଣ କରିଥିବାରୁ ଅଭିଶାପଗ୍ରସ୍ତ ବ୍ରହ୍ମା କଳିଯୁଗରେ ଅପୂଜା ରହିବେ ଓ ପରେ ନାରୀରୂପେ ପୂଜା ପାଇବେ ବୋଲି ଓଡ଼ିଆ ସାହିତ୍ୟରେ ବର୍ଣ୍ଣିତ ହୋଇଥିବା ବିଷୟ ପୂର୍ବରୁ ସୂଚିତ ହୋଇଛି । ପୁଣି ସିଦ୍ଧ ରାମାନୁଜାଚାର୍ଯ୍ୟ ପ୍ରମୁଖ ଶ୍ରୀସଂପ୍ରଦାୟମାନେ ପଞ୍ଚରାତ୍ର ଉପାସନା ମାଧ୍ୟମରେ ଶ୍ରୀ ଜଗନ୍ନାଥ ଯେ ସ୍ୱୟଂ ବିଷ୍ଣୁ, ଏହା ବର୍ଣ୍ଣନା କରି ଯାଇଛନ୍ତି ।

ବିଭିନ୍ନ ପୁରାଣ ବର୍ଣ୍ଣିତ ବିଷୟକୁ ଗ୍ରହଣ କରି ଗବେଷକମାନେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ଦ୍ୱାପର ଯୁଗର ମହାପ୍ରଭୁ ଶ୍ରୀକୃଷ୍ଣ, ବଳରାମ ଓ ସୁଭଦ୍ରାଙ୍କ ସହିତ ଚିହ୍ନିତ କରିଛନ୍ତି । କେତେକଙ୍କ ମତରେ ଜଗନ୍ନାଥ ବ୍ରାହ୍ମଣ୍ୟଧର୍ମର ଦେବତା ହୋଇଥିବା ସ୍ଥଳେ, ଅନ୍ୟମାନେ ଶ୍ରୀ ଜଗନ୍ନାଥ ଆଦ୍ୟରୁ 'କୃଷ୍ଣ-ବାସୁଦେବ' ଥିଲେ ବୋଲି ପ୍ରତିପାଦନ କରିଛନ୍ତି । ତାଙ୍କ ସଙ୍ଗେ ତାଙ୍କ ଭାଇ ବଳରାମ-ସଙ୍କର୍ଷଣ ଥିଲେ । ପରେ ପୁରୁଷ-ପ୍ରକୃତି କ୍ଷାପକ ସାଂଖ୍ୟଦର୍ଶନକୁ ଅଙ୍ଗୀକାର ଅବତାର ସହିତ ଶକ୍ତିର ସମାବେଶ କରାଯିବା ବେଳେ ସେହି ଶକ୍ତିରୂପେ ସୁଭଦ୍ରାଙ୍କୁ କୃଷ୍ଣ-ବାସୁଦେବ ଓ ବଳରାମ-ସଙ୍କର୍ଷଣଙ୍କ ସହିତ ନିଆଯାଇଛି । ପୁଣି ଜଗନ୍ନାଥ ହିଁ ବିଷ୍ଣୁ ଓ ଏହି ଅବତାରରେ ସେ ଶ୍ରୀକ୍ଷେତ୍ର ବା 'ଦ୍ୱିତୀୟ ଦ୍ୱାରକା'ରେ ଅବସ୍ଥାନ କରୁଥିଲେ ବୋଲି ଅନେକ ମତପ୍ରକାଶ କରନ୍ତି । ଏହି କ୍ଷେତ୍ରରେ ଶ୍ରୀକୃଷ୍ଣଙ୍କର ଅପୋଡ଼ା ଶରୀରର ଅଂଶ ବିଶେଷ ପୂଜା ପାଉଥିବା ଅନେକ ବିଶ୍ୱାସ କରନ୍ତି । ପ୍ରଥମେ ଏହି କ୍ଷେତ୍ରରେ ନୀଳମାଧବ ଶବରମାନଙ୍କ ଦ୍ୱାରା ପୂଜା ପାଉଥିଲେ । ଏହି ନୀଳମାଧବ ହିଁ ବିଷ୍ଣୁ ଏବଂ ଅନ୍ତର୍ଦ୍ଧାନ ପରେ ପୁଣି ସେ କୃଷ୍ଣରୂପରେ ଏହି କ୍ଷେତ୍ରରେ ପ୍ରକାଶିତ ହୋଇଥିବା ପୁରାଣମାନଙ୍କରୁ ଜଣାଯାଏ । ବ୍ରହ୍ମ ପୁରାଣରେ ଜଗନ୍ନାଥଙ୍କୁ କୃଷ୍ଣରୂପରେ କଳ୍ପନା କରାଯାଇଛି । ପୁଣି ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ—ଏହି ମୂର୍ତ୍ତିଚତୁଷ୍ଟୟ

ଭଗବାନ ବିଷ୍ଣୁଙ୍କ ରୂପଥିବା ସ୍କନ୍ଦ ପୁରାଣରୁ ସୂଚିତ ହୁଏ । ବଳରାମ ଓ କୃଷ୍ଣଙ୍କ ଭିତରେ କିଛୁ ପ୍ରଭେଦ ନାହିଁ । ସୁଭଦ୍ରା ଲକ୍ଷ୍ମୀ ସ୍ୱରୂପା । ତେଣୁ ସେ କୃଷ୍ଣଙ୍କ ଶକ୍ତିରୂପେ ଓ ଭଗବାନ୍ ପୁଂ ନାମରେ ବିଷ୍ଣୁ ଓ ସ୍ତ୍ରୀ ନାମରେ ଲକ୍ଷ୍ମୀରୂପେ ପରିଚିତ ହୁଅନ୍ତି । ପୁଣି ଏକଗର୍ଭରେ ଜନ୍ମଲାଭ କରିଥିବା ହେତୁ ଲୌକିକ ବ୍ୟବହାରରେ ସୁଭଦ୍ରା ବଳଦେବଙ୍କ ଭଗିନୀ ତଥା ଶକ୍ତିରୂପେ ବର୍ଣ୍ଣିତ ହୋଇଅଛନ୍ତି । ସୁଦର୍ଶନଙ୍କୁ ମଧ୍ୟ ବିଷ୍ଣୁଙ୍କର ଚତୁର୍ଥରୂପ ବୋଲି ଗ୍ରହଣ କରାଯାଇଛି । ପୁରାଣବର୍ଣ୍ଣିତ ଜଗନ୍ନାଥ ପ୍ରତିମା କୃଷ୍ଣ ମୂର୍ତ୍ତି । ଏହା ପରମଶାନ୍ତ । ଦ୍ୱିତୀୟଃ ପ୍ରତିମା-ଅନନ୍ତ ମୂର୍ତ୍ତି ଏବଂ ତୃତୀୟ ମୂର୍ତ୍ତି ସୁଭଦ୍ରା । ଏହି ସୁଭଦ୍ରା ବାସୁଦେବଙ୍କର ଭଗିନୀ । ତେବେ ପୁରାଣ ବର୍ଣ୍ଣିତ ଏ ମୂର୍ତ୍ତି ଏବଂ ବର୍ତ୍ତମାନର ମୂର୍ତ୍ତିତ୍ରୟ ଅନୁରୂପ ନୁହନ୍ତି । ଜଗନ୍ନାଥ (ବିଷ୍ଣୁ) ଓ ବଳରାମ(ଶିବ)ଙ୍କର ଅଙ୍ଗୁଳିବିହୀନ ଦୁଇଟି ହାତଥିବା ସ୍ଥଳେ ସୁଭଦ୍ରାଙ୍କର ପୂର୍ଣ୍ଣ ଆଦୌ ହାତ ନାହିଁ । ସେ ଯାହାହେଉ, ପୁରାଣ ବର୍ଣ୍ଣିତ ଏ ସମସ୍ତ ସୂଚନା ସତ୍ତ୍ୱେ, ଜଗନ୍ନାଥ ଯେ କୃଷ୍ଣ ବା ବିଷ୍ଣୁ ନୁହନ୍ତି, ଏହା ସାଧାରଣତଃ ତାଙ୍କର ନାମ, ତାଙ୍କର ମୂର୍ତ୍ତି ତଥା ସୁଭଦ୍ରାଙ୍କର ତାଙ୍କ ସହ ସମାବେଶରୁ ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ । କୃଷ୍ଣ-ବାସୁଦେବ କିପରି କ୍ରମରେ 'ଜଗନ୍ନାଥ' ରୂପେ ନାମାନ୍ତରିତ ହେଲେ, ତା'ର କୌଣସି ସ୍ପଷ୍ଟ ସୂଚନା ମିଳେନାହିଁ । କୃଷ୍ଣଙ୍କର କମନୀୟ ମୁଖକାନ୍ତି ବଦଳରେ ଜଗନ୍ନାଥଙ୍କ ମୁଖର ଭୟଙ୍କରତା ଦର୍ଶନକରି କେହି କେବେ ଶ୍ରୀଜଗନ୍ନାଥଙ୍କୁ ଦ୍ୱାପର ଯୁଗର ଶ୍ରୀକୃଷ୍ଣ ବୋଲି କହିବ ନାହିଁ । କୃଷ୍ଣ-ବାସୁଦେବଙ୍କର ଏପରି କିମ୍ଭୂତ କିମ୍ଭାକାର କଳା, ସୌନ୍ଦର୍ଯ୍ୟ ବିହୀନ ମୂର୍ତ୍ତିତ୍ରୟ ଅନ୍ୟ କେଉଁଠି ପରିଦୃଷ୍ଟ ହୁଏ ନାହିଁ । ହୁଏତ ପ୍ରାଥମିକ ଅବସ୍ଥାରେ ଶବରମାନେ ସେମାନଙ୍କର ଅନାର୍ଯ୍ୟ ସୁଲଭ ମନୋବୃତ୍ତି ହେତୁ ଏପରି ଭୟାବହ ମୂର୍ତ୍ତି ପୂଜା କରୁଥିଲେ ଏବଂ ପରବର୍ତ୍ତୀ ସମୟରେ ତାଙ୍କୁ କୃଷ୍ଣ-ବାସୁଦେବ ନାମରେ ଅଭିହିତ କରି, ତାଙ୍କ ସହ ଅନ୍ୟ ମୂର୍ତ୍ତିଦ୍ୱୟର ସଂଯୋଗ କରାଗଲା । ପୁଣି ଜଗନ୍ନାଥଙ୍କ ସହ ସୁଭଦ୍ରାଙ୍କ ସମାବେଶରୁ ସେ କୃଷ୍ଣ-ବାସୁଦେବ ହୋଇ ନ ପାରନ୍ତି । ସାଂଖ୍ୟ ଦର୍ଶନର ପ୍ରକୃତି-ପୁରୁଷ ସୂତ୍ର ଅନୁସାରେ ସମ୍ଭବତଃ ଅଷ୍ଟମ-ନବମ ଶତାବ୍ଦୀ ପୂର୍ବୁ ଅବତାରମାନଙ୍କ ସହିତ ଶକ୍ତିର ପୂଜା କଳ୍ପନାକୁ ଆସି, ଅବତାର ଓ ତାଙ୍କ ଶକ୍ତି ମଧ୍ୟରେ ପତିପତ୍ନୀ ସମ୍ପର୍କ ପରିକଳ୍ପିତ ହୋଇଛି । କିନ୍ତୁ କେବଳ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କଠାରେ ଏ ସମ୍ପର୍କରେ କୌଣସି ସୂଚନା ମିଳେ ନାହିଁ । କେବଳ 'ବରାହ ମିହିର'ଙ୍କ ବର୍ଣ୍ଣିତ ମୂର୍ତ୍ତିଗଠନ ତତ୍ତ୍ୱାନୁଯାୟୀ ବଳଦେବ ଓ କୃଷ୍ଣଙ୍କ ମଧ୍ୟରେ 'ଏକାନଂଶା' ଦେବୀଙ୍କର ସ୍ଥାନ ସୂଚିତ ହୋଇଛି । "ଏକାନଂଶା କାର୍ଯ୍ୟାଦେବୀ ବଳଦେବ କୃଷ୍ଣୟୋର୍ମଧ୍ୟେ, × × × ।" କିନ୍ତୁ ପୁରୁଷୋତ୍ତମ କ୍ଷେତ୍ରର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ପୂର୍ବବର୍ଣ୍ଣିତ ବଳଦେବ, ଏକାନଂଶା ଓ କୃଷ୍ଣଙ୍କର କୌଣସି ସମ୍ପର୍କ ନାହିଁ । ଏ 'ଏକାନଂଶା' ଚତୁର୍ଭୁଜା ଥିବା ସ୍ଥଳେ, ଜଗନ୍ନାଥଙ୍କ ସହିତ ସଂଶ୍ଳିଷ୍ଟ ଏକାନଂଶା (ସୁଭଦ୍ରାଙ୍କ)ର

ଏହା ସହିତ କୌଣସି ପ୍ରକାର ସାମଞ୍ଜସ୍ୟ ଥିବା ଜଣାଯାଏ ନାହିଁ । ତେଣୁ ସୁଭଦ୍ରାଙ୍କୁ 'ସ୍କନ୍ଦ ପୁରାଣ' ବର୍ଣ୍ଣିତ ଜଗନ୍ନାଥଙ୍କ ଶକ୍ତିରୂପେ ପୂଜା ରଙ୍ଗମଞ୍ଚରେ ଅବତୀର୍ଣ୍ଣ କରାଇବା ଅପ୍ରାସଙ୍ଗିକ ମନେହୁଏ । କୃଷ୍ଣଙ୍କ ସହିତ ରୁକ୍ମିଣୀ, ସତ୍ୟଭାମା ପ୍ରଭୃତିଙ୍କ ସମାବେଶ ପରିବର୍ତ୍ତେ ସୁଭଦ୍ରାଙ୍କ ସମାବେଶ ଏବେ ମଧ୍ୟ ରହସ୍ୟାବୃତ ହୋଇ ରହିଯାଇଛି । ପୁଣି କୃଷ୍ଣଙ୍କ ସହ ରାଧାଙ୍କ ସଂଯୁକ୍ତ ବହୁ ପରକାଳର ଘଟଣା ହେତୁ, ଜଗନ୍ନାଥଙ୍କ ସହ ସୁଭଦ୍ରାଙ୍କ ଆବିର୍ଭାବ ସମ୍ବନ୍ଧରେ ଅନେକ କବି ଓ ଲେଖକ ତାଙ୍କୁ ଭଗିନୀ ରୂପେ ଗ୍ରହଣ ନ କରି ତାଙ୍କଠାରେ ବ୍ରହ୍ମତ୍ୱ ଆରୋପ କରନ୍ତି ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ, ବହୁକାଳରୁ ଓଡ଼ିଶାରେ କୃଷ୍ଣ-ବାସୁଦେବ ଉପାସନା ପ୍ରଚଳିତ ଥିଲା; କିନ୍ତୁ ତା' ପୂର୍ବରୁ ଏଠାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା—ଏହି ତ୍ରିମୂର୍ତ୍ତିଙ୍କର କଳ୍ପନା କରାଯାଇଥିଲା । ଏମାନଙ୍କ ମଧ୍ୟରୁ ପ୍ରଧାନ ମୂର୍ତ୍ତିଙ୍କୁ 'ଜଗନ୍ନାଥ' ବୋଲି ନାମିତ କରାଯାଇଥିଲା । କାଳକ୍ରମେ ଏହି ଜଗନ୍ନାଥଙ୍କୁ କୃଷ୍ଣରୂପେ ଗ୍ରହଣ କରାଯାଇ ତାଙ୍କ ସହିତ ଥିବା ଅନ୍ୟ ମୂର୍ତ୍ତିଙ୍କୁ ତାଙ୍କ ଭାଇ ବୋଲି ସ୍ୱୀକାର କରାଯାଇ 'ବଳରାମ' ନାମରେ ଅଭିହିତ କରାଗଲା । ଅବଶିଷ୍ଟ ମଧ୍ୟବର୍ତ୍ତୀ ମୂର୍ତ୍ତିଙ୍କୁ 'ନାରୀ'ରୂପେ କଳ୍ପନା କରାଯାଇଥିବାରୁ ତାଙ୍କୁ ଉଭୟଙ୍କର ଭଉଣୀ ରୂପେ ମନେ କରାଯାଇ 'ସୁଭଦ୍ରା' ରୂପେ ନାମିତ କରାଗଲା । ହୁଏତ ସେତେବେଳେ ଶକ୍ତିପୂଜାର ବିଶେଷ ପ୍ରଚଳନ ନ ଥିଲା । ତେଣୁ ସେ ଭଗିନୀରୂପେ ପୂଜିତା ହେଲେ । ଏହି ସୁଭଦ୍ରାଙ୍କୁ କାଳକ୍ରମେ 'ଏକାନଂଶା' ଦେବୀରୂପେ ଗ୍ରହଣ କରାଯାଇ ଜଗନ୍ନାଥ ଓ ବଳରାମଙ୍କୁ ବାସୁଦେବ ଓ ସଙ୍କର୍ଷଣରୂପେ ଚିହ୍ନିତ କରାଯାଇଥିଲା । ଏହି ସଙ୍କର୍ଷଣ ବର୍ତ୍ତମାନର ବଳଭଦ୍ର । ତାଙ୍କୁ ଅନେକ ସ୍ଥଳରେ 'ରୁଦ୍ର' ବୋଲି କଳ୍ପନା କରାଯାଇଛି । ସେତେବେଳେ ଜଗନ୍ନାଥଙ୍କ ନାମ ଏତେଦୂର ପ୍ରତିଷ୍ଠିତ ତଥା ଲୋକପ୍ରିୟ ଥିଲା ଯେ, ତାହା ଅପରିବର୍ତ୍ତିତ ରହିଗଲା । ବସ୍ତୁତଃ ତାଙ୍କୁ ହିଁ କୃଷ୍ଣ ବୋଲି ମନେ କରାଗଲା । 'ସୁଭଦ୍ରା'ଙ୍କୁ ଶକ୍ତିର ପ୍ରକାଶ ରୂପେ ମଧ୍ୟ ଗ୍ରହଣ କରିନିଆଗଲା । ଏହିରୂପେ କୃଷ୍ଣ-ବାସୁଦେବ, ବଳରାମ-ସଙ୍କର୍ଷଣ ଓ ସୁଭଦ୍ରାଙ୍କ ପୂଜା ଆରମ୍ଭ ହୋଇ, ତାହା ଉପରେ ବୌଦ୍ଧ, ଶାକ୍ତ ତଥା ତାନ୍ତ୍ରିକ ପ୍ରଭାବ ପଡ଼ି ବର୍ତ୍ତମାନର 'ଜଗନ୍ନାଥ'ଙ୍କ କଳ୍ପନା କରାଗଲା । ପୁଣି ଯେତେବେଳେ ଖ୍ରୀଷ୍ଟୀୟ ଅଷ୍ଟମ-ନବମ ଶତାବ୍ଦୀବେଳକୁ ଅବତାର-ମାନଙ୍କ ସହ ଶକ୍ତିରୂପେ ସେମାନଙ୍କ ପତ୍ନୀମାନେ ପୂଜିତ ହେଲେ, ସେତେବେଳେ ହୁଏତ 'ଜଗନ୍ନାଥ'ଙ୍କ ସହ 'ସୁଭଦ୍ରା'ଙ୍କୁ 'ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା' ବୋଲି କୁହାଗଲା । ତେବେ ଏ ଉକ୍ତି ଯେ ବ୍ରାହ୍ମଣ୍ୟଧର୍ମର ନ ହୋଇ ନିଶ୍ଚିତ ଭାବରେ ତନ୍ତ୍ରର ଉକ୍ତି—ଏହା ପୂର୍ବରୁ ବର୍ଣ୍ଣନା କରାଯାଇଛି ।

ଦ୍ୱାଦଶ ଶତାବ୍ଦୀବେଳକୁ ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ବୁଦ୍ଧାବତାର ବୋଲି ସାରା ଭାରତ ଗ୍ରହଣ କରିସାରିଥିଲା ଏବଂ ଓଡ଼ିଶାରେ ସେହି ସମୟରେ ଗଙ୍ଗବଂଶୀୟ ନରପତି ଚୋଡ଼ଗଙ୍ଗଙ୍କ ରାଜତ୍ୱକାଳରେ ବୈଷ୍ଣବ ଉପାସନା ବୃଦ୍ଧି ପାଇଥିଲା । ତାଙ୍କ ସମୟରେ ରାମାନୁଜ ଓଡ଼ିଶାକୁ ଆସି ତାଙ୍କର 'ବିଶିଷ୍ଟାଦ୍ୱୈତ' ମତର ବହୁଳ ପ୍ରଚାର କରିବା ସଙ୍ଗେ ସଙ୍ଗେ, ସେ ଚୋଡ଼ଗଙ୍ଗଙ୍କୁ ସାକ୍ଷାତକରି, ଜଗନ୍ନାଥ ମନ୍ଦିରରେ ସ୍ମାର୍ତ୍ତମତ ସମ୍ମତ ପଞ୍ଚରାତ୍ର ଉପାସନା ପଦ୍ଧତି ପ୍ରଚଳନ କରିବାପାଇଁ ଚେଷ୍ଟାକରି, ଜଗନ୍ନାଥଙ୍କ ସେବକ-ମାନଙ୍କର ପ୍ରବଳ ପ୍ରତିରୋଧ ହେତୁ ବ୍ୟର୍ଥକାମ ହୋଇଥିଲେ ସୁଦ୍ଧା ଜଗନ୍ନାଥଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ଗ୍ରହଣ କରାଯାଇ ଚୋଡ଼ଗଙ୍ଗଙ୍କ ଦ୍ୱାରା ବର୍ତ୍ତମାନର ମନ୍ଦିର ନିର୍ମାଣ କରାଯାଇ, ପ୍ରୋକ୍ତ ମନ୍ଦିର ବେଢ଼ା ଭିତରେ 'ଲକ୍ଷ୍ମୀମନ୍ଦିର' ନିର୍ମିତ ହୋଇଥିଲା । ଏହାର କିଛିକାଳ ପରେ ପ୍ରଧାନ ତଥା ବିଶିଷ୍ଟ ବୈଷ୍ଣବ କବି 'ଜୟଦେବ' ତାଙ୍କର ପ୍ରସିଦ୍ଧ 'ଗୀତଗୋବିନ୍ଦ' ରଚନାକରି ଓଡ଼ିଶାରେ 'ରାଧାକୃଷ୍ଣ' ପ୍ରେମତତ୍ତ୍ୱର ପ୍ରଚାରକରି ବିଷ୍ଣୁଙ୍କ ବୁଦ୍ଧ ଅବତାର ଜଗନ୍ନାଥଙ୍କୁ ଭାରତର ଧର୍ମ ଜଗତରେ ଏକ ସ୍ୱତନ୍ତ୍ର ଦେବତାରୂପେ ପ୍ରତିଷ୍ଠିତ କଲେ ।

ଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ସମ୍ପ୍ରଦାୟ ବା ଧର୍ମ ମତବାଦର ଇଷ୍ଟଦେବ ଥିଲେ ନା ସେ ଥିଲେ ସାର୍ବଜନୀନ, ପୁଣି ସେ ଏକେଶ୍ୱର ପରମ ଥିଲେ ନା ପରମେଶ୍ୱରଙ୍କର ଏକ ଅବତାର ରୂପେ ପୂଜିତ ହେଉଥିଲେ, ତାହା ନିର୍ଣ୍ଣୟ କରିବା ସମ୍ଭବପର ନୁହେଁ । ତେବେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଆଧ୍ୟାତ୍ମିକ ଭାବନା ଓ ସାଧନାର ପରମ ଇଷ୍ଟଦେବ ରୂପେ ଜଗନ୍ନାଥ ତଥାପି ପ୍ରତିଷ୍ଠିତ ହୋଇ ନ ଥିଲେ କିମ୍ବା ତାଙ୍କୁ ଅବଲମ୍ବନ କରି କୌଣସି ନିର୍ଦ୍ଦିଷ୍ଟ ତତ୍ତ୍ୱ ସେପର୍ଯ୍ୟନ୍ତ ସୁଦ୍ଧା ଗଠିତ ହୋଇ ନ ଥିଲା । କାରଣ ସେ ପର୍ଯ୍ୟନ୍ତ ବଜ୍ରଯାନ, ସହଜଯାନ, ନାଥ, ଶୈବ, ଶାକ୍ତ, ବୈଷ୍ଣବ ପ୍ରଭୃତି ବିଭିନ୍ନ ଆଧ୍ୟାତ୍ମିକ ଭାବନା, ସାଧନା, ପୁଣି ତା'ର ନାନା ଦେବାଦେବୀ ବାହୁଲ୍ୟ ମଧ୍ୟରେ ଏକ ଏବଂ ଅଦ୍ୱୟ ପରମେଶ୍ୱର ଭାବନାର ବିକାଶ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇ ନ ଥିଲା । ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରୁ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାରେ କ୍ରମାଗତ ବୈଷ୍ଣବ ଧର୍ମ ପ୍ରଚାର କରାଯାଇଥିଲା ଏବଂ ଏହା ମଧ୍ୟ ଅନ୍ୟ ଧର୍ମମାନଙ୍କର ସମନ୍ୱୟକ୍ରମେ ଜଗନ୍ନାଥଙ୍କୁ କେନ୍ଦ୍ରକରି ପରସ୍ପର ସହିତ ମିଶିଯାଇ ଏକ ସ୍ୱତନ୍ତ୍ର ଗଣଧର୍ମ ସୃଷ୍ଟି କରିଥିଲେ, ଯାହାକି ଲୋକମୁଖରେ 'ଜଗନ୍ନାଥ ଧର୍ମ' ନାମରେ ଅଭିହିତ ହେଲା । କାଳକ୍ରମେ ଏହି ଜଗନ୍ନାଥ ଧର୍ମକୁ ବହୁ ମତବାଦର ସମଷ୍ଟି ବା ଏକ ସ୍ୱତନ୍ତ୍ର ବସ୍ତୁ ରୂପେ ଗ୍ରହଣକରି ନିଆଯାଇଥିଲା ।

ଷୋଡ଼ଶ ଶତାବ୍ଦୀରେ ପ୍ରତାପରୁଦ୍ର ଦେବଙ୍କ ସମୟରେ ଓଡ଼ିଶାରେ ଯେତେବେଳେ ଶ୍ରୀ ଚୈତନ୍ୟଙ୍କ ଆଗମନ ଯୋଗୁଁ ଧାର୍ମିକ ବିପ୍ଳବର ସୂତ୍ରପାତ ହେଲା, ସେତେବେଳେ ସେହି ଜଗନ୍ନାଥ ଧର୍ମ ହିଁ ଓଡ଼ିଶାରରେ ପ୍ରବର୍ତ୍ତିତ ହେଲା । ସେ ପର୍ଯ୍ୟନ୍ତ ଯେତେ ପ୍ରକାର ମତବାଦ ଓଡ଼ିଶାରେ ପ୍ରଚଳିତ ହୋଇଥିଲା, ସେସବୁ ସେହି ଗଣଧର୍ମରୂପୀ ଜଗନ୍ନାଥ ଧର୍ମ ଭିତରେ ବିଚିତ୍ର ଭାବରେ ସମ୍ମିଶ୍ରିତ ହୋଇ ସ୍ଥାନ ପାଇ ସାରିଥିଲେ । ସେ ସମୟରେ ଓଡ଼ିଶାରେ ବୈଷ୍ଣବ ଧର୍ମର ଦୁଇଟି ଧାରାର ନିଦର୍ଶନ ମିଳେ । ଗୋଟିଏ ରାଧାଙ୍କୁ ଆଶ୍ରୟ କରି ବିଶୁଦ୍ଧ ଭକ୍ତି ଧର୍ମ ଓ ଅପରଟି ପୂର୍ବ ବର୍ଣ୍ଣିତ ବୁଦ୍ଧରୂପୀ ଜଗନ୍ନାଥଙ୍କ ପ୍ରତି ଜ୍ଞାନମିଶ୍ରା ଭକ୍ତି ଏବଂ ଏଥିର ପ୍ରଧାନ ପୃଷ୍ଠପୋଷକ ଥିଲେ 'ପଞ୍ଚସଖା' । ସେମାନେ ଶ୍ରୀ ଚୈତନ୍ୟଙ୍କ ନିଷ୍ଠା ଓ ସାଧନାରେ ମୁଗ୍ଧ ହୋଇ ତାଙ୍କ ପ୍ରତି ଶ୍ରଦ୍ଧା ଓ ଅନୁରକ୍ତି ପ୍ରକାଶ କରିଥିଲେ ମଧ୍ୟ ସେମାନଙ୍କର ଅସ୍ତିତ୍ୱକୁ ଚୈତନ୍ୟଙ୍କ ସଂପ୍ରଦାୟରେ ସମର୍ପଣ କରିଦେଇ ନ ଥିଲେ । ସେମାନଙ୍କ ଆରାଧ୍ୟ ଦେବତା ରାଧାକୃଷ୍ଣ ନ ଥିଲେ । ସେମାନେ 'ଜଗନ୍ନାଥ'ଙ୍କ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିବା ସଙ୍ଗେ ସଙ୍ଗେ ଜଗନ୍ନାଥ-ଧର୍ମ-ଦର୍ଶନ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ସେମାନଙ୍କ ଉପାସନାରେ ଜଗନ୍ନାଥଙ୍କୁ ପ୍ରାଣ ପୁରୁଷ ରୂପେ ଗ୍ରହଣ କରି ନିଆ ଯାଇଥିଲା । ସେମାନଙ୍କ ଅନୁସୃତ ଜ୍ଞାନମିଶ୍ରା ଭକ୍ତିରେ 'ରାଧାକୃଷ୍ଣ' ଉପାସନା ଥିଲେ ମଧ୍ୟ ସେମାନେ ନିର୍ଗୁଣ ବ୍ରହ୍ମବାଦ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରୁଥିଲେ । ସେମାନଙ୍କ ପ୍ରଦର୍ଶିତ ବୈଷ୍ଣବ ଦର୍ଶନରେ ରାଧାକୃଷ୍ଣ ରୂପେ ଜଗନାଥଙ୍କୁ ବର୍ଣ୍ଣନାକରି ଜୀବ ଓ ପରମର ମିଳିତ ରୂପ ଭାବରେ ମଧ୍ୟ କଳ୍ପନା କରାଯାଇଛି । ଏହିପରି ଭାବରେ ଦ୍ୱୈତବାଦକୁ ସେମାନେ ସ୍ୱୀକାର କରିଥିଲେ ସିନା, ନିରାକାର ଓ ଅଦ୍ୱୈତ ବ୍ରହ୍ମ ହିଁ ଥିଲା ସେମାନଙ୍କର ସାଧନାର ମୂଳଲକ୍ଷ୍ୟ । ସେମାନେ ଜଗନ୍ନାଥଙ୍କୁ ଶୂନ୍ୟପୁରୁଷ, ଅଲେଖ ପୁରୁଷ, ଅଲେଖ ବ୍ରହ୍ମ, ଶୂନ୍ୟବ୍ରହ୍ମ ରୂପରେ କଳ୍ପନା କରିଛନ୍ତି । ସେଥିଲାଗି ଭାରତୀୟ ବୈଷ୍ଣବ ଧର୍ମ ମତବାଦ ଓ ଦର୍ଶନ ଇତିହାସରେ ଉତ୍କଳୀୟ ପଞ୍ଚସଖାଙ୍କ ପ୍ରଚଳିତ ଶ୍ରୀ ଜଗନ୍ନାଥ କେନ୍ଦ୍ରିକ ବୈଷ୍ଣବ ମତବାଦର ସ୍ୱାତନ୍ତ୍ର୍ୟ ଓ ମୌଳିକତା ନାନାଭାବରେ ଓ ନାନାଢଙ୍ଗରେ ପରିଦୃଷ୍ଟ ହୁଏ । ତେବେ ଶ୍ରୀ ଚୈତନ୍ୟଙ୍କ ସମୟରେ ଓଡ଼ିଶାରେ ରାଧାକୃଷ୍ଣ ଭକ୍ତିର ପ୍ରବାହ ବଳିଷ୍ଠ ହୋଇଥିବାରୁ, ଜଗନ୍ନାଥ ଧର୍ମକୁ ଏ ପରିସ୍ଥିତିରେ ସୁଦୃଢ଼ କରି ତୋଳିବା ପାଇଁ ଶ୍ରୀ ଚୈତନ୍ୟ ଓ ତାଙ୍କ ପ୍ରଚଳିତ ଧର୍ମର ସାରତତ୍ତ୍ୱକୁ 'ଜଗନ୍ନାଥଧର୍ମ'ରେ ମିଶାଇଦେବାକୁ ଉଦ୍ୟମ ହୋଇଥିଲା । ସେଥିପାଇଁ ଶ୍ରୀଚୈତନ୍ୟଙ୍କୁ ଅନେକେ ଶ୍ରୀ ଜଗନ୍ନାଥଙ୍କର ଅବତାର ବୋଲି ବିଶ୍ୱାସ କରୁଥିଲେ ଏବଂ କ୍ରମଶଃ ଜଗନ୍ନାଥ ଧର୍ମ ସହିତ ରାଧାକୃଷ୍ଣ ଉପାସନାକୁ ସାମିଲ କରାଯାଇ, ଜଗନ୍ନାଥ ଦାସଙ୍କ ଓଡ଼ିଆ 'ଭାଗବତ' ମାଧ୍ୟମରେ ଓଡ଼ିଶାସାରା ଏହାକୁ ପ୍ରଚଳିତ କରାଯାଇଥିଲା । ଓଡ଼ିଶାର ସାମାଜିକ ଓ ଧାର୍ମିକ ଜୀବନ ଜଗନ୍ନାଥ ଦାସଙ୍କ କରିଆରେ 'ଜଗନ୍ନାଥ ଧର୍ମ'ରେ କେନ୍ଦ୍ରୀଭୂତ ହୋଇଯାଇ, ଚୈତନ୍ୟଙ୍କ ପରଠାରୁ ଜଗନ୍ନାଥ କୃଷ୍ଣାଭିମୁଖୀ ହୋଇ

'ମହାବୈଷ୍ଣବ'ରେ ପରିଣତ ହୋଇଗଲେ । ବଶିଷ୍ଟ କବି ସାରଳାଦାସ ମଧ୍ୟ ତାଙ୍କର ବିଭିନ୍ନ ରଚନାରେ ରାଧା ଓ କୃଷ୍ଣ ଚରିତକୁ ଗୌଣଭାବରେ ବର୍ଣ୍ଣନା କରି ଓଡ଼ିଶାର ଜାତୀୟ ଦେବତା ଜଗନ୍ନାଥଙ୍କର ମହତ୍ତ୍ୱ ଓ ଗୌରବମୟ ପରମ୍ପରା ଉପରେ ଅଧିକ ଗୁରୁତ୍ୱ ଆରୋପ ପୂର୍ବକ ତାଙ୍କୁ ନାରାୟଣ, ବିଷ୍ଣୁ, କୃଷ୍ଣ, ମାଧବ ଓ ଗୋପୀନାଥ ଭାବରେ ବର୍ଣ୍ଣନା କରିଛନ୍ତି । ପୁଣି ତାଙ୍କ ମତରେ ଜଗନ୍ନାଥ ହେଉଛନ୍ତି ଅଣାକାର ବିଷ୍ଣୁ, ବୁଦ୍ଧ-ନାରାୟଣ ତଥା ଅବତାରୀ ଓ ସୃଷ୍ଟି, ସ୍ଥିତି ପ୍ରଳୟର କାରଣ ସ୍ୱରୂପୀ । ଏହିପରି ଭାବରେ ଅନେକ ଐତିହାସିକ, ଗବେଷକ ତଥା କବିମାନେ ଜଗନ୍ନାଥ ଧର୍ମକୁ ବୈଷ୍ଣବ ଧର୍ମ ସହିତ ସମାନ ସ୍ତରରେ ରଖି, ତାହା ସହିତ କେତେକାଂଶରେ ବୌଦ୍ଧଧର୍ମର ପ୍ରଭାବକୁ ସଂଯୁକ୍ତ କରିବାକୁ ଚେଷ୍ଟା କରିଛନ୍ତି । ନାଗାର୍ଜ୍ଜୁନଙ୍କ ପ୍ରବର୍ତ୍ତିତ 'ଶୂନ୍ୟବାଦ' ନାନାଭାବରେ ଆଲୋଡ଼ିତ ହୋଇ ଶୂନ୍ୟବ୍ରହ୍ମ, ଶୂନ୍ୟତତ୍ତ୍ୱ, ନିରାକାର ପ୍ରଭୃତି ତତ୍ତ୍ୱବାଦରେ ପରିଣତ ହୋଇଗଲା । ଏଗୁଡ଼ିକୁ କାଳକ୍ରମେ ସହଜପନ୍ଥୀ ବୌଦ୍ଧମାନେ ଏକ ସ୍ୱତନ୍ତ୍ର ଆକାରଦେଇ ଜଗନ୍ନାଥ ଧର୍ମରେ ସାମିଲ କରିଦେଲେ । ସେହିଭଳି ଭାବରେ ବୌଦ୍ଧ ଶୂନ୍ୟବାଦ, ଗୋରେଖନାଥଙ୍କ ଅଲକ୍ଷ୍ୟବାଦ ଓ ଯୋଗସାଧନ ବୈଷ୍ଣବ ଧର୍ମଦ୍ୱାରା ମୃଷ୍ଟ ହୋଇ, କାଳକ୍ରମେ 'ଜଗନ୍ନାଥ ଧର୍ମ'ରେ ସେମାନଙ୍କ ସତ୍ତା ଲୋପ କରିଦେଇଥିଲେ ।

ଏହି ରହସ୍ୟମୟ ଦେବତା ଜଗନ୍ନାଥଙ୍କ ବିଷୟରେ ଯେ ଯେତେ ଲେଖିଲେ ବା ଆଲୋଚନା କଲେ ମଧ୍ୟ, ସେ ପ୍ରକୃତରେ କ'ଣ, ତାହା ଅପୂର୍ଣ୍ଣ ରହିଯାଏ ! ସେ ଜଗନ୍ନାଥ ନାମ ହୋଇଥିବାରୁ ସବୁ ଜାତି ଓ ସବୁ ଧର୍ମର ଉପାସ୍ୟ । ତେଣୁ ଜଗନ୍ନାଥଙ୍କ-ଠାରେ ଅନାର୍ଯ୍ୟ, ଜୈନ, ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ପ୍ରଭୃତି ଧର୍ମାବଲମ୍ବୀମାନଙ୍କର ସମନ୍ୱୟ ଘଟିଥିବା ସ୍ଥଳେ, ଅନେକ ପୁଣି ଯିଶୁଖ୍ରୀଷ୍ଟଙ୍କ ସଙ୍ଗେ ତାଙ୍କର ବହୁ ପ୍ରାଚୀନ ସମ୍ପର୍କର ଲୁପ୍ତ ଇତିହାସ ଉଦ୍ଧାର କରିବାକୁ ଯାଇ, ଉତ୍କଳ ତଥା ଭାରତୀୟ ଧର୍ମ ଇତିହାସରେ ଏକ ଚମକ ସୃଷ୍ଟି କରିବାକୁ ବସିଲେଣି । ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ସେମାନଙ୍କର ଗୃହରେ ଯେଉଁ କ୍ରୁଶ ଅଙ୍କନ କରନ୍ତି, ତାହା ଜଗନ୍ନାଥଙ୍କ ମୂର୍ତ୍ତିର ପ୍ରତୀକ ବୋଲି ବର୍ତ୍ତମାନ କେତେକ ଗବେଷକ ମତପ୍ରକାଶ କରିଛନ୍ତି । ଯିଶୁଙ୍କୁ କ୍ରୁଶବିଦ୍ଧ କରାଯାଇଥିବାରୁ, ସେହି କ୍ରୁଶକୁ ଖ୍ରୀଷ୍ଟିୟାନମାନେ ପୂଜାକରନ୍ତି । ପୁଣି ଯିଶୁଖ୍ରୀଷ୍ଟ ପୁରୀ ଆସି ଶ୍ରୀଜଗନ୍ନାଥଙ୍କର ପୂଜା ଆରାଧନା କରିଥିବା ପଣ୍ଡିତମାନେ ମତବ୍ୟକ୍ତ କରୁଥିବାରୁ, ସେହି କ୍ରୁଶ ବା ଛକକୁ ସେମାନେ ଜଗନ୍ନାଥଙ୍କର ସାଙ୍କେତିକ ଚିହ୍ନ ଭାବରେ ଗ୍ରହଣ କରିଛନ୍ତି । ପୁଣି ଜଗନ୍ନାଥଙ୍କର ଶ୍ରୀମୂର୍ତ୍ତି ଯାହାବେଳେ ଜଗନ୍ନାଥଙ୍କ ପାଖରେ ଯେଉଁ କାଠ ବନ୍ଧାଯାଇଥାଏ, ତାହା ଏକ 'ଛକ' (X cross) ସଦୃଶ । ତେଣୁ ସେହି 'ଛକ' ହିଁ ଜଗନ୍ନାଥଙ୍କର

ସାଙ୍କେତିକ ଚିହ୍ନବୋଲି ସେମାନଙ୍କର ଧାରଣା । ଊନବିଂଶ ଶତାବ୍ଦୀରେ ଟୌଦ୍ୱାରର କୁଜିବର ମଠର ମହାତ୍ମା ସାଧୁ ସୁନ୍ଦର ଦାସ ପ୍ରଥମେ ବାଇବେଲକୁ ଜଗନ୍ନାଥ ଧର୍ମର ଅର୍ଥଦାନ ସ୍ୱରୂପ ଖ୍ରୀଷ୍ଟଧର୍ମକୁ ଜଗନ୍ନାଥ ଧର୍ମରେ ମିଳାଇନେବାର ଉପକ୍ରମକୁ ଅନେକ ଖ୍ରୀଷ୍ଟିୟାନ ପାଦ୍ରୀ ପ୍ରଶଂସା କରିଥିଲେ ମଧ୍ୟ ତତ୍କାଳୀନ ଶାସକବର୍ଗଙ୍କର ସେ ଚକ୍ଷୁଶୂଳ ହୋଇ କାରାରୁଦ୍ଧ ହୋଇଥିଲେ । ତେବେ ତାଙ୍କ ଅନୁସୃତ ସେହି ମତ ଅଜି ମର୍ତ୍ତ୍ୟରେ ପର୍ଯ୍ୟବସିତ ହେବାକୁ ଲାଗିଲାଣି । ଏହାବ୍ୟତୀତ ଶ୍ରୀ ଜଗନ୍ନାଥଙ୍କ ଠାରେ ମୁସଲମାନମାନଙ୍କର ଧର୍ମ ସଂକେତ ମଧ୍ୟ ବିଦ୍ୟମାନ ବୋଲି ଅନେକ ଗବେଷକ ମତ ଦେଲେଣି ।

ଜଗନ୍ନାଥଙ୍କୁ ପୁଣି ସାମ୍ୟ (Equality)ର ପ୍ରତୀକରୂପେ ଗ୍ରହଣ କରାଯାଇଛି । ରତ୍ନସିଂହାସନାରୂଢ଼ ଚତୁର୍ଦ୍ଧାମୂର୍ତ୍ତିର ବର୍ଣ୍ଣ (colour)ରୁ ମାନବ ସମାଜ ଭିତରେ ଥିବା ସମତାର ସୂଚନା ମିଳେ । ବଳଭଦ୍ର ଶୁକ୍ଳବର୍ଣ୍ଣ, ସୁଭଦ୍ରା ହରିଦ୍ରାବର୍ଣ୍ଣ, ଜଗନ୍ନାଥ କୃଷ୍ଣବର୍ଣ୍ଣ ତଥା ସୁଦର୍ଶନ ରକ୍ତବର୍ଣ୍ଣର ପ୍ରତୀକ । ଆଧୁନିକ ପଣ୍ଡିତମାନଙ୍କ ମତରେ ଶ୍ୱେତକାୟ କକେସୀୟ, ପୀତକାୟ ମଙ୍ଗୋଲୀୟ, କୃଷ୍ଣକାୟ ନିଗ୍ରୋ ଏବଂ ଲୋହିତ-ଭାରତୀୟ (ଆମେରିକାବାସୀ) ପ୍ରଭୃତି ପୃଥିବୀର ପ୍ରାଚୀନତମ ଚାରିବର୍ଣ୍ଣର ପ୍ରତୀକ ମାନବ-ସମାଜ ହିଁ ଜଗତର ନାଥ ଜଗନ୍ନାଥଙ୍କଠାରେ ପ୍ରତିଫଳିତ ହୋଇଛି । କିନ୍ତୁ ଏହି ମତ ଅନ୍ୟମାନଙ୍କ ଦ୍ୱାରା ଗ୍ରହଣୀୟ ହୋଇନାହିଁ । ସେମାନଙ୍କ ମତରେ ଲୋହିତ ଭାରତୀୟ-ମାନେ ପ୍ରାଚୀନ ମାନବଗୋଷ୍ଠୀଭୁକ୍ତ ନୁହନ୍ତି ଏବଂ କେବଳ 'ସୁଦର୍ଶନ'ଙ୍କ ସହିତ ତାଙ୍କର ସଂଯୋଗ ଦର୍ଶାଇବାକୁ ଯାଇ, କେତେକ ଗବେଷକ ତାଙ୍କୁ ଟାଣି ଓଟାରି ଏହା ସହିତ ସମ୍ପୃକ୍ତ କରାଇଛନ୍ତି । ସେ ଯାହାହେଉ, ହିନ୍ଦୁ ମତାନୁଯାୟୀ ଶ୍ୱେତବର୍ଣ୍ଣକୁ ବ୍ରାହ୍ମଣମାନଙ୍କର, ରକ୍ତବର୍ଣ୍ଣକୁ କ୍ଷତ୍ରୀୟମାନଙ୍କର, ହରିଦ୍ରାବର୍ଣ୍ଣକୁ ବୈଶ୍ୟଙ୍କର ଏବଂ କୃଷ୍ଣବର୍ଣ୍ଣକୁ ଶୂଦ୍ରମାନଙ୍କ ସହିତ ସଂଯୁକ୍ତ କରାଯାଇଛି । ଏହି 'ବର୍ଣ୍ଣ'କୁ ସାଧାରଣତଃ 'ଜାତି'ର ପ୍ରତୀକ ରୂପେ ଗ୍ରହଣ କରାଯାଇ, ଏହି ଚାରିବର୍ଣ୍ଣ ବା ଜାତି 'ପୁରୁଷ'ର ପ୍ରତୀକ 'ଜଗନ୍ନାଥ'ଙ୍କଠାରୁ ଉତ୍ପନ୍ନ ବୋଲି ସ୍ୱୀକୃତ ହୋଇଛି । ସେଥିପାଇଁ ଜଗନ୍ନାଥଙ୍କ ମନ୍ଦିର ଭିତରେ ଜାତିଭେଦର ସୂଚନା ନାହିଁ ଏବଂ ବ୍ରାହ୍ମଣ, ଶୂଦ୍ର—ସମସ୍ତଙ୍କୁ ସମାନ ଅଧିକାର ସେମାନଙ୍କର 'ବର୍ଣ୍ଣ' ଅନୁଯାୟୀ ଦିଆଯାଇଛି । ଏଠାରେ ଉଲ୍ଲେଖ ଅନାବଶ୍ୟକ ଯେ, ଜଗନ୍ନାଥ ଉଭୟ ବ୍ରାହ୍ମଣ ଓ ଶୂଦ୍ର ସେବକଙ୍କ ଦ୍ୱାରା ପୂଜିତ ହୁଅନ୍ତି ଏବଂ ସ୍ନାନଯାତ୍ରା-ଠାରୁ ବାହୁଡ଼ା ଯାତ୍ରା ପର୍ଯ୍ୟନ୍ତ, ଶୂଦ୍ରସେବକ (ଦଇତା)ମାନେ ବ୍ରାହ୍ମଣ-ସେବକମାନଙ୍କ ପରି ସମାନ ଧରଣର ସୁବିଧା ସୁଯୋଗ ଉପଭୋଗ କରି ଜଗନ୍ନାଥଙ୍କ ସେବା କରିଥାନ୍ତି । ସେଥିପାଇଁ ଜାତିଭେଦ ଦୂରକରିବା ନିମିତ୍ତ ଜଗନ୍ନାଥଙ୍କର ମହାପ୍ରସାଦର ବ୍ୟବହାର ଉତ୍କଳର ସାମାଜିକ ଜୀବନରେ ବହୁଳଭାବରେ ଦୃଷ୍ଟିଗୋଚର ହୋଇଥାଏ ।

ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା—ଏହି ତିନି ମୂର୍ତ୍ତିଙ୍କୁ ଜ୍ଞାନନେତ୍ରରେ ନିରୀକ୍ଷଣ କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ବର୍ଣ୍ଣଭେଦରେ ଜଗନ୍ନାଥ ଓ ବଳଭଦ୍ର ଯଥାକ୍ରମେ କୃଷ୍ଣ ଓ ଶ୍ୱେତବର୍ଣ୍ଣର ପ୍ରତୀକ । ଏହି ରୂପରୁ ସାଧାରଣତଃ ବିଶ୍ୱ-ଭ୍ରାତୃତ୍ୱର କଳ୍ପନା କରାଯାଇପାରେ । ଏହି ଧାରଣା ସହିତ ନାରୀର ସମନ୍ୱୟ ଯେତିକି ଅଲୌକିକ, ସେତିକି ପରିମାଣରେ ପୃଥିବୀକୁ ନୂତନ ଆଲୋକ ପ୍ରଦାନ କରେ । ପରିଧିରେ ଯେକୌଣସି ଥିଲେ ମଧ୍ୟ କେନ୍ଦ୍ର ବିନ୍ଦୁକୁ ଯେପରି ଲକ୍ଷ୍ୟ କରିବାର କଥା, ଜଗନ୍ନାଥଙ୍କୁ ସେହି ଭାବରେ ବିଶ୍ୱରେ ଗ୍ରହଣ କରାଯାଇପାରେ । ଶ୍ୱେତକୃଷ୍ଣ, ଉଜ୍ଜ୍ୱଳତା ତଥା ଅନ୍ଧକାରର ପରିଧି ଭିତରେ ଘୂରି ଘୂରି ନିଜକୁ ନିଃଶେଷ କରିବା ପୂର୍ବରୁ ସେହି କେନ୍ଦ୍ରବିନ୍ଦୁ ତଥା ମୂଳାଧାର ପୁରୁଷୋତ୍ତମ ଜଗନ୍ନାଥଙ୍କ ନିକଟକୁ ଫେରି ଆସିବାରେ ହିଁ ପରମ ଶାନ୍ତି ମିଳିଥାଏ ।

ଜଗନ୍ନାଥ ଏକ ସାର୍ବଜନୀନ ଦେବତା । ସେ ପୁଣି ସର୍ବଦା ଭକ୍ତର ଅଧୀନ । ଯେ କୌଣସି ସଂପ୍ରଦାୟ ବା ଜାତିର ଲୋକ ତାଙ୍କୁ ଭକ୍ତିଭାବରେ ପୂଜା କରିଛନ୍ତି, ସେ ତା'ର ଡାକ ଶୁଣିଛନ୍ତି । ଜାତିଧର୍ମର ସୀମିତ ସୀମା ମଧ୍ୟରେ ସେ ଆବଦ୍ଧ ନୁହନ୍ତି । ସେ ଅନ୍ତର୍ଯ୍ୟାମୀ । ଅନାଥର ନାଥ । ଦରିଦ୍ରର ବନ୍ଧୁ । ଯେଉଁଠାରେ ଭକ୍ତ ତାଙ୍କୁ ଭକ୍ତିପୂତ ହୃଦୟରେ ବିଭୋର ହୋଇ ସ୍ତୁତି କରେ, ସେହିଠାରେ ସେ ଥାଆନ୍ତି ଏବଂ ତାଙ୍କୁ ସାହାଯ୍ୟ କରନ୍ତି । ଭାରତର ବିଭିନ୍ନ ଧର୍ମମତାବଲମ୍ବୀମାନଙ୍କ ବ୍ୟତୀତ ବିଧର୍ମୀ ମଧ୍ୟ ତାଙ୍କର ମହିମାଗାନ କରି, ତାଙ୍କୁ ଆରାଧନା କରିଥିବାର ଦୃଷ୍ଟାନ୍ତ ବିରଳ ନାହିଁ । ଯିଶୁଖ୍ରୀଷ୍ଟ ତାଙ୍କର ଧର୍ମପ୍ରଚାର କରିବା ପୂର୍ବରୁ ଜଗନ୍ନାଥଙ୍କୁ ଆରାଧନା କରିଥିବାର ସୂଚନା ଅନେକରୁ ଦିଆଯାଇଛି । ପୁଣି ଯବନ କବି ସାଲବେଗ ଶ୍ରୀଜଗନ୍ନାଥଙ୍କର 'ପତିତପାବନ' ନାମର ସାର୍ଥକତା ଉପଲବ୍ଧି କରି ଭାବାବେଗ ତଥା ଭକ୍ତି ଉଚ୍ଛ୍ୱାସରେ, ବହୁ ଭଜନ ଓ ଜଣାଣ ପ୍ରଭୃତି ରଚନା କରି ତାଙ୍କର ସ୍ତୁତିଗାନ କରିଛି । ଭକ୍ତ ଦାସିଆ ଜାତିରେ ବାଉରି ହେଲେ ମଧ୍ୟ, ମନ୍ଦିର ବାହାରେ ରହି ଜଗନ୍ନାଥଙ୍କୁ ନଡ଼ିଆ ଯାଚିଥିଲେ ମଧ୍ୟ, ସେ ତାକୁ ସ୍ୱହସ୍ତରେ ଗ୍ରହଣ କରିଛନ୍ତି । ଏହିପରି ଭାବରେ ଜଗନ୍ନାଥ ସଗୁଧର୍ମ ତଥା ବିଶ୍ୱର ଦେବତାରୂପେ ଅଧିଷ୍ଠିତ ହୋଇଛନ୍ତି । ସେଥିପାଇଁ ବୋଧହୁଏ ପୁରୀକ୍ଷେତ୍ରରେ ଭାରତର ବିଭିନ୍ନ ଅଞ୍ଚଳବାସୀମାନେ ଅନେକ ମଠ ମନ୍ଦିର ନିର୍ମାଣକରି ଅବସର ସମୟରେ ଜଗନ୍ନାଥଙ୍କର ଆରାଧନା ତଥା ଚତୁର୍ବର୍ଗ ଫଳପ୍ରାପ୍ତି ପାଇଁ ଏଠାକୁ ଆସିବାରେ କୁଣ୍ଠା ପ୍ରକାଶ କରିନାହାନ୍ତି । ପରସ୍ପର ବିରୋଧୀ ଅନେକ ମତବାଦର ଲୋକେ ଜଗନ୍ନାଥଙ୍କଠାରେ ଯେ ଏକବୋଲି ପ୍ରତୀୟମାନ ହୁଅନ୍ତି । ଏହା ହିଁ ଜଗନ୍ନାଥଙ୍କୁ ସାର୍ବଜନୀନ ତଥା ଉଦାରତାର ମୂର୍ତ୍ତିମନ୍ତ ପ୍ରତୀକରୂପେ ଯୁଗ ଯୁଗ ଅମରକରି ରଖିଥିବ ।

ଜଗନ୍ନାଥ ଧର୍ମକୁ ମହାନ୍ ଗଣଧର୍ମ ଓ ଜଗନ୍ନାଥଙ୍କୁ ଗଣଦେବତା କହିଲେ ଭୁଲ୍ ହେବନାହିଁ । ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ହେଉଥିବା ରଥଯାତ୍ରାଟି ଏକ ଗଣ-

ଯାହାରୂପେ ଉତ୍କଳରେ ଘଟିଛି । ହିନ୍ଦୁ ଜାତି ତଥା ଧର୍ମର ଲୋକେ ଏ ଉତ୍ସବରେ ଆଗ୍ରହର ସହିତ ଯୋଗ ଦେଇଥାନ୍ତି । ଜଗନ୍ନାଥ ଗଣଦେବତା ହୋଇ ନଥିଲେ, ବିଭିନ୍ନ ଦେଶରୁ ଲୋକମାନେ ଏହି ଉତ୍ସବରେ ଯୋଗଦେବାକୁ ଆସୁଥାନ୍ତେ କାହିଁକି ? 'ଗଣ' ଶବ୍ଦ ସହିତ ଆଧୁନିକ ମନୁଷ୍ୟ ନିବିଡ ଭାବରେ ସମ୍ପୃକ୍ତ । ପୁଣି ଜଗନ୍ନାଥଙ୍କ ଧର୍ମ ସହିତ ଉତ୍କଳୀୟ ଜନସାଧାରଣଙ୍କର ସମ୍ପର୍କ ଅତି ଘନିଷ୍ଠ ହେତୁ ସେହି ଧର୍ମର ଉପାସ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ 'ଗଣଦେବତା' କହିବାରେ କୌଣସି ପ୍ରଶ୍ନ ଉଠି ନ ପାରେ ।

ଜଗନ୍ନାଥ ଧର୍ମର ତାତ୍ତ୍ୱିକ ଓ ମୌଳିକ ଦର୍ଶନର ଏହିପରି ଭାବରେ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ପ୍ରକୃତ ମାନବ ଧର୍ମର ଦ୍ୟୋତକ ସ୍ୱରୂପ ଜଗନ୍ନାଥ ଧର୍ମ ଶତାବ୍ଦୀ ଶତାବ୍ଦୀ ଧରି ମାନବ ଜାତିକୁ ପ୍ରେରଣା ଦେଇଆସିଛି । ଜଗନ୍ନାଥ ସଂସ୍କୃତି, ଭାରତୀୟ ଜୀବନର ଜ୍ଞାନ, ଚିନ୍ତା, ମିଳନ ଓ ପ୍ରେମର ଅନ୍ୟତମ ମିଳନ ସ୍ଥଳ । ସ୍ନେହ, ପ୍ରେମ, ଅନୁରକ୍ତିର ମୂର୍ତ୍ତିମନ୍ତ ବିଗ୍ରହରୂପେ ଜଗନ୍ନାଥ ମହିମା ଆଜି ସାରାବିଶ୍ୱରେ ପ୍ରକୀର୍ତ୍ତିତ । ଆଦିବାସୀର ନୀଳମାଧବ ହେଲେ ଇନ୍ଦ୍ରଦ୍ୟୁମ୍ନର ଜଗନ୍ନାଥ । ଲଳିତାକୁ କେନ୍ଦ୍ର କରି ଯେପରି ବିଶ୍ୱାବସୁ ବିଦ୍ୟାପତିର ସାମାଜିକ ସଂଯୋଗ, ସେହିପରି ଜଗନ୍ନାଥଙ୍କୁ ଆଶ୍ରୟକରି ଆର୍ଯ୍ୟ ଅନାର୍ଯ୍ୟର ମଧୁର ଆଲିଙ୍ଗନ । କେତେ ବିସ୍ତୃତ ଥିଲେ ମାନବର ମମତାର ହୃଦୟ ! କେତେ ବିଶାଳ ପୁଣି ଜଗନ୍ନାଥ ସଂସ୍କୃତିର ଭିତ୍ତିଭୂମି !! ଆର୍ଯ୍ୟ, ଅନାର୍ଯ୍ୟ, ବ୍ରାହ୍ମଣ, ଚଣ୍ଡାଳ—ସମସ୍ତେ ଏ ପୀଠରେ ଏକ ଓ ଅଭିନ୍ନ । ଚିନ୍ତା ଓ ପନ୍ଥା ଯାହାର ଯେପରି ହେଉନା କାହିଁକି, ପୁରୁଷୋତ୍ତମ ପୀଠରେ ଧର୍ମ ଐକତାନକତାର ଯେଉଁ ମନ୍ତ୍ରଧ୍ୱନି ଶୁଭେ, ସେଠି କଣ୍ଠ ମିଳାଇ, ହାତ ମିଳାଇ ପ୍ରତ୍ୟେକ ନିଜ ନିଜକୁ ଭୁଲିଯାଆନ୍ତି । ଏହି ସମନ୍ୱୟ ସାର୍ବଜନୀନ ଇଷ୍ଟ ଜିଜ୍ଞାସାର ଧର୍ମ ଓ ଇଷ୍ଟ ଉପାସନାର ପ୍ରଧାନ କର୍ମ । ସେହି ଇଷ୍ଟଦେବ ହିଁ ଉତ୍କଳର ଉପାସ୍ୟଦେବତା ଜଗନ୍ନାଥ । ସେ ମୈତ୍ରୀଦେବ । ଜଗତର ନାଥ ଭାବରେ ସେ ସମସ୍ତଙ୍କୁ ଆଲିଙ୍ଗନ କରି ନିଜ ସହିତ ସାମିଲ କରିଦେବାକୁ ସର୍ବଦା ଉଦ୍ୟତ । ତେଣୁ ଜଗନ୍ନାଥ ଧର୍ମ ମୈତ୍ରୀ ଧର୍ମ ହେବା ସଙ୍ଗେ ସଙ୍ଗେ ଜୀବନର ପରିସରକୁ ବିସ୍ତୃତତର କରିପାରିଛି । ଏହି ଜଗନ୍ନାଥ ପୁଣି ବିଶ୍ୱ-ଭ୍ରାତୃତ୍ୱର ପ୍ରତୀକ ଏବଂ ମାନବ ସଂସ୍କୃତିର ପ୍ରାଣକେନ୍ଦ୍ର । ତେଣୁ ଜଗନ୍ନାଥ ଧର୍ମର ପ୍ରଚାର ଅର୍ଥ ମାନବ ଧର୍ମର ଏବଂ ବିଶ୍ୱ ସଂସ୍କୃତିର ବିକାଶ ସାଧନ । ଏହିପରି ଏକ ବିଶ୍ୱ ଭ୍ରାତୃତ୍ୱରେ ଅନୁପ୍ରାଣିତ ହୋଇ 'ଜଗନ୍ନାଥ-ଭାବ-ଅମୃତ'ର ଅନୁସନ୍ଧାନୀ ହେଲେ ଯାଇ ଆଜିର ସମାଜ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତରୁ ଯେ ରକ୍ଷା ପାଇପାରିବ ଏବଂ ଜଗନ୍ନାଥ ଧର୍ମର ଏହି ମହାନ୍ ଆଦର୍ଶ ପୃଥିବୀରେ ଯେକୌଣସି ଦେଶରେ ଯେ ନିଶ୍ଚିତ ଭାବରେ ଅଦୃତ ଓ ପ୍ରତିଷ୍ଠିତ ହୋଇପାରିବ, ଏହା ନିଃସନ୍ଦେହରେ କୁହାଯାଇପାରେ ।

# ଓଡ଼ିଶୀ ଚିତ୍ରକଳାରେ ଜଗନ୍ନାଥ

କଳା ସଦାସର୍ବଦା ଧର୍ମର ବାହକ ହୋଇ ରହି ଆସିଛି । ଦେବତା ଉଦ୍ଦେଶ୍ୟରେ ଗଢ଼ି ଉଠିଥିବା ମନ୍ଦିର ଗାତ୍ରରେ ବା ତାଙ୍କ ତୁଷ୍ଟି ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଉଥିବା ପୂଜା ପାର୍ବଣରେ କଳା ମୁଖ୍ୟ ସ୍ଥାନ ଗ୍ରହଣ କରେ । ଜଗନ୍ନାଥ ଯେଉଁ ଦେଶର ଧର୍ମ, ସଂସ୍କୃତି ଏବଂ ଜୀବନର ପ୍ରତୀକ, ସେ ଦେଶର କଳା ନିଶ୍ଚିତ ଭାବେ ଜଗନ୍ନାଥ ଭାବଧାରାରେ ଉଦ୍‌ବୁଦ୍ଧ ହେବା ସ୍ୱାଭାବିକ । ଜଗନ୍ନାଥ ଚିନ୍ତା ବା ଜଗନ୍ନାଥ ରୂପକଳ୍ପନା ଯେଭଳି ଭାବରେ ହେଉ ଓଡ଼ିଶାର ଏହା ଏକ ଅତିପ୍ରାଚୀନ ଶୈଳ୍ପିକ ପ୍ରକାଶ ବା ସର୍ଜନା ଏଥିରେ ଦ୍ୱିମତ ହେବାରେ କିଛି ନାହିଁ ।

ଜଗନ୍ନାଥଙ୍କ ରୂପ ସର୍ଜନା କଳାକ୍ଷେତ୍ରରେ ଏକ ଅଭିନବ ଅଭିବ୍ୟକ୍ତି । ବିଶ୍ୱବନ୍ଦିତ ଆଧୁନିକଧର୍ମୀ ଚିତ୍ରଶିଳ୍ପୀ ପେବ୍ଲୋପିକାସୋଙ୍କ କ୍ୟୁବିଜିମ୍ ଆବିଷ୍କାରର ବହୁ ଶତ ବର୍ଷ ଆଗରୁ ବା କଳା ଜଗତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ଶିଳ୍ପୀ ସାଲଭର୍ ଡାଲିଙ୍କ ସର୍‌ରିଏଲିଜିମ୍ ପ୍ରବର୍ତ୍ତନର ବହୁଯୁଗ ପୂର୍ବରୁ ଜଗନ୍ନାଥଙ୍କ ରୂପସୃଷ୍ଟି ଏଭଳି ଅନେକ ଇଜିମ୍‌ର ସାମ୍ଭାବ୍ୟକୁ ହେସ୍ତକରି ଓଡ଼ିଶୀ ଭଳି ଏକ ପାରମ୍ପରିକ ଶିଳ୍ପଧାରା ଭିତରେ ସମ୍ଭବ ହୋଇ ପାରିଥିଲା; ତାହା ଜଗନ୍ନାଥଙ୍କ ଭଳି ଏକ ଆଶ୍ଚର୍ଯ୍ୟ । ଜଗନ୍ନାଥ ଯେ ନିଜେ ପରଂବ୍ରହ୍ମ, ଅଭୋକ୍ତା, ଅଦ୍ରଷ୍ଟା, ଅକର୍ତ୍ତା ଏବଂ ବିଶ୍ୱର ପାଳକ ରୂପେ ସର୍ବଦ୍ରଷ୍ଟା ସର୍ବକର୍ତ୍ତା—ଏଭଳି ଏକ ସାକାର ଏବଂ ନିରାକାର ବ୍ରହ୍ମର ଦ୍ୱନ୍ଦ୍ୱାତ୍ମକ ଦାର୍ଶନିକ ଭାବଧାରାର ରୂପାୟନ ପାଇଁ ଜଗନ୍ନାଥଙ୍କ ପାଣିପାଦ ବିହୀନ ରୂପସୃଷ୍ଟି କେତେ ଯେ ଯଥାର୍ଥ ତାହା କେବଳ ଉପଲବ୍‌ଧିର ବିଷୟ । ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ପର୍କିତ କିମ୍ବଦନ୍ତୀ-ରାଣୀଙ୍କ ସଂଭ୍ରମ, ବୃଦ୍ଧକାରୀଗରଙ୍କ ଜୀବନ ଆଶଙ୍କା ଏବଂ ରୁଦ୍ଧ ମନ୍ଦିରର ଦ୍ୱାର ଉନ୍ମୋଚନ ଭିତରେ ସତ୍ୟତା ଥାଇପାରେ ବା ନ ଥାଇପାରେ; କିନ୍ତୁ, ଜଗନ୍ନାଥଙ୍କ ରୂପକଳ୍ପନାରେ ଅସମ୍ପୂର୍ଣ୍ଣତା ବା ଅପରିପକ୍ୱତାର ଲେଶ ମାତ୍ର ନାହିଁ । ଜଗନ୍ନାଥଙ୍କ ରୂପ ସୃଷ୍ଟି ଏକ ସ୍ୱୟଂ-ସମ୍ପୂର୍ଣ୍ଣ ଏବଂ ସ୍ୱୟଂସିଦ୍ଧ ଶୈଳ୍ପିକ ପରିପ୍ରକାଶ । ଏଠାରେ ଜଗନ୍ନାଥ କୁହାଯାଉଥିଲେ ମଧ୍ୟ, ବଳଭଦ୍ର ଏବଂ ସୁଭଦ୍ରାଙ୍କୁ ମଧ୍ୟ ଆମ ଆଲୋଚନାର ପରିସର ମଧ୍ୟକୁ ନିଆଯାଇଛି । ଜଗନ୍ନାଥଙ୍କୁ ବୌଦ୍ଧତ୍ୱ, ଜୈନତ୍ୱ ବା ତାନ୍ତ୍ରିକ ମତବାଦର ପ୍ରତୀକ ଭାବରେ ନିଆଯାଇ

ପାରେ ବା ଶବର ଦେବତା କୁହାଯାଇପାରେ; କିନ୍ତୁ କଳା ଦୃଷ୍ଟିରୁ ବିଚାର କଲେ ଜଗନ୍ନାଥଙ୍କ ରୂପକଳ୍ପର ନଜିର ବୌଦ୍ଧ କିମ୍ବା ଜୈନ କିମ୍ବା ଅନ୍ୟ କୌଣସି ଧର୍ମ ବା ମତବାଦରେ ନାହିଁ ।

ଜଗନ୍ନାଥଙ୍କୁ ଆମେ ବର୍ତ୍ତମାନ ଯେଉଁଭଳି ଦେଖୁ ତାହା ଏକ ସଂପୂର୍ଣ୍ଣ ଭାସ୍କର୍ଯ୍ୟ ନୁହେଁ । କାରଣ ଦାରୁ ଭାସ୍କର୍ଯ୍ୟ ଉପରେ ଚିତ୍ରର ଆସ୍ତରଣ ବିଦ୍ୟମାନ । ଓଡ଼ିଶୀ ଚିତ୍ର ଶୈଳୀର ପାରମ୍ପରିକ ପଦ୍ଧତିରେ ଚିତ୍ରିତ । ସମ୍ପୂର୍ଣ୍ଣ ଭାସ୍କର୍ଯ୍ୟ ନହେଲେ ମଧ୍ୟ ଜଗନ୍ନାଥଙ୍କ ରୂପରେ ଘନତ୍ୱ ଏବଂ ବଳିଷ୍ଠ ଭାବ ସାଙ୍ଗକୁ ଚିତ୍ରକଳାର ସ୍ୱଚ୍ଛ ଏବଂ ଉଜ୍ଜ୍ୱଳ ଭାବ ବିଦ୍ୟମାନ । ଜଗନ୍ନାଥଙ୍କ ବିଗ୍ରହ ଉଭୟ ଭାସ୍କର୍ଯ୍ୟ ଏବଂ ଚିତ୍ରକଳାର ଏକ ମହାନ୍ ସୃଷ୍ଟି । ଜଗନ୍ନାଥଙ୍କ ବିପୁଳ ଶରୀର ପୃଥିବୀ ଉପରେ ମାନବୀୟ ସ୍ଥିତାବସ୍ଥାର ଆଭାସ ଦେଉଥିବା ବେଳେ ଉତ୍ତୋଳିତ ଭୁଜ ବା ପ୍ରସାରିତ ଭୁଜ ଦୁଇଟି ଅସୀମର ଦ୍ୟୋତକ । ବିସ୍ଫାରିତ ଏବଂ ବର୍ତ୍ତୁଳ ନୟନ ଯୁଗଳ ବ୍ୟାପକତାର ନିଦର୍ଶନ । ହାସ୍ୟ-ରେଖା ଯୁକ୍ତ ଅଧର ଆଶିଷର ପ୍ରଦାନ ପାଇଁ ଉଦ୍ଦିଷ୍ଟ । ଜଗନ୍ନାଥଙ୍କ ଚିତ୍ରଣ ଓଡ଼ିଶୀ ଚିତ୍ର ଶୈଳୀର ପାରଂପରିକ ପଦ୍ଧତିରେ ଚିତ୍ରିତ । ମୌଳିକ ବର୍ଣ୍ଣ ଯୋଜନାକୁ ନେଇ ଗଢି ଉଠିଥିବା ଜଗନ୍ନାଥଙ୍କ ଚିତ୍ରଣ ଶୁଦ୍ଧ ଓଡ଼ିଶୀ ଧାରା ବା ଓଡ଼ିଶୀ ଚିତ୍ରଣ ଶୈଳୀର ନିଜସ୍ୱ । ବୋଧହୁଏ ଅନ୍ୟ କୌଣସି ଦେଶ ବା ଜାତିର ଠାକୁର ସେଠାକାର କଳାଶୈଳୀକୁ ଏଭଳି ଭାବରେ ନିୟନ୍ତ୍ରିତ କରିଥିବା ଦେଖା ଯାଇନି । ଭିନ୍ନ ଦେବତା ଓ ଠାକୁରଙ୍କୁ ନେଇ ଭିନ୍ନ ଦେଶରେ ଶିଳ୍ପ ପରିକଳ୍ପନା କରାଯାଇଛି; କିନ୍ତୁ, ଏତେ ନିବିଡ଼ ଭାବରେ କୌଣସି ଦେବତା ସେ ଦେଶର ଶିଳ୍ପଧାରାକୁ ଉଦ୍‌ବୁଦ୍ଧ କରିନାହାନ୍ତି ।

ନାଲି, ହଳଦିଆ, କଳା (ବା କୃଷ୍ଣ) ଏବଂ ଧଳା ଭଳି କେତେକ ମୌଳିକ ବର୍ଣ୍ଣକୁ ନେଇ ଓଡ଼ିଶୀ ଚିତ୍ରର ବର୍ଣ୍ଣଯୋଜନା ପ୍ରସ୍ତୁତ କରାଯାଇଛି । ଜଗନ୍ନାଥଙ୍କ କଳା ବା କୃଷ୍ଣ, ବଳଭଦ୍ରଙ୍କ ଶୁଭ୍ର ବା ଧଳା ଏବଂ ସୁଭଦ୍ରାଙ୍କ ହଳଦିଆ ଓଡ଼ିଶୀ ଚିତ୍ରର ତିନୋଟି ମୌଳିକ ବର୍ଣ୍ଣର ସ୍ୱାକ୍ଷର ବହନ କରେ । କେବଳ ବିଗ୍ରହରେ ନୁହେଁ ତିନି ଠାକୁରଙ୍କ ରଥର ବର୍ଣ୍ଣରେ ମଧ୍ୟ ମୌଳିକ ବର୍ଣ୍ଣଗୁଡ଼ିକର ବ୍ୟବହାର ଓଡ଼ିଶୀ ଚିତ୍ରଣ ପଦ୍ଧତିକୁ ଅଧିକ ଦୃଢ଼ୀଭୂତ କରେ । କଳା ବଦଳରେ ଘନନୀଳ (Indigo) ବା ଘନସବୁଜ (Terreverte)ର ବ୍ୟବହାର ଚିତ୍ର କ୍ଷେତ୍ରରେ ଚଳନୀୟ । କାଷ୍ଠ ଭାସ୍କର୍ଯ୍ୟ ଉପରେ ପାଟ ବସ୍ତ୍ରର ଆସ୍ତରଣ ଦିଆଯାଇ ପୃଷ୍ଠଭୂମିକୁ ମସୃଣ କରାଯାଏ, ଯେଉଁଭଳି ତିନି ସ୍ତର ପରସ୍ତ କନା ତେନ୍ତୁଳି ମଞ୍ଜି ଅଠାରେ ଯୋଡ଼ି ପଟ୍ଟଚିତ୍ରପାଇଁ ଭୂମି ପ୍ରସ୍ତୁତ କରାଯାଏ । ଏହି ପୃଷ୍ଠଭୂମି ଉପରେ ଉପର ବର୍ଣ୍ଣିତ ମୌଳିକ ବର୍ଣ୍ଣ ସାହାଯ୍ୟରେ ମୂର୍ତ୍ତିଗୁଡ଼ିକୁ ଚିତ୍ରିତ କରାଯାଏ । ସର୍ବଶେଷରେ "କଳା" ବର୍ଣ୍ଣ ସାହାଯ୍ୟରେ ଅଳଙ୍କରଣ କରି ମୂର୍ତ୍ତିଗୁଡ଼ିକର ଚିତ୍ରଣ କାର୍ଯ୍ୟ ସଂପୂର୍ଣ୍ଣ କରାଯାଏ ।

ଓଡ଼ିଶାରେ ପରିଦୃଷ୍ଟ ହେଉଥିବା ଭିତ୍ତିଚିତ୍ରଗୁଡ଼ିକ ମଧ୍ୟରେ ପୁରୀ ଶ୍ରୀମନ୍ଦିରରେ ଥିବା ଚିତ୍ରଗୁଡ଼ିକ ହିଁ ସର୍ବାପେକ୍ଷା ପୁରାତନ । କେନ୍ଦୁଝର ଜିଲ୍ଲାର ରାବଣଛାୟା ପାହାଡ଼ରେ ଥିବା ସୀତାବିଞ୍ଜି ଭିତ୍ତିଚିତ୍ରକୁ ଛାଡ଼ିଦେଲେ ଆଉ ସେଭଳି ପୁରାତନ ଚିତ୍ର ଆମ ଦୃଷ୍ଟିଗୋଚର ହୋଇ ନ ଥିବାରୁ ଏଭଳି ଏକ ସିଦ୍ଧାନ୍ତରେ ପହଞ୍ଚିବା ସ୍ୱାଭାବିକ । ଓଡ଼ିଶୀ ଶୈଳୀରେ ଚିତ୍ରିତ ମଧ୍ୟଯୁଗୀୟ ଶ୍ରୀମନ୍ଦିରର ଚିତ୍ରଗୁଡ଼ିକ ଅପେକ୍ଷା ଜଗନ୍ନାଥଙ୍କ ବିଗ୍ରହ ନିର୍ମିତ ଭାବେ ବହୁ ପୁରାତନ । ଏଣୁ ଜଗନ୍ନାଥଙ୍କ ମୂର୍ତ୍ତି ନିର୍ମାଣରେ ବ୍ୟବହୃତ ଚିତ୍ରଣ ପଦ୍ଧତି ଓଡ଼ିଶାର ନିଜସ୍ୱ ଚିତ୍ରଣ ଶୈଳୀ ଏବଂ ତାହା ଜଗନ୍ନାଥଙ୍କ ଭଳି ପୁରାତନ ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାର ମନ୍ଦିର, ବିହାର ଏବଂ ପ୍ରାସାଦମାନଙ୍କରେ କେବେ ଶୋଭା ପାଉଥିବା ଚିତ୍ରାବଳୀଗୁଡ଼ିକ ଆଜି ବିଲୁପ୍ତ ହୋଇଯାଇଥିଲେ ମଧ୍ୟ ଏବଂ ଓଡ଼ିଶୀ ଚିତ୍ରକଳାର ପୁରାତନ ଦୃଷ୍ଟାନ୍ତଗୁଡ଼ିକ ନଷ୍ଟ ହୋଇଯାଉଥିଲେ ମଧ୍ୟ ଓଡ଼ିଶାର ଦେବତା ଜଗନ୍ନାଥ ନିଜ ଅଙ୍ଗରେ ଓଡ଼ିଶୀ କଳାର ନିଦର୍ଶନ ବହନ କରି ଏଯାବତ୍ ପର୍ଯ୍ୟନ୍ତ ମଧ୍ୟରେ ଆଶାର ଆଲୋକ ଦେଇ ପାରୁଛନ୍ତି, ତାହା ଭାବିଲେ ବିସ୍ମୟ ଲାଗେ ।

ଜଗନ୍ନାଥ, ଶ୍ରୀମନ୍ଦିର, ଶ୍ରୀମନ୍ଦିର ବେଢ଼ାରେ ଥିବା ଅନ୍ୟାନ୍ୟ ମନ୍ଦିର, ଜଗନ୍ନାଥଙ୍କ ବିଭିନ୍ନ ଉତ୍ସବ, ଯାନଯାତ୍ରା ଜଗନ୍ନାଥଙ୍କ ରଥ ଇତ୍ୟାଦି ସମସ୍ତ ଭିତରେ କଳାର ଉପାଦେୟତା ଏତେ ବେଶି ଯେ, ପୁରୀର ଚିତ୍ରକର ମହାରଣାମାନେ କେବଳ ଜଗନ୍ନାଥଙ୍କ ଆଶ୍ରୟରେ ଭରଣ ପୋଷଣ କରିପାରୁଛନ୍ତି । ଜଗନ୍ନାଥଙ୍କ ଦୈନିକ ବେଶ-ସିଙ୍ଗାର ପାଇଁ ଚିତ୍ରକର୍ମର ଆବଶ୍ୟକତା ଠାରୁ ଆରମ୍ଭ କରି ଜଗନ୍ନାଥଙ୍କ ପ୍ରତିବର୍ଷ ରଥ-ଯାତ୍ରା ପୂର୍ବରୁ ଅଣସର ମୁଦ୍ରାରେ ଚିତ୍ର, ଶ୍ରୀମନ୍ଦିର ଏବଂ ଅନ୍ୟାନ୍ୟ ମନ୍ଦିରର ପୁରାତନ ଭିତ୍ତିଚିତ୍ରର ନବୀକରଣ, ରଥଯାତ୍ରା ପାଇଁ ରଥ ନିର୍ମାଣ, ରଥର ଚିତ୍ରଣ ଇତ୍ୟାଦି ପାଇଁ ଦଳେ ଚିତ୍ରକର ସଦାସର୍ବଦା ନିୟୁକ୍ତ ଥାଆନ୍ତି । ଧର୍ମ ସହିତ କଳାର ଏହି ମଧୁର ସମନ୍ୱୟ କଳାର ପରମ୍ପରାକୁ ବଜାୟ ରଖିବା ସଙ୍ଗେ ସଙ୍ଗେ ତା'ର ମହତ୍ୱକୁ ସମାଜ ଭିତରେ ପରିବେଷିତ କରିପାରିଛି । କେବଳ ପୁରୀ କାହିଁକି ଜଗନ୍ନାଥ ଧର୍ମର ବିସ୍ତାର ସଙ୍ଗେ ସଙ୍ଗେ ଓଡ଼ିଶାର ଅନ୍ୟାନ୍ୟ ପ୍ରାନ୍ତରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଓଡ଼ିଶୀ ଚିତ୍ର-କଳାର ବିକାଶରେ ଯଥେଷ୍ଟ ସାହାଯ୍ୟ କରିଛି । ମନ୍ଦିରର ନିର୍ମାତା ରାଜାଙ୍କ ପୃଷ୍ଠ-ପୋଷକତା ଲାଭକରି ଘରିଆଡ଼ି ଓଡ଼ିଶୀ ଚିତ୍ରର ପ୍ରସାର କରି ପାରିଛନ୍ତି ।

ବିଗ୍ରହ ପୂଜା ବ୍ୟତୀତ ଜଗନ୍ନାଥଙ୍କ ରୂପକୁ ନେଇ କଳାସୃଷ୍ଟି କରିବାର ଦୃଷ୍ଟାନ୍ତ ପୁରାତନ ଭିତ୍ତିଚିତ୍ର ବା ମନ୍ଦିର ଗାତ୍ରରେ ଖୋଦିତ ଫଳକ ଭିତରେ ଦୃଷ୍ଟିଗୋଚର ହୁଏ ନାହିଁ । ଶ୍ରୀମନ୍ଦିରର ଭୋଗମଣ୍ଡପ କାନ୍ଥରେ ଦୁର୍ଗାମାଧବଙ୍କ ମୂର୍ତ୍ତି ହିଁ ଭାସ୍କର୍ଯ୍ୟ କଳାରେ ଜଗନ୍ନାଥଙ୍କ ପ୍ରତୀକ ଚିତ୍ରରେ ସର୍ବପ୍ରାଚୀନ ଉପଲବ୍ଧ ନମୁନା ।

ଜଗନ୍ନାଥଙ୍କ ରୂପ ସମ୍ବଳିତ ପୂର୍ଣ୍ଣ ମୂର୍ତ୍ତି ଆଗରେ ରାଜା ଦଣ୍ଡାୟମାନ ଥିବା ଦୃଶ୍ୟ ଏହି ଭାସ୍କର୍ଯ୍ୟ ଫଳକରେ ପରିଦୃଷ୍ଟ ହୁଏ । ଏହା ବ୍ୟତୀତ ଶ୍ରୀମନ୍ଦିର ମୁଖ୍ୟଦ୍ୱାର ଉପରେ ଦଶ ଅବତାର ମୂର୍ତ୍ତିମାନଙ୍କ ମଧ୍ୟରେ ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥ ସ୍ଥାନ ପାଇଛନ୍ତି । କୋଣାର୍କ ମନ୍ଦିରରେ ମଧ୍ୟ ଜଗନ୍ନାଥ ମୂର୍ତ୍ତିର ନମୁନା ପଥର କାନ୍ଥରେ ଖୋଦିତ ହୋଇଛି । ବର୍ତ୍ତମାନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଉଦ୍ୟାନରେ ପ୍ରଦର୍ଶିତ ଏବଂ କଟକ ଜିଲ୍ଲାର ଦର୍ପଣୀରେ ଥିବା ବିଷ୍ଣୁମନ୍ଦିରର ଭଗ୍ନାବଶେଷରୁ ଆନୀତ ଖୋଦିତ ପଥର ଫଳକରେ ଉଲ୍ଲେଖ ଥିବା ରଥ ସହିତ ଜଗନ୍ନାଥଙ୍କ ମୂର୍ତ୍ତି ଜଗନ୍ନାଥଙ୍କ ରଥଯାତ୍ରାର ପ୍ରାଚୀନତମ ନିଦର୍ଶନ । ପଥର ଫଳକର ବହୁ ଅଂଶ ନଷ୍ଟ ହୋଇଯାଇଥିଲେ ମଧ୍ୟ ଯାହା ତିଷ୍ଠି ରହିଛି ସେଥିରେ ଜଗନ୍ନାଥଙ୍କ ବିଗ୍ରହ ରଥ ଉପରେ ଉପବିଷ୍ଟ ହୋଇଥିବାର ଦୃଶ୍ୟ ସହିତ ରଥକୁ ଟଣା ଯାଉଥିବାର ଦୃଶ୍ୟ ଅତି ହୃଦୟସ୍ପର୍ଶୀ । ଏଗୁଡ଼ିକ ବ୍ୟତୀତ ଅନ୍ୟ ଯେଉଁଠି ଜଗନ୍ନାଥଙ୍କ ମୂର୍ତ୍ତି ସ୍ଥାନ ପାଇଛି ତାହା କେବଳ ବିଗ୍ରହ ରୂପେ ପୂଜା ପାଇବା ପାଇଁ ଉଦ୍ଦିଷ୍ଟ । ଜଗନ୍ନାଥଙ୍କ ରୂପ ଯେହେତୁ ଏକ ଅଭିନବ ଧରଣର, ତେଣୁ ତାଙ୍କୁ ନେଇ ସିଧାସଳଖ ଚିତ୍ର ସର୍ଜନା ମଧ୍ୟରେ ସ୍ଥାନ ଦେବା ଶିଳ୍ପୀମାନଙ୍କ ପକ୍ଷେ ସମ୍ଭବପର ହୋଇନା । ତା' ହୋଇଥିଲେ ଶିଳ୍ପସୃଷ୍ଟିରେ ସଂହତି ନଷ୍ଟ ହେବା ସଙ୍ଗେ ସଙ୍ଗେ ପରସ୍ପର ରୂପର ସମ୍ପର୍କରେ ଅସଂଗତି ଭାବ ରହନ୍ତା । ଏସବୁ ଦୃଷ୍ଟିରୁ ବୋଧହୁଏ ଜଗନ୍ନାଥଙ୍କୁ ନେଇ ମୌଳିକ ଆଖ୍ୟାୟିକା ଉପରେ ରୂପ ଯୋଜନା ଶିଳ୍ପସୃଷ୍ଟିରେ ସ୍ଥାନ ପାଇ ପାରିନାହିଁ !

ଶିବ ଆଖ୍ୟାୟିକା ଉପରେ ଆଧାରିତ ଭାସ୍କର୍ଯ୍ୟ ଫଳକରେ ଶିବଙ୍କୁ ସାଧାରଣ ମାନବ ଶରୀର ଦିଆଯାଇଛି । ଯଦିଓ ଶିବଙ୍କ ପୂଜା ପାଇଁ ବିଗ୍ରହ ପରିବର୍ତ୍ତେ ଲିଙ୍ଗର ପ୍ରଚଳନ କରାଯାଇଛି, ଏହା ଆଶଙ୍କା କରିବା ସ୍ୱାଭାବିକ ଯେ, ଯେହେତୁ ଶିବଙ୍କୁ ବିଗ୍ରହ ପରିବର୍ତ୍ତେ ଲିଙ୍ଗ ରୂପରେ ଧାରଣା କରାଯାଏ ତେଣୁ ରିଲିଫ ଫଳ ଖଣ୍ଡକରେ ଚରିତ ବର୍ଣ୍ଣନ ବେଳେ ରୂପ-ଯୋଜନାର ସଂଗତି ରକ୍ଷା ଦୃଷ୍ଟିରୁ ଶିବଙ୍କ ମୂଳ ରୂପକୁ ବଦଳାଇବା ପାଇଁ ଶିଳ୍ପୀ ବାଧ୍ୟ ହୁଏ । କିନ୍ତୁ ଜଗନ୍ନାଥଙ୍କ କ୍ଷେତ୍ରରେ ଶିଳ୍ପୀ ଜଗନ୍ନାଥଙ୍କୁ ହସ୍ତପଦ ବିଶିଷ୍ଟ ମାନବ ଶରୀର ଦେଇ ରୂପ ସୃଜନ ନ କରି ବିଭିନ୍ନ ଅବତାର ରୂପରେ ଚିତ୍ରିତ କରିଛି । ଜଗନ୍ନାଥ କୃଷ୍ଣଭାବରେ ଓଡ଼ିଶୀ ଚିତ୍ରରେ ସ୍ଥାନ ପାଇଛନ୍ତି । ଏଣୁ ବିଷ୍ଣୁଙ୍କର ବା କୃଷ୍ଣଙ୍କର ବିଭିନ୍ନ ବିଭବ ବା ରାଧାକୃଷ୍ଣଙ୍କର ଲୀଳାଭୂମିକର ଦୃଶ୍ୟ ମୁଖ୍ୟତଃ ଓଡ଼ିଶୀ ଚିତ୍ରର ଉପଜୀବ୍ୟ ।

ଓଡ଼ିଶୀ ଚିତ୍ରରେ ରାଧାକୃଷ୍ଣ ଆବିର୍ଭାବର ବହୁ ଆଗରୁ କୃଷ୍ଣ ମାଧବ ଭାବରେ ଓଡ଼ିଶୀ ଭାସ୍କର୍ଯ୍ୟରେ ସ୍ଥାନ ପାଇଥିଲେ । ପ୍ରାଚୀ ଉପତ୍ୟକା ତଥା ଯାଜପୁରରେ ମିଳୁଥିବା ବିଭିନ୍ନ ମାଧବ ବିଗ୍ରହ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରୁ ଆରମ୍ଭକରି ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିବାର ଅନୁମାନ କରାଯାଏ । ଜୟଦେବଙ୍କ ରାଧାମାଧବ

ପରିକଳ୍ପନା ଓ ଓଡ଼ିଶାର ସମସାମୟିକ ଦୁର୍ଗାମାଧବ ପରିକଳ୍ପନା ଏହି ମତକୁ ଦୃଢ଼ କରିଥାଏ । ପ୍ରାଚୀ ଉପତ୍ୟକାରେ ମିଳୁଥିବା ମାଧବ ବିଗ୍ରହ ଅପେକ୍ଷା ମାଳପୁରର ଦ୍ୱାଦଶ ମାଧବ ବିଗ୍ରହ ପ୍ରାଚୀନତର ବୋଲି ମନେହୁଏ । ହେବୃପଲ ବର୍ଣ୍ଣିକେର ନୀଳମାଧବ ବିଗ୍ରହ ଖୁବ୍ ସମ୍ଭବତଃ ନୟଦେବଙ୍କ ସମସାମୟିକ । ଏଥିରୁ ଜଣାଯାଏ ଯେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ମାଧବପୂଜା ଲୋକପ୍ରିୟତା ଅର୍ଜନ କରିଥିଲା । ତତ୍କାଳୀନ ଶିଳ୍ପୀମାନେ ମାଧବ ବିଗ୍ରହ ସୁଠାମ ଭଙ୍ଗୀରେ ଗଠନ କରୁଥିଲେ ଏବଂ ଭକ୍ତିତତ୍ତ୍ୱରେ ଏହା ଯେ ସ୍ଥାନ ପାଇ ନ ଥିବ ଏହା ନୁହେଁ; କିନ୍ତୁ ଅଦ୍ୟାପି କୌଣସି ପ୍ରମାଣ ଆମର ହସ୍ତଗତ ହୋଇନାହିଁ ।

ଦ୍ୱାଦଶ, ତ୍ରୟୋଦଶ ଶତାବ୍ଦୀରେ ଗଙ୍ଗବଂଶ ରାଜତ୍ୱକାଳରେ ଓଡ଼ିଶାରେ ଗୋପୀନାଥ ପୂଜାର ପ୍ରଚଳନ କଳାକ୍ଷେତ୍ରରେ ସମ୍ଭବ ହୋଇଥିଲା । ତ୍ରିଭଙ୍ଗ ଠାଣିରେ, ହସ୍ତରେ ବେଣୁ, ବକ୍ଷରେ ବନମାଳା ଓ ଦୁଇପାର୍ଶ୍ୱରେ ଅଷ୍ଟସଖୀ ଓ ନିମ୍ନଦେଶରେ ଗୋଗୋଷ୍ଠ ଥାଇ କଦମ୍ବ ମୂଳରେ ଛିଡ଼ା ହୋଇଥିବା ମୂର୍ତ୍ତିକୁ ଶିଳ୍ପୀମାନେ ଗୋପୀନାଥ ନାମରେ ଅଭିହିତ କରିଥିଲେ । ଏହି ଗୋପୀନାଥ ମୂର୍ତ୍ତି ଓଡ଼ିଶାର ସର୍ବତ୍ର ଲୋକପ୍ରିୟତା ଅର୍ଜନ କରିଥିଲା । ବାଲେଶ୍ୱରର କ୍ଷୀରଚୋରା ଗୋପୀନାଥ, ପୁରୀ ଦାଣ୍ଡମୁକୁନ୍ଦପୁରର ଗୋପୀନାଥ, ଖିଦ୍ରପୁରର ଗୋପୀନାଥ, ରାଜ୍ୟ ସଂଗ୍ରହାଳୟରେ ଥିବା ଧର୍ମଶାଳା ଅଞ୍ଚଳରୁ ସଂଗୃହୀତ ଗୋପୀନାଥ ମୂର୍ତ୍ତିରୁ ଜଣାଯାଏ ଯେ ମସୃଣ ମୁଗୁନି ପଥରରେ ଶିଳ୍ପୀମାନେ ଗୋପୀନାଥ ମୂର୍ତ୍ତି ନିର୍ମାଣ କରୁଥିଲେ । ଗଙ୍ଗ ରାଜାମାନଙ୍କର ପୃଷ୍ଠପୋଷକତାରେ ଗୋପୀନାଥ ମୂର୍ତ୍ତି ବିଭିନ୍ନ ବ୍ରାହ୍ମଣ ଶାସନର କୁଳ ଦେବତାରୂପେ ପ୍ରତିଷ୍ଠିତ ହୋଇଥିଲେ । ଖୁବ୍ ସମ୍ଭବତଃ ସେହିକାଳବେଳେ କୃଷ୍ଣ ଓ ଜଗନ୍ନାଥଙ୍କ ଭିତରେ ଅଭେଦ ପରିକଳ୍ପନା ସମ୍ଭବ ହୋଇଥିଲା । "କଦାଚିତ୍ କାଳିନ୍ଦୀ ତଟ ବିପିନ ସଙ୍ଗୀତକବରୋ......ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବ ତୁମେ" ପ୍ରଭୃତି ଗ୍ରନ୍ଥର ମାଧ୍ୟମରେ ଜଗନ୍ନାଥଙ୍କ ଠାରେ କୃଷ୍ଣତ୍ୱ ଓ କୃଷ୍ଣଙ୍କଠାରେ ଜଗନ୍ନାଥତ୍ୱ ଆରୋପକରି ଓଡ଼ିଶାର ଶିଳ୍ପୀ, କବି, ଆଲୋଚକମାନେ ଚିତ୍ରଣ କଲେ । ମହାକବି ସାରଳାଦାସ ତାଙ୍କ ଅଷ୍ଟାଦଶ ପର୍ବବିଶିଷ୍ଟ ମହାଭାରତରେ କୁରୁକ୍ଷେତ୍ର ଯୁଦ୍ଧର ପ୍ରଧାନ ନାୟକ ଶ୍ରୀକୃଷ୍ଣଙ୍କୁ ପ୍ରତୀକ ସ୍ଥଳରେ ଜଗନ୍ନାଥ ରୂପେ ଚିତ୍ରଣ କରି ମହାଭାରତର କୃଷ୍ଣ ଏବଂ ନୀଳାଦ୍ରି ବିହାରୀ ଜଗନ୍ନାଥଙ୍କ ମଧ୍ୟରେ ଅଭେଦ ପରିକଳ୍ପନା କରିଛନ୍ତି । କେବଳ ସେ ନୁହେଁ — ପ୍ରାଚୀନ କାବ୍ୟକାର ଅର୍ଜୁନ ଦାସ ତାଙ୍କ ରାମବିଭା କାବ୍ୟରେ ଜଗନ୍ନାଥ ଓ ରାମଚନ୍ଦ୍ରଙ୍କ ମଧ୍ୟରେ ଅଭେଦତ୍ୱ ଦେଖାଇ ଜଗନ୍ନାଥଙ୍କ ଧୂପ, ବେଶ, ପ୍ରସାଦ, ଛତ୍ରଣୀ ପ୍ରଭୃତିର ବର୍ଣ୍ଣନା କରିଛନ୍ତି ।

ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ରାଧାକୃଷ୍ଣ ସମ୍ମିଳିତ ବିଗ୍ରହର ପରିକଳ୍ପନା ବହୁ ପରବର୍ତ୍ତୀ ହୋଇଥିଲେ ହେଁ କାବ୍ୟ ଓ ଶିଳ୍ପକ୍ଷେତ୍ରରେ ରାଧାକୃଷ୍ଣ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ଆବିର୍ଭୂତ ହୋଇଲେଣି । ରାଧାକୃଷ୍ଣ ବିଗ୍ରହକୁ ଶିଳ୍ପୀ ଶିଳ୍ପରେ ସ୍ଥାନ ଦେଇ ନ ଥିଲେ ତାହା ଜୟଦେବଙ୍କ ଲେଖନୀରେ "ରାଧାମାଧବୟୋର୍ଜୟନ୍ତି ଯମୁନା କୂଳେରହ କେଳୟଃ" ସ୍ଥାନ ପାଇ ନଥାନ୍ତା । ସେ ସମୟରେ ସାଂସ୍କୃତିକ ପରିପ୍ରେକ୍ଷୀରେ ରାଧାକୃଷ୍ଣ ଆବିର୍ଭାବକୁ ବିରୋଧ କରାଯାଇଥିଲା କିନ୍ତୁ କଳା ଓ କାବ୍ୟ କ୍ଷେତ୍ରରେ ରାଧାକୃଷ୍ଣ ଓଡ଼ିଶୀ ସମାଜରେ ଏପରି ଭାବରେ ପ୍ରବେଶ କଲେ ଯେ ପରିଶେଷରେ ସମାଜର ବିଜ୍ଞପଣ୍ଡାମାନେ ରାଧାକୃଷ୍ଣଙ୍କୁ ଆରାଧ୍ୟ ଦେବତାରୂପେ ସ୍ୱୀକାର କଲେ ।

ଓଡ଼ିଶାରେ ଯେତେ ରାଧାକୃଷ୍ଣ ମନ୍ଦିର ବର୍ତ୍ତମାନ ଦେଖାଯାଏ ସବୁଠି ପ୍ରଥମେ ଗୋପୀନାଥ ମୂର୍ତ୍ତି ପୂଜା ପାଉଥିଲେ; କିନ୍ତୁ ଜୟଦେବଙ୍କ ଠାରୁ ଆରମ୍ଭକରି ବଳଦେବ ବିଦ୍ୟାଭୂଷଣଙ୍କ ପର୍ଯ୍ୟନ୍ତ ରାଧାକୃଷ୍ଣ ଉପାସନାର ପ୍ରଧାନ ସମର୍ଥକମାନେ, କାବ୍ୟ କବିତା ମାଧ୍ୟମରେ ରାଧାକୃଷ୍ଣଙ୍କୁ ଏପରି ଭାବରେ ପ୍ରଚାରିତ କରାଇଲେ ଯେ ସମାଜପତିମାନେ ବାଧ୍ୟ ହୋଇ ପ୍ରସ୍ତର ନିର୍ମିତ ଗୋପୀନାଥ ବିଗ୍ରହ ପାର୍ଶ୍ୱରେ ଧାତୁ ନିର୍ମିତ ରାଧାବିଗ୍ରହ କରିବା ପାଇଁ ବାଧ୍ୟ ହେଲେ । ପ୍ରାଚୀନ ଧର୍ମଶାସ୍ତ୍ରରେ ରାଧାକୃଷ୍ଣଙ୍କ ସମ୍ମିଳିତ ଉପାସନା ରାଧାପୂଜା, ରାଧାଷ୍ଟମୀ ବ୍ରତପାଳନ ସ୍ଥାନ ପାଇ ନ ଥିଲେ ହେଁ ଗୋବିନ୍ଦଭାଷ୍ୟର ପ୍ରଣେତା ଓଡ଼ିଶାର ମହାନ୍ ପଣ୍ଡିତ ବଳଦେବ ବିଦ୍ୟାଭୂଷଣଙ୍କ ରାଧାକୃଷ୍ଣ ଅଚିନ୍ତ୍ୟ ଭେଦାଭେଦ ତର୍କପୂର୍ଣ୍ଣ ବ୍ୟାଖ୍ୟା ଶୁଣି ଓଡ଼ିଶାର ସ୍ମୃତିକାରମାନେ ଧର୍ମଶାସ୍ତ୍ରରେ ରାଧା ଆରାଧନାକୁ ସ୍ଥାନ ଦେଲେ । ରାଧାକୃଷ୍ଣ ଉପାସନା ଦୀପିକା ପ୍ରଭୃତି ସ୍ୱତନ୍ତ୍ର ଗ୍ରନ୍ଥ ପ୍ରଣୀତ ହେଲା ଏବଂ ଶୈଳ୍ପିକ ରସପ୍ରକାଶ ଦୃଷ୍ଟିରୁ ରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତି କେବଳ ଦେବ ବିଗ୍ରହରେ କାହିଁକି ଲୋକକଳାରେ ମଧ୍ୟ ସ୍ଥାନ ପାଇଲା । ଜଗନ୍ନାଥ ଦାସଙ୍କ ଭାଗବତରେ କୃଷ୍ଣଲୀଳାରେ ରାଧା ପ୍ରଧାନ ନାୟିକା ରୂପେ ଚିତ୍ରିତ ହୋଇ ନଥିଲେ ହେଁ ପରବର୍ତ୍ତୀକାଳର କବିମାନେ ଗୁପ୍ତ ଭାଗବତ ନାମକ ସ୍ୱତନ୍ତ୍ର ଗ୍ରନ୍ଥ ଲେଖି ସେଥିରେ ରାଧାଜନ୍ମ ରାଧାକୃଷ୍ଣଙ୍କ ଅମୂର୍ତ୍ତି ଲୀଳାର ବର୍ଣ୍ଣନା କରି ଭାଗବତ ସହିତ ଯୋଡ଼ିଦେଲେ । ସାହିତ୍ୟ ମାଧ୍ୟମରେ ଏହା ଲୋକସଂସ୍କୃତିକୁ ଜାଗ୍ରତ କରିବା ପୂର୍ବରୁ ଲୋକକଳା ମାଧ୍ୟମରେ ଜନସ୍ୱୀକୃତିକୁ ଲାଭ କରିଥିବା ଅସମ୍ଭବ ନୁହେଁ ।

ଲୋକନାଟ୍ୟ କୃଷ୍ଣଲୀଳା ମାଧ୍ୟମରେ ରାଧାକୃଷ୍ଣ ଉପାସନା ବା ରାଧାକୃଷ୍ଣ ଚିନ୍ତା ଓଡ଼ିଶୀ ସମାଜରେ ପ୍ରବେଶ କରିଥିଲା । ଲୀଳା ମାଧ୍ୟମରେ ରାଧାକୃଷ୍ଣ ଲୀଳାକୁ ପ୍ରଦର୍ଶନ କରାଇବା ବେଳେ ଶିଳ୍ପୀମାନେ କୃଷ୍ଣଲୀଳା ସମ୍ବନ୍ଧୀୟ ବିଭିନ୍ନ ମୁଖା ପ୍ରଚଳନ ପଦ୍ଧତି

ପ୍ରାୟ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରୁ ଓଡ଼ିଶାରେ ପ୍ରବର୍ତ୍ତନ କରିଥିଲେ । ଏବେ ମଧ୍ୟ ଓଡ଼ିଶୀ ଚିତ୍ରଶୈଳୀରେ କୃଷ୍ଣଲୀଳା ସମ୍ବନ୍ଧୀୟ ମୁଖା ପ୍ରସ୍ତୁତ କରିବା ଓ କୃଷ୍ଣଲୀଳାରେ ସେଗୁଡ଼ିକୁ ବ୍ୟବହାର କରିବା ପଦ୍ଧତି ଓଡ଼ିଶାରେ ରହିଛି । ପ୍ରତ୍ୟକ୍ଷ ଭାବରେ ନହେଲେ ମଧ୍ୟ ଶ୍ରୀଜଗନ୍ନାଥ ଏହି କୃଷ୍ଣଲୀଳା ମାଧ୍ୟମରେ ଓଡ଼ିଶାର ଜନସମାଜରେ ପ୍ରଭାବିତ ହୋଇଛନ୍ତି ।

ବର୍ତ୍ତମାନ ଓଡ଼ିଶାରେ ପ୍ରଚଳିତ ଓଡ଼ିଶୀ ଶୈଳୀର ପୁରାତନ ଭିତ୍ତିଚିତ୍ରର ନମୁନା ନାହିଁ, ଏଣୁ ତାଳପତ୍ର ପୋଥି ଚିତ୍ରଗୁଡ଼ିକ ହିଁ ଓଡ଼ିଶୀ କଳାର ପୁରାତନ ସ୍ୱାକ୍ଷର ରୂପେ ପ୍ରତିଭାତ ହୁଏ । ପୋଥିଚିତ୍ରଗୁଡ଼ିକରେ ରଙ୍ଗ ଅପେକ୍ଷା ରେଖାର ପ୍ରାଧାନ୍ୟ ବେଶୀ । ରେଖାକର୍ମ ଶେଷ ପରେ ରଙ୍ଗର ପ୍ରଲେପ ଦିଆଯାଏ ଏବଂ ଏହି ରଙ୍ଗଗୁଡ଼ିକ ମୁଖ୍ୟତଃ ମୌଳିକ ବର୍ଣ୍ଣ । ପଟ୍ଟଚିତ୍ରର ଅଙ୍କନ ଶୈଳୀ ଏବଂ ପୋଥିଚିତ୍ରର ଅଙ୍କନ ଶୈଳୀ ପ୍ରାୟ ସମାନ । ଯଦିଓ ତାଳପତ୍ରଗୁଡ଼ିକ ଉପରେ ଲୁହାର ଲେଖନୀ ସାହାଯ୍ୟରେ ରେଖାଗୁଡ଼ିକୁ ଖୋଦନ ବା କର୍ତ୍ତନ କରାଯାଏ ।

ଓଡ଼ିଶାରେ ମିଳୁଥିବା ଚିତ୍ରିତ ପୋଥିଗୁଡ଼ିକ ମଧ୍ୟରେ କୃଷ୍ଣ ବିଷୟକ ଚିତ୍ରିତ ପୋଥିର ସଂଖ୍ୟା ବେଶି । ଷୋଡ଼ଶ ଶତାବ୍ଦୀର ଜୟଦେବଙ୍କ ରଚିତ ଚିତ୍ରିତ ଗୀତଗୋବିନ୍ଦ ପୋଥି ହିଁ ଓଡ଼ିଶାର ଚିତ୍ରିତ ପୋଥିଗୁଡ଼ିକ ମଧ୍ୟରେ ସର୍ବପ୍ରାଚୀନ । ଜୟଦେବଙ୍କ ଗୀତଗୋବିନ୍ଦର ପ୍ରଭାବ ଫଳରେ ଓଡ଼ିଶୀ ଚିତ୍ରକଳାରେ ଦଶାବତାର ଚିତ୍ରର ପରିକଳ୍ପନା ସ୍ଥାନ ପାଇଲା । ଶ୍ରୀମନ୍ଦିରରେ ଦଶାବତାର ସ୍ତୁତି ଗାନ କରାଯିବା ଏବଂ ଜଗନ୍ନାଥଙ୍କୁ ବିଷ୍ଣୁ ବା କୃଷ୍ଣ ରୂପରେ ଅଭିହିତକରି ତାଙ୍କର ଗୁଣକୀର୍ତ୍ତନ କରିବା ଭିତରେ ଶିଳ୍ପୀ ତାର ରୂପ ସର୍ଜନା ପାଇଁ ଯଥେଷ୍ଟ ଉପାଦାନ ସଂଗ୍ରହ କରି ପାରିଲା ଏବଂ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ଜଗନ୍ନାଥ ହିଁ କଳା ଦୃଷ୍ଟି ମାଧ୍ୟମରେ ପ୍ରତିଫଳିତ ହେଲେ । ଓଡ଼ିଶାରେ ଯେତେଗୁଡ଼ିଏ ତାଳପତ୍ର ପୋଥି ଆମର ହସ୍ତଗତ ହୋଇପାରିଛି ସେଗୁଡ଼ିକ ମଧ୍ୟରୁ ଷୋଡ଼ଶ ଶତାବ୍ଦୀରେ ଚିତ୍ରିତ ଗୀତଗୋବିନ୍ଦ ପୋଥିର ଚିତ୍ରଣ ଶୈଳୀର ଧାରା ହିଁ ପରବର୍ତ୍ତୀ ସମୟରେ ଅନ୍ୟାନ୍ୟ ପୋଥି ଚିତ୍ରଣ ମଧ୍ୟରେ ପ୍ରତିଫଳିତ ହୋଇଛି । ଏହି ଚିତ୍ରଗୁଡ଼ିକରେ ଜଗନ୍ନାଥଙ୍କ ବିଗ୍ରହ ସ୍ୱତନ୍ତ୍ର ଭାବେ ସ୍ଥାନ ପାଇବା ବ୍ୟତିରେକ, ଜଗନ୍ନାଥ ମନ୍ଦିର, ଜଗନ୍ନାଥ ମନ୍ଦିର ସହିତ ପୁରୀର ଦୃଶ୍ୟ, ଜଗନ୍ନାଥଙ୍କୁ ନବମ ଅବତାର ରୂପେ ଗ୍ରହଣ କରି ଦଶାବତାର ଚିତ୍ର ଅଙ୍କିତ ହୋଇଛି । ଏହା ବ୍ୟତୀତ ରାଧାକୃଷ୍ଣଙ୍କ ପ୍ରେମ ବିଷୟକ ଚିତ୍ର ବର୍ଣ୍ଣନାରେ ଗୀତଗୋବିନ୍ଦର କଳେବର ଭରପୂର ।

ଗୀତଗୋବିନ୍ଦ ପୋଥି ବ୍ୟତୀତ ଅନ୍ୟ ଯେଉଁ ପୋଥିଗୁଡ଼ିକରେ ରାଧାକୃଷ୍ଣ ବିଷୟକ ଚିତ୍ର ଅଙ୍କିତ ହୋଇଛି ସେଗୁଡ଼ିକ ହେଲା ବିଦଗ୍ଧ ମାଧବ ନାଟକ, ଉଷାଭିଳାଷ, ଆର୍ତ୍ତତ୍ରାଣ

ଚଉତିଶା, କନ୍ଦର୍ପରଥ ଗୋପଲୀଳା ଏବଂ ଭାଗବତ । ବିଦଗ୍ଧ ମାଧବ ନାଟକର ଦଶାବତାର ଚିତ୍ରରେ ଜଗନ୍ନାଥଙ୍କ, ଚିତ୍ର ସ୍ଥାନ ପାଇଛି । ଉଷାଭିଳାଷ କାବ୍ୟରେ ଚିତ୍ରଲେଖା ତିନି ଭୁବନର ସୁନ୍ଦର ଯୁବକମାନଙ୍କ ଚିତ୍ର ଅଙ୍କନ କରିବା ସମୟରେ, ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ଚିତ୍ର କରିଛି ଏବଂ କାବ୍ୟର ଆରମ୍ଭରେ ପୁସ୍ତି ବର୍ଣ୍ଣନା କାଳରେ ଜଗନ୍ନାଥଙ୍କ ଚିତ୍ର ଦିଆଯାଇଛି । ଏତଦ୍‌ବ୍ୟତୀତ ଏଗୁଡ଼ିକରେ ଯଦିଓ ଜଗନ୍ନାଥଙ୍କ ବିଷୟରେ ପ୍ରତ୍ୟକ୍ଷ ବର୍ଣ୍ଣନା ବା ଚିତ୍ରଣ ନାହିଁ ତଥାପି ପରୋକ୍ଷ ଭାବରେ ଜଗନ୍ନାଥଙ୍କ ଲୀଳା ବା କୃଷ୍ଣଲୀଳା ହିଁ ଚିତ୍ରିତ ହୋଇଛି । ଓଡ଼ିଶୀ ଚିତ୍ରରେ ଜଗନ୍ନାଥ ଓ କୃଷ୍ଣଙ୍କ ମଧ୍ୟରେ ରୂପଗତ ପାର୍ଥକ୍ୟ ବ୍ୟତୀତ ବର୍ଣ୍ଣଗତ ପାର୍ଥକ୍ୟ ନାହିଁ । ଏଣୁ ଚିତ୍ରକର ବର୍ଣ୍ଣବିନ୍ୟାସ କଲାବେଳେ ଜଗନ୍ନାଥ ଓ କୃଷ୍ଣଙ୍କ ଭିତରେ ପାର୍ଥକ୍ୟ ନଦେଖି ସାମଞ୍ଜସ୍ୟ ହିଁ ଦେଖିଥାଏ ।

ମଧ୍ୟଯୁଗୀୟ ଭିତ୍ତିଚିତ୍ରଗୁଡ଼ିକ ମଧ୍ୟରୁ "କାଞ୍ଚିବିଜୟ ଚିତ୍ର" ବା "ମାଣିକ ଗଉଡ଼ୁଣୀ ଚିତ୍ର" ଜଗନ୍ନାଥ ସମ୍ପର୍କିତ ଏକ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ । ଓଡ଼ିଶାର ରାଜା ପୁରୁଷୋତ୍ତମଦେବଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଏବଂ ଠାକୁର ରାଜାଙ୍କପ୍ରତି ଅପମାନର ମୁକାବିଲା ପାଇଁ ନିଜେ ଜଗନ୍ନାଥ, ବଳଭଦ୍ର ଧଳା କଳା ଘୋଡ଼ା ଚଢ଼ି ରାଜାଙ୍କ ସେନାବାହିନୀ ଅଗରେ କାଞ୍ଚି ଅଭିମୁଖେ ଯେପରି ଯୁଦ୍ଧଯାତ୍ରା କରିଥିଲେ ତାର ଏକ ଜୀବନ୍ତ ପ୍ରତିଛବି କାଞ୍ଚିବିଜୟ ଚିତ୍ରରେ ଲିପିବଦ୍ଧ । ରାସ୍ତାରେ ତୃଷାତୁର ଜଗନ୍ନାଥ ଏବଂ ବଳଭଦ୍ର ରନ୍ମୁଦ ବିଜୟସମୟରେ ମାଣିକ ଗଉଡ଼ୁଣୀ ଠାରୁ ଦହି ଖାଇବା ଏବଂ ମାଣିକ ନାମରେ ପରବର୍ତ୍ତୀ କାଳରେ ନାମିତ ପଡ଼ା ମାଣିକ ପାଟଣାର ସ୍ମୃତି — ଏହି ଚିତ୍ରରେ ପ୍ରତିଫଳିତ ହୋଇଛି । ଶ୍ରୀମନ୍ଦିରର ଜଗମୋହନ କାନ୍ଥରେ ଅଙ୍କିତ କାଞ୍ଚି ଅଭିଯାନ ଚିତ୍ର ଅତି ପୁରାତନ ଯଦିଓ ଚିତ୍ରର ନବୀକରଣ ପ୍ରତିବର୍ଷ ପୁରାତନ ଚିତ୍ର ଉପରେ ହୋଇ ଆସୁଛି । କେବଳ ଭିତ୍ତିଚିତ୍ର କାହିଁକି କାଞ୍ଚିବିଜୟ ବିଷୟବସ୍ତୁ ଓଡ଼ିଶାର ଚିତ୍ରକରମାନଙ୍କର ପଟ୍ଟଚିତ୍ରକୁ ଗୌରବର ସ୍ୱାକ୍ଷର ବହନ କରେ । ଏହି ଚିତ୍ରରେ ମଧ୍ୟ ଜଗନ୍ନାଥ ଏବଂ ବଳଭଦ୍ରଙ୍କ ପ୍ରକୃତ ବିଗ୍ରହର ରୂପ ପରିବର୍ତ୍ତେ ସେମାନଙ୍କୁ କୃଷ୍ଣ ଏବଂ ବଳରାମ ରୂପେ ପରିକଳ୍ପନା କରାଯାଇଛି ।

ପଟ୍ଟଚିତ୍ର ଗୁଡ଼ିକ ମଧ୍ୟରେ ଜଗନ୍ନାଥ ମନ୍ଦିର ଚିତ୍ରଣ ଏକ ଅଭିନବ ରୂପ ବିନ୍ୟାସର ସୂଚନା ଦିଏ । ମନ୍ଦିର ମଧ୍ୟରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଚିତ୍ର ବ୍ୟତୀତ ପ୍ରଧାନ ମନ୍ଦିରର ଚତୁପାର୍ଶ୍ୱରେ ଥିବା ଅନ୍ୟାନ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ମନ୍ଦିର, ଦଶାବତାର ଚିତ୍ର, କୃଷ୍ଣଲୀଳାର ବିଭିନ୍ନ ଆଖ୍ୟାୟିକା, ଜଗନ୍ନାଥଙ୍କ ପାକଶାଳା, ଆନନ୍ଦବଜାର, ଇନ୍ଦ୍ରଦ୍ୟୁମ୍ନ ପୋଖରୀ ଏବଂ ଜଗନ୍ନାଥଙ୍କ ସପକ୍ଷରେ ଭକ୍ତର ଏକ ସାମୂହିକ ସମାବେଶ ଏହି ପଟ୍ଟଚିତ୍ରର ଉଦ୍ଦେଶ୍ୟ । ଏହି ପଟ୍ଟଚିତ୍ର ସମୁଦାୟ ଜଗନ୍ନାଥ ଧର୍ମ ସମ୍ପର୍କରେ ଏକ ସମ୍ୟକ୍ ଧାରଣା ଦିଏ ।

ପଟ୍ଟଚିତ୍ରଗୁଡ଼ିକରେ ଯେଉଁ ଯେଉଁ ଲୀଳାକୁ ଆଧାରକରି ଚିତ୍ର ଅଙ୍କନ କରାଯାଏ ସେଗୁଡ଼ିକ ହେଲା; ରାସକ୍ରୀଡା, ମଥୁରାଗମନ, ରାଧାକୃଷ୍ଣ ଯୁଗଳ, କାଳିୟ ଦଳନ, ବସ୍ତ୍ରହରଣ, ବକାସୁର, ଅଘାସୁର, ପ୍ରଲମ୍ବାସୁର ବଧ, ଗିରିଗୋବର୍ଦ୍ଧନ, ଗଜ ଉଦ୍ଧାରଣ ଇତ୍ୟାଦି । ପଟ୍ଟଚିତ୍ର ପ୍ରସ୍ତୁତ କରିବାର ଏକ ସ୍ୱତନ୍ତ୍ର ପ୍ରଣାଳୀ ଅଛି । ତାହା ଓଡ଼ିଶାର ନିଜସ୍ୱ ପ୍ରଣାଳୀ । କନାର ଦୁଇଗୋଟି ଆସ୍ତରଣକୁ ତେନ୍ତୁଳି ମଞ୍ଜି ଅଠାରେ ଯୋଡ଼ିଦେଇ ତା' ଉପରେ ପଥର ଖଡ଼ିର ଏକ ପ୍ରଲେପଦେଇ ପଟ୍ଟଗୁଡ଼ିକୁ ଖରାରେ ଶୁଖାଇ ଦିଆଯାଏ । ତା'ପରେ ତାର ପୃଷ୍ଠଭାଗକୁ ମସୃଣକରି ସିଧାସଳଖ ରଙ୍ଗରେ ଚିତ୍ରଟିକୁ ରେଖା ସାହାଯ୍ୟରେ ଅଙ୍କନ କରାଯାଏ । ଅଙ୍କନ ପରେ ବିଭିନ୍ନ ମୌଳିକ ରଙ୍ଗ ପ୍ରୟୋଗ କରାଯାଏ ଏବଂ ପରିଶେଷରେ ଗାଢ଼ କୃଷ୍ଣବର୍ଣ୍ଣ ସାହାଯ୍ୟରେ ଚିତ୍ରର ଅଲଂକରଣ କରାଯାଏ । ପଟ୍ଟଚିତ୍ରଗୁଡ଼ିକ ମୁଖ୍ୟତଃ ପୂଜା ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିବାରୁ ସେଗୁଡ଼ିକୁ ଦୀର୍ଘସ୍ଥାୟୀ କରିବା ପାଇଁ ଲାଖ ବା ଜଉର ଏକ ପତଳା ଆସ୍ତରଣ ବୋଳି ଦିଆଯାଏ । ଏହା ଚିତ୍ରଟିକୁ ଉଜ୍ଜ୍ୱଳ କରିବା ସଙ୍ଗେ ସଙ୍ଗେ ପାଣି ଏବଂ ଅନ୍ୟାନ୍ୟ କ୍ଷୟକାରୀ ଶକ୍ତିମାନଙ୍କଠାରୁ କିଞ୍ଚିତ ରକ୍ଷାକରେ । ଜଗନ୍ନାଥଙ୍କ ମୂର୍ତ୍ତିର ଚିତ୍ର ମଧ୍ୟ ଠିକ୍ ଏଭଳି ଭାବରେ କରାଯାଏ ।

ଜଗନ୍ନାଥ ପ୍ରତିମାସରେ ଭକ୍ତଙ୍କ ମନୋରଞ୍ଜନ ପାଇଁ ବିଭିନ୍ନ ବେଶରେ ସଜିତ ହୁଅନ୍ତି । ଏହି ସଜ୍ଜୀକରଣ କରିବା ପାଇଁ ମନ୍ଦିରରେ ସେବକ ନିଯୁକ୍ତ ଥାଆନ୍ତି । ବେଶ ଗୁଡ଼ିକ ପରେ ଜଗନ୍ନାଥଙ୍କ ମୂଳ ପ୍ରକୃତ ବିଗ୍ରହ ରୂପରେ ପରିବର୍ତ୍ତନ ପରିଲକ୍ଷିତ ହୁଏ । ପଟ୍ଟଚିତ୍ରର କଥାବସ୍ତୁ ଉପରେ ଆଧାରିତ ବିଭିନ୍ନ କୃଷ୍ଣଲୀଳାର ରୂପଯୋଜନା ଏହି ବେଶଗୁଡ଼ିକରେ ଅନୁସରଣ କରାଯାଏ । ଆପାତତଃ ଜଗନ୍ନାଥ ପଟ୍ଟଚିତ୍ରର କୃଷ୍ଣଲୀଳା ମଧ୍ୟରେ ପ୍ରତ୍ୟକ୍ଷଭାବରେ ମୂର୍ତ୍ତିମନ୍ତ ହୋଇନଥିଲେ ମଧ୍ୟ ଜଗନ୍ନାଥଙ୍କ ବେଶଗୁଡ଼ିକ ଦର୍ଶନ କଲାପରେ ନିଶ୍ଚିତ ଭାବେ ହୃଦ୍‌ବୋଧ ହେବ ଯେ ଜଗନ୍ନାଥଙ୍କ ବିଭିନ୍ନ ଲୀଳା ଏବଂ କୃଷ୍ଣଲୀଳା ମଧ୍ୟରେ ଅନ୍ତର ନାହିଁ । ପ୍ରାଚୀନ ଓଡ଼ିଆ କବିମାନଙ୍କ ବର୍ଣ୍ଣନର ସତ୍ୟତା ଏଠାରେ ପ୍ରତିପାଦିତ ହୋଇପାରିବ । ଜଗନ୍ନାଥଙ୍କୁ ବିଭିନ୍ନ ବେଶରେ ମାନବ ଶରୀରରେ ସଜାଇବା ପାଇଁ ସୁନାର ହାତ ଏବଂ ଗୋଡ଼ ଖଞ୍ଜି ଦିଆଯାଏ । ବେଶର ଆବଶ୍ୟକତାନୁଯାୟୀ ବିଭିନ୍ନ ଅଙ୍ଗଭଙ୍ଗୀରେ ସଜାଇ ଦିଆଯାଏ । ଏଥିରୁ ଗୋଟିଏ କଥା ସ୍ପଷ୍ଟ ହୋଇଛି ଯେ ଜଗନ୍ନାଥଙ୍କ ପ୍ରକୃତ ବିଗ୍ରହରୂପ ବର୍ଣ୍ଣନାତ୍ମକ ବା ରଚନାତ୍ମକ କଳା ସୃଷ୍ଟି ପାଇଁ ସିଧାସଳଖ ଭାବେ ଉପଯୁକ୍ତ ନୁହେଁ । ଏଣୁ ଜଗନ୍ନାଥଙ୍କୁ ମାନବ ଶରୀରରେ ସଜାଇ ବିଭିନ୍ନ ଆଖ୍ୟାୟିକାକୁ ଆଧାରକରି ବେଶ ରଚନା କରାଯାଏ ।

ବୈଶାଖ ମାସରେ ଚନ୍ଦନ ବେଶରେ ଜଗନ୍ନାଥଙ୍କୁ ଆଲଂକାରିକ ଚନ୍ଦନର ପରିପାଟୀରେ ସଜାଇ ଦିଆଯାଏ । କଳାଶ୍ରୀ ମୁଖ ଉପରେ ଚନ୍ଦନର ତିଳକ ଏବଂ

ଅଲଂକରଣ ବଡ଼ ମନୋହର ହୁଏ । ଜଗନ୍ନାଥଙ୍କ ସେବକ, ସିଂହାରୀ ଏବଂ ପୁଷ୍ପାଳକ - ମାନେ ବେଶ ସଜ୍ଜୀକରଣରେ ଖୁବ୍ ସିଦ୍ଧହସ୍ତ । ଭକ୍ତମାନଙ୍କ ମନଲାଖି ସୁନ୍ଦର ବେଶରେ ଠାକୁରମାନଙ୍କୁ ସଜାଇ ପାରନ୍ତି । ବେଶକରିବା ଏକ ଶୈଳ୍ପିକ କୃତିତ୍ୱ ଏବଂ ଜଗନ୍ନାଥଙ୍କ ଭଳି ହସ୍ତପଦ ବିହୀନ ଦାରୁକୁ ରାମ, କୃଷ୍ଣ ଆଦି ବେଶରେ ପୁରାଣ ଚରିତକୁ ନେଇ ସଜାଇବାରେ ପଣ୍ଡାମାନଙ୍କର ବିଶେଷ କାରିଗରୀ କୌଶଳ ପ୍ରକାଶପାଏ । ବେଶ ସାଙ୍ଗକୁ ମୁକୁଟ, ବିଭିନ୍ନ ଅଳଙ୍କାର, ପାଟ ପଡ଼ନୀ, ଫୁଲର ଗଜରା, ଟାହିଆ ଇତ୍ୟାଦିକୁ ନେଇ ଠାକୁରମାନଙ୍କ ଅଙ୍ଗସଜ୍ଜାକରିବା ଜଗନ୍ନାଥଙ୍କ ପଣ୍ଡାମାନଙ୍କର ପାରଂପାରିକ ପେଷା ।

ଜ୍ୟେଷ୍ଠ ମାସ ସ୍ନାନ ପୂର୍ଣ୍ଣିମାରେ ଗଜବେଶ ବା ଗଣେଶବେଶ, ରୁକ୍ମିଣୀ ହରଣ ବେଶ, ଅଣସର ଶେଷଦିନ ନବ ଯୌବନ ବେଶ, ଆଷାଢ଼ ମାସ ରଥଯାତ୍ରା ଅବସରରେ ରଥଉପରେ ସୁନାବେଶ, ଶ୍ରାବଣ ମାସରେ ଚିତାଲାଗି ବେଶ, ଭାଦ୍ରବ ମାସରେ ବନଭୋଜି, କାଳୀୟ ଦଳନ, ପ୍ରଲମ୍ବାସୁର ବେଶ, ଆଶ୍ୱିନ ବା ବିଜୟାଦଶମୀରେ ରାଜବେଶ । କାର୍ତ୍ତିକମାସ ପଞ୍ଚକ ଅବସରରେ ରାଧାଦାମୋଦର ବେଶ, ତ୍ରିବିକ୍ରମ ବେଶ, ନୃସିଂହ, ପର୍ଶୁରାମ, ବାମନ ଓ ରାଜାଧିରାଜ ବେଶ, ପୌଷ ମାସରେ ରାଜବେଶ, ମାଘରେ ଗଜୋଦ୍ଧାରଣ ବେଶ, ପଦ୍ମବେଶ ପ୍ରଭୃତି ଶୈଳ୍ପିକ କୃତିତ୍ୱ ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ ।

ଜଗନ୍ନାଥ ଓ ଜଗନ୍ନାଥ ମନ୍ଦିର ଲାଗି ପୁରୀ ବିଶ୍ୱବିଖ୍ୟାତ । ଭାରତର ଚାରିଧାମ ମଧ୍ୟରୁ ପୁରୀ ଅନ୍ୟତମ । ଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ଏବଂ ରଥଯାତ୍ରା ପାଇଁ ବର୍ଷର ସବୁ ସମୟରେ ଭାରତର ଏବଂ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଭକ୍ତ, ତୀର୍ଥଯାତ୍ରୀ, ଏବଂ ପର୍ଯ୍ୟଟକମାନେ ଆସନ୍ତି । ଭକ୍ତମାନେ ଜଗନ୍ନାଥଙ୍କ ସ୍ମୃତି ବହନ କରି ସ୍ୱଦେଶ ଫେରନ୍ତି । ପୁରୀରୁ ଜଗନ୍ନାଥ ପଟ, ମାଟିରେ ବା କାଠରେ ତିଆରି ଜଗନ୍ନାଥ, ଭଜନ ମାଳା, ନାମାବଳୀ, ନିର୍ମାଲ୍ୟ ଏବଂ ଜଗନ୍ନାଥ ସମ୍ପର୍କିତ ବିଭିନ୍ନ ସାମଗ୍ରୀ ନେଇ ଫେରନ୍ତି । ଏସବୁ ବସ୍ତୁ ମଧ୍ୟରେ ଜଗନ୍ନାଥଙ୍କ ପଟ୍ଟ ହିଁ ମୁଖ୍ୟସ୍ଥାନ ଗ୍ରହଣ କରେ । ବୋଧହୁଏ ଭକ୍ତମାନଙ୍କର ଜଗନ୍ନାଥଙ୍କ ପ୍ରତି ଏଭଳି ଆସକ୍ତି ଏବଂ ଆଦର ହେତୁ ଓଡ଼ିଶୀ ଚିତ୍ରକଳା ପଟ୍ଟଚିତ୍ର ମାଧ୍ୟମରେ ଆଜି ପର୍ଯ୍ୟନ୍ତ ତିଷ୍ଠି ରହି ଆସିଛି । ପୁରୀ ବଡଦାଣ୍ଡର ଉଭୟ ପଟେ ଗଢି ଉଠିଥିବା ଛୋଟ ଛୋଟ ନୁଆଁଣିଆ କାଠ କ୍ୟାବିନ ଟିଙ୍ଗି ଘରଗୁଡ଼ିକ ଭିତରେ ଏସବୁ ସାମଗ୍ରୀର ପ୍ରଦର୍ଶନୀ ମେଳଥାଏ । ଉଜ୍ଜ୍ୱଳ ବର୍ଣ୍ଣର ଛୋଟବଡ଼ ପଟ୍ଟଚିତ୍ର, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ରାଧାକୃଷ୍ଣ ଜଗନ୍ନାଥ ମନ୍ଦିର, କାଞ୍ଚିବିଜୟ, ଶାମୁକାରେ ଜଗନ୍ନାଥ ଚିତ୍ର ଖଚିତ ପଟା, ଜଗନ୍ନାଥ କଣ୍ଢେଇ, ଶଙ୍ଖ, ଶାମୁକା, କାଚ ମାଳି, ନାମାବଳୀ ଇତ୍ୟାଦି ଯେ କୌଣସି ଦର୍ଶକର ଦୃଷ୍ଟି ଆକର୍ଷଣ କରେ ।

ପର୍ଯ୍ୟଟନ ଶିଳ୍ପ ସହିତ ଜଗନ୍ନାଥ ଏବଂ ଓଡ଼ିଶୀ ଚିତ୍ରର ମଧୁର ସମନ୍ୱୟ ହେତୁ ଓଡ଼ିଶାରେ ଜଗନ୍ନାଥଙ୍କ ସାଙ୍ଗକୁ ପର୍ଯ୍ୟଟନ ଶିଳ୍ପ ଏବଂ ଓଡ଼ିଶୀ ଚିତ୍ରର ପରଂପରା କେଉଁ ଆବାହମାନ କାଳରୁ ଚାଲି ଆସିଛି । ପଟ୍ଟଚିତ୍ରର କୌତୁହଳୋଦ୍ଦୀପକ ରୂପ ବିନ୍ୟାସ, ଉଜ୍ଜ୍ୱଳ ମୌଳିକ ବର୍ଣ୍ଣ ଏବଂ ତାର ଲୋକପ୍ରିୟତା ଦୃଷ୍ଟିରୁ ଏହାକୁ ବଜାର ଚିତ୍ର (Bazar Painting) ବୋଲି କେତେକ ପାଶ୍ଚାତ୍ୟ ସମାଲୋଚକ ଆଖ୍ୟା ଦେଇଛନ୍ତି । କିନ୍ତୁ ଏହି ଉକ୍ତି ଭିତରେ ଗୋଟିଏ କଥା ସତ ଯେ, ଜଗନ୍ନାଥ ଯେଭଳି ଶ୍ରୀମନ୍ଦିରରେ ବିଜେ କରିଥିଲେ ମଧ୍ୟ ସେ କେବଳ ମନ୍ଦିରର ଦେବତା ନୁହନ୍ତି, ସେ ଜନତାର ଜନାର୍ଦ୍ଦନ; ସେଭଳି ଜଗନ୍ନାଥଙ୍କୁ ଆଶ୍ରା କରି ଗଢି ଉଠିଥିବା ଓଡ଼ିଶୀ ଚିତ୍ର ବା ପଟ୍ଟଚିତ୍ର ଦରବାରୀ କଳା ନ ହେଲେ ଲୋକକଳା ଭାବେ ବିସ୍ତାର ଲଭ କରିଛି ।

ଜଗନ୍ନାଥ କଥାବସ୍ତୁ ବା ଜଗନ୍ନାଥ ବିଗ୍ରହକୁ କେନ୍ଦ୍ର କରି ଯେତକିଟି ଶିଳ୍ପବସ୍ତୁ ଓଡ଼ିଶାରେ ପ୍ରଚଳିତ ସେଗୁଡ଼ିକ ହେଲା କାଠରେ ତିଆରି ଜଗନ୍ନାଥ କଣ୍ଢେଇ, କାଗଜ ମଣ୍ଡର ଜଗନ୍ନାଥ ମୁଖା, ଗୋବର ଓ ମାଟିର ଜଗନ୍ନାଥ ଖେଳନା, ଜଗନ୍ନାଥ ପଟ୍ଟ, କାଠ ପଟାରେ ଚିତ୍ରିତ ଏବଂ ଖୋଦିତ ଜଗନ୍ନାଥ ମନ୍ଦିର ଏବଂ ଜଗନ୍ନାଥ ବିଗ୍ରହ । ଶାମୁକାକୁ ପଦ୍ମାକାରରେ ସଜ୍ଜିତ କରି ତା ଭିତରେ ଜଗନ୍ନାଥ ଚିତ୍ର, ଜଗନ୍ନାଥ ଚିତ୍ର ସମ୍ବଳିତ ନାମାବଳୀ, ପୋଡ଼ା ଇଲେକ୍ଟ୍ରିକ ବଲ୍ବ ଭିତରେ ଝଡ଼ା ପଥରର ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା । କାଚ ଏବଂ ଦର୍ପଣ ଉପରେ ଚିତ୍ରିତ ଜଗନ୍ନାଥଙ୍କ ବିଭିନ୍ନ ବେଶ ସମ୍ବଳିତ ଚିତ୍ର ପ୍ରଧାନ । ଜଗନ୍ନାଥ ଶିଳ୍ପୀମାନଙ୍କ ନିପୁଣ କଳା କୌଶଳୀ ହାତରେ ଶ୍ରୀମନ୍ଦିରର ରତ୍ନବେଦୀରୁ ବାହାରି ଆଧୁନିକ ପ୍ରାସାଦର ବୈଠକ ଗୃହରେ ପହଞ୍ଚିଲେଣି । ହୁଏତ ଜଗନ୍ନାଥ ସବୁ କ୍ଷେତ୍ରରେ ବିଗ୍ରହ ଭାବରେ ପୂଜା ପାଉ ନାହାନ୍ତି, ତା'ବୋଲି ଜଗନ୍ନାଥଙ୍କୁ ଓଡ଼ିଆ ଶିଳ୍ପୀ ନ୍ୟୁନ କରିଦେଇନି । ଶିଳ୍ପୀର ସୃଷ୍ଟି ଭାବରେ, କଳାର ବିଭିନ୍ନ ବିଭାବ ଭାବରେ ଜଗନ୍ନାଥ ପୂଜିତ ବିଗ୍ରହ ଅପେକ୍ଷା କଲା ଏ ଦେଶର ଏବଂ ଓଡ଼ିଆ ଜାତିର ଅତି ଆଦରର ସମ୍ପଦ । ତା ନ ହୋଇଥିଲେ ହୁଏତ ଓଡ଼ିଶୀ କଳା ରାଜା ମହାରାଜା ବା ଧନାଢ୍ୟ ବ୍ୟକ୍ତିଙ୍କ ପୃଷ୍ଠପୋଷକତାରେ ଆଜିଯାଏ ବଞ୍ଚି ପାରିନଥାନ୍ତା । ଧର୍ମ ମାଧ୍ୟମରେ ଜଗନ୍ନାଥ ଓଡ଼ିଶୀ ଚିତ୍ରକଳାର ଏକମାତ୍ର ପୃଷ୍ଠପୋଷକ । କେବଳ ପୁରୀରେ ନୁହେଁ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ମୁଖ୍ୟତଃ ଯେଉଁଠାରେ ଜଗନ୍ନାଥ ମନ୍ଦିର ଏବଂ ରଥଯାତ୍ରାର ପରମ୍ପରା ଅଛି, ସେଠାରେ ଚିତ୍ରକରମାନେ ଜଗନ୍ନାଥ ସମ୍ପର୍କିତ ବିଭିନ୍ନ କଳା ସାମଗ୍ରୀ ପ୍ରସ୍ତୁତ କରନ୍ତି । ପୁରୀ ନିକଟବର୍ତ୍ତୀ ରଘୁରାଜପୁର ଓଡ଼ିଶାର ପଟ୍ଟଚିତ୍ରର ମୁଖ୍ୟକେନ୍ଦ୍ର । ଏତଦ୍‌ବ୍ୟତୀତ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି, ଚିକିଟି, ଧଗପହଣ୍ଡି, ପୁରୀ ଜିଲ୍ଲାର ରଘୁରାଜପୁର, ପୁରୀ, ନୟାଗଡ଼, ଭୁବନେଶ୍ୱର, ବଲାଙ୍ଗୀର ଜିଲ୍ଲାର ସୋନପୁରରେ ବହୁଳ ଭାବେ ଚିତ୍ରକରମାନେ ଜଗନ୍ନାଥ ପଟ୍ଟ ଏବଂ ଅନ୍ୟାନ୍ୟ ଶିଳ୍ପ ସାମଗ୍ରୀ ପ୍ରସ୍ତୁତ କରନ୍ତି ।

ଗମ୍ଭୀରା କାଠରେ ଖେଳନା ଉଦ୍ଦେଶ୍ୟରେ ଜଗନ୍ନାଥ ତିଆରି ହୁଏ । କାଠ ଖୋଦେଇ ଶେଷ ହେଲାପରେ, ତା ଉପରେ କନାର ଆସ୍ତରଣ ଏବଂ ଖଡ଼ିର ଓ ତେନ୍ତୁଳି ମଞ୍ଜି ଅଠାର ପ୍ରଲେପ ଦେଇ ଜଗନ୍ନାଥଙ୍କୁ ଚିତ୍ର କଲାଭଳି ପଟ୍ଟଚିତ୍ର ଶୈଳୀରେ ଚିତ୍ର କରାଯାଏ । ସେହିଭଳି କାଗଜ ଏବଂ ଛିଣ୍ଡାକନାରୁ କାଗଜ ମଣ୍ଡ ତିଆରି କରି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ମୁଖା କରାଯାଏ । ଏଗୁଡ଼ିକ ମଧ୍ୟ ପଟ୍ଟଚିତ୍ର ଭଳି ଚିତ୍ରିତ ହୁଏ । ଏହା ଅପେକ୍ଷାକୃତ ହାଲୁକା ହେଉଥିବାରୁ ବିଦେଶୀ ପର୍ଯ୍ୟଟକ-ମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହୁଏ । କାଠରେ ଶ୍ରେଷ୍ଠ ଶ୍ରେଷ୍ଠ ମନ୍ଦିର ତିଆରି କରାଯାଇ ତା ଭିତରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ମୂର୍ତ୍ତି ରଖାଯାଏ । ଗାଁ ଗହଳରେ ଏଗୁଡ଼ିକ ଘରେ ଘରେ ପୂଜା ଉଦ୍ଦେଶ୍ୟରେ ବ୍ୟବହୃତ ହୁଏ । କାଠ ମନ୍ଦିରଗୁଡ଼ିକ ପୁରୀ ମନ୍ଦିରର ସାଦୃଶ୍ୟ ବହନ କରୁ ନଥିଲେ ମଧ୍ୟ ଜଗନ୍ନାଥଙ୍କ ପ୍ରତି ଭକ୍ତର ଆତିଶଯ୍ୟ ହେତୁ ସମସ୍ତ କଳାଗତ ଦୋଷ ଦୁର୍ଗୁଣ ଭୁଲିଯାଇ ଭକ୍ତ ଅତି ଆଦରର ସହିତ ତାକୁ ସ୍ମୃତି ଭାବରେ ସାଇତି ରଖେ ।

ଓଡ଼ିଶାର ବୟନ ଶିଳ୍ପରେ ମଧ୍ୟ ଜଗନ୍ନାଥଙ୍କ ରୂପ ଡିଜାଇନ୍ ବା ରୂପକଳ୍ପ ଆକାରରେ ବ୍ୟବହାର କରାଯାଏ । ବିଭିନ୍ନ ପ୍ରକାର ବାନ୍ଧ, ଶାଢ଼ୀର ଧଡ଼ି ଏବଂ ଆଞ୍ଚଲାରେ ଜଗନ୍ନାଥଙ୍କ ରୂପର ବ୍ୟବହାର ହୁଏ । କୋରାପୁଟ ଜିଲ୍ଲାର ନବରଙ୍ଗପୁର ଏବଂ ଜୟପୁର ଅଞ୍ଚଳରେ ଲାଖରେ ତିଆରି ଜଗନ୍ନାଥ କଣ୍ଢେଇ ମିଳେ । ବାଉଁଶର ଯୌତୁକ ପେଡ଼ି ଉପରେ ଲାଖରେ ଜଗନ୍ନାଥଙ୍କ କମନୀୟ ଚିତ୍ର କରାଯାଏ । ପଟ୍ଟଚିତ୍ର ଶୈଳୀରେ ଅଙ୍କିତ କାଠର ଯୌତୁକ ପେଡ଼ି, କାଠର ଦଶବତାର ଖୋଦେଇ ପୋଡ଼ାମାଟିରେ ଜଗନ୍ନାଥ, ଦ୍ୱାରବନ୍ଧ ଉପରେ 'ସାକରପଟା'ରେ ଜଗନ୍ନାଥ ଖୋଦେଇ ବା ଜଗନ୍ନାଥ ଚିତ୍ର, ବ୍ରତ, ବିବାହ ଇତ୍ୟାଦି ଉତ୍ସବ ଅବସରରେ କାନ୍ଥରେ ବା ଦ୍ୱାରବନ୍ଧ ଉପରେ କାଠ କବାଟ ଉପରେ ଜଗନ୍ନାଥ ଚିତ୍ର, ଗୃହ ପ୍ରତିଷ୍ଠା ପାଇଁ ଦୁର୍ଗାମାଧବ ଚିତ୍ର ଓଡ଼ିଶାରେ ପ୍ରଚଳନ ଅଛି ।

ଆଲ୍‌ପନା କଳାରେ ଜଗନ୍ନାଥଙ୍କ ରୂପର ପ୍ରତିଫଳନ ଚିତ୍ର କଳାର ଅନ୍ୟ ଏକ ବିଭାବ ବୋଲି କୁହାଯାଇପାରେ । ଗାଁ ଗହଳର ଓଡ଼ିଆ ଝିଅ ବୋହୂଙ୍କ ହାତରେ ଗୁଣ୍ଡଳ ପିଠଉର ଜଗନ୍ନାଥ ବହୁ ବିଚିତ୍ର ରୂପରେ ବିକଶିତ ହୋଇଉଠନ୍ତି । ଦୁଇ ବାହୁ ଉଦ୍ଦେଶ୍ୟରେ ଅଙ୍କିତ ଏକ ଅର୍ଦ୍ଧଚନ୍ଦ୍ର ସଦୃଶ ଉପରେ ଗୋଟିଏ ବିନ୍ଦୁ ଦେଇ ବା ଦୁଇଟି ତ୍ରିଭୁଜକୁ କୋଣ ସ୍ପର୍ଶ କରି ଗୋଟିଏ ଉପରେ ଅନ୍ୟଟି ରଖି ବା କେବଳ ଚକ୍ଷୁ ଉଦ୍ଦେଶ୍ୟରେ ଅଙ୍କିତ ଗୋଲାକାର ବସ୍ତୁକୁ ଭୂମି ଉପରେ ଅଙ୍କନ କରି ଜଗନ୍ନାଥଙ୍କ ରୂପର ଧାରଣା ଦିଆଯାଏ । ଯେଭଳି ଭାବରେ ଅଙ୍କିତ ହୋଇଥିଲେ ମଧ୍ୟ ଜଗନ୍ନାଥଙ୍କ

ରୂପ ଏତେ ଲୋକପ୍ରିୟ ଏବଂ ବ୍ୟାପକ ଯେ ତାହା ସହଜରେ ବାରି ହୋଇଯାଏ । ଏହା ବ୍ୟତୀତ କାନ୍ଥରେ ଜଗନ୍ନାଥ ଚିତା ବା ମୁକୁଟରେ ଚଉଁରୀ ମୂଳରେ ବିଭିନ୍ନ ରଙ୍ଗରେ ଜଗନ୍ନାଥ ଝୋଟି ଓଡ଼ିଶୀ ଲୋକକଳାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଜଗନ୍ନାଥଙ୍କ ରୂପସୃଷ୍ଟି କେଉଁଠାରୁ ହୋଇଥିଲା, କିଭଳି ରୂପରେ ତାହା ବିକାଶ ଲାଭ କରିଥିଲା ତାହା ସଠିକ୍ ଭାବେ କହିବା କଷ୍ଟସାଧ୍ୟ । ଜଗନ୍ନାଥ ଧର୍ମ ଓ ସଂସ୍କୃତି ବିଭିନ୍ନ ଧର୍ମ, ମତବାଦ ଏବଂ ସଂସ୍କୃତିର ସାର ନିର୍ଯ୍ୟାସକୁ ଉଦରସ୍ଥ କରି ନିଜର ସ୍ୱତନ୍ତ୍ର ଶୈଳୀରେ ଆକ୍ରମଣ ଦୃଷ୍ଟି ଆସିଛି । ନିଶ୍ଚିତ ଭାବରେ ବିଭିନ୍ନ ପ୍ରଭାବ ଏ ମଧ୍ୟରେ ମିଶ୍ରଣ ହୋଇ ଏକ ଅଭିନବ ରୂପ ସଂଯୋଜନା ସୃଷ୍ଟି କରିଛି । ଯେ ଯାହାହେଉ ଜଗନ୍ନାଥଙ୍କ ରୂପ ଏତେ କୌତୁହଳୋଦ୍ଦୀପକ ଯେ ତାହା ସବୁ ଯୁଗରେ ଶିଳ୍ପୀମାନଙ୍କୁ ଆକୃଷ୍ଟ କରିଛି । ଜଗନ୍ନାଥ ବିଭିନ୍ନ ବିବର୍ତ୍ତନ ମଧ୍ୟ ଦେଇ ବର୍ତ୍ତମାନ ଏକ ସ୍ଥିତାବସ୍ଥାରେ ପହଞ୍ଚି ସାରିଛନ୍ତି । ଯାହାର ପ୍ରତିଫଳନ ଓଡ଼ିଶୀ ଚିତ୍ର ଏବଂ ହସ୍ତଶିଳ୍ପ ମାନଙ୍କରେ ହୋଇସାରିଛି । ବର୍ତ୍ତମାନ ପରମ୍ପରା ନାମରେ କେବଳ ସେହି ରୂପ ସଂଯୋଜନା ଗୁଡ଼ିକର ପୁନରାବୃତ୍ତି ଚାଲିଛି । କଳାତ୍ମକ ମୂଲ୍ୟାୟନ କଲେ ଜଗନ୍ନାଥଙ୍କ ମୂଳ ରୂପକୁ ବିଶ୍ୱ କଳାସୃଷ୍ଟିର ଏକ ମହାନ୍ ଅବଦାନ ବୋଲି ଗ୍ରହଣ କରାଯାଇପାରେ । କିନ୍ତୁ ଓଡ଼ିଶୀ ଚିତ୍ରକଳାରେ ଜଗନ୍ନାଥଙ୍କୁ କିଛି ନୂତନ ରୂପରେ ଚିତ୍ରଣ କରିବା ସମ୍ଭବ ନୁହେଁ ।

ବଡ଼ ସୁଖର କଥା ସମସାମୟିକ କଳାଧାରାରେ ଜଗନ୍ନାଥଙ୍କୁ ରୂପକଳ୍ପ ରୂପେ ବ୍ୟବହାର କରି ବିଭିନ୍ନ ପରୀକ୍ଷା ନିରୀକ୍ଷା ଚାଲିଛି । ଜଗନ୍ନାଥ, ଆଧୁନିକ ଭାସ୍କର୍ଯ୍ୟ, ଜଳରଙ୍ଗର ଚିତ୍ର, ତୈଳଚିତ୍ର ଇତ୍ୟାଦିରେ ପ୍ରତିଫଳିତ ହେଲେଣି । ଯଦିଓ ଏସବୁ ଗୁଡ଼ିକରେ ଓଡ଼ିଶୀ ଚିତ୍ରକଳାର ଗନ୍ଧମାତ୍ର ନାହିଁ ତଥାପି ବିଶ୍ୱ ଚିତ୍ରଶୈଳୀ ପରିପ୍ରେକ୍ଷୀରେ ଆଲୋଚନା କଲେ ଏଗୁଡ଼ିକ କଳାର ଏକ ଏକ ସଫଳ ସୃଷ୍ଟି ବୋଲି ଜଣାପଡ଼ିବ । ଓଡ଼ିଶୀ ଚିତ୍ରକଳା ଯେତେ ପାରମ୍ପରିକ ହେଲେ ମଧ୍ୟ ତାହା ଏକ ପ୍ରାନ୍ତୀୟ ଶୈଳୀ । ଏଣୁ ସମସାମୟିକ କଳାର ଢଙ୍ଗ ସହିତ କଳାର ବିକାଶ କଥା ଚିନ୍ତାକଲେ ଆମର ଓଡ଼ିଶୀ ଶୈଳୀ ପରବର୍ତ୍ତୀ ପରିସ୍ଥିତି ସହିତ ଖାପଖୁଆଇଲା ଭଳି ଆଙ୍ଗିକ ପରିବର୍ତ୍ତନ କରିବା ଆବଶ୍ୟକ ମନେହୁଏ । ଏଣୁ ଜଗନ୍ନାଥ ବିଭିନ୍ନ ରୂପକଳ୍ପ ଭାବରେ ଆଜିର ଚିତ୍ରଧାରା ମଧ୍ୟରେ ପ୍ରକାଶ ପାଇବା ବିଧେୟ ।

# ଓଡ଼ିଶୀ ସଙ୍ଗୀତରେ ଶ୍ରୀଜଗନ୍ନାଥ

ଶ୍ରୀଜଗନ୍ନାଥ ଓଡ଼ିଶୀ ସଂସ୍କୃତିର ମୂଳାଧାର ହୋଇଥିବାରୁ ଓଡ଼ିଶାର ପ୍ରତ୍ୟେକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଶ୍ରୀଜଗନ୍ନାଥଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ଶ୍ରୀଜଗନ୍ନାଥ ପରଂବ୍ରହ୍ମ ସ୍ୱରୂପ ନାରାୟଣ, ସେ ଅନନ୍ତ, ଅବ୍ୟକ୍ତ ଓ ଅପୌରୁଷେୟ । ତଥାପି ବୈଦିକ ସାହିତ୍ୟରେ ତାଙ୍କର ଦାରୁମୟ ସ୍ୱରୂପ ସମ୍ବନ୍ଧରେ ବର୍ଣ୍ଣନା ରହିଛି । କେବଳ ସେତିକି ନୁହେଁ, ବହୁ ପୁରାଣ ଗ୍ରନ୍ଥରେ ଶ୍ରୀଜଗନ୍ନାଥ ଓ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବିଷୟରେ ଉଲ୍ଲେଖ ଅଛି । ଏହି କ୍ଷେତ୍ର ଭୂବୈକୁଣ୍ଠ, ମର୍ତ୍ତ୍ୟଧାମ, ନୀଳାଚଳ, ନୀଳଗିରି, ଶ୍ରୀକ୍ଷେତ୍ର ଓ ଶଙ୍ଖକ୍ଷେତ୍ର ନାମରେ ଅଭିହିତ । ତନ୍ମଧ୍ୟରେ ଶେଷୋକ୍ତ ନାମର ଗୁରୁତ୍ୱ ଅଧିକ, କାରଣ ତା'ର ଆକାର ଏକ ଶଙ୍ଖ ସଦୃଶ । ତେଣୁ ଅନ୍ୟ ନାମଗୁଡ଼ିକଠାରୁ ଏହି ନାମର ବୈଶିଷ୍ଟ୍ୟ ସଙ୍ଗୀତ ଦୃଷ୍ଟିରୁ ପ୍ରମାଣିତ ହୁଏ । ଶଙ୍ଖ ହେଉଛି ସଙ୍ଗୀତ ଶାସ୍ତ୍ର ଅନୁସାରେ ପୃଥିବୀର ଏକ ପ୍ରାଚୀନତମ ବାଦ୍ୟଯନ୍ତ୍ର । ସେହି ନାମ ସହିତ ଶ୍ରୀଜଗନ୍ନାଥଙ୍କ ବାସସ୍ଥାନର ସମ୍ପର୍କ ଥିବାରୁ ସଙ୍ଗୀତ ସହିତ ଶ୍ରୀଜଗନ୍ନାଥଙ୍କ ସମ୍ପର୍କ ସହଜରେ ଅନୁମେୟ । ଏହା ବ୍ୟତୀତ ଭଗବାନ ସ୍ୱୟଂ ଭିନ୍ନ ଭିନ୍ନ ଅବତାରରେ ବିଭିନ୍ନ ବାଦ୍ୟଯନ୍ତ୍ରର ମହତ୍ତ୍ୱ ବୃଦ୍ଧିରେ ସହାୟକ ହୋଇ କମ୍ବୁପାଣି, ବେଣୁଧାରୀ, ମୁରଲୀଧର ନାମରେ ପରିଚିତ ହୋଇଛି । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ପରମେଶ୍ୱର ବିଷ୍ଣୁଙ୍କର ସଙ୍ଗୀତ ଅତି ଆଦରଣୀୟ । ସେଥିପାଇଁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍‌ଭଗବଦ୍ ଗୀତାରେ ଭକ୍ତ ଅର୍ଜ୍ଜୁନଙ୍କୁ କହିଛନ୍ତି—

ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେ ନ ଚ ।
ମଦ୍‌ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ଭାରତ ॥

ଭଗବାନ ସ୍ୱୟଂ ସଙ୍ଗୀତମୟ, ସଚ୍ଚିଦାନନ୍ଦ । ଶାସ୍ତ୍ରମତେ ସଙ୍ଗୀତର ମୂଳତତ୍ତ୍ୱ ହେଉଛି ଆନନ୍ଦପ୍ରାପ୍ତି । ଏହି ଆନନ୍ଦ ସ୍ଥୂଳରୁ ସୂକ୍ଷ୍ମ ଓ କ୍ରମେ ସୂକ୍ଷ୍ମତମ ହୋଇ ଚିଦାନନ୍ଦ ଓ ଶେଷରେ ବ୍ରହ୍ମାନନ୍ଦରେ ଉପନୀତ ହୁଏ । ସଙ୍ଗୀତ ଦ୍ୱାରା ଚିତ୍ତବୃତ୍ତି ସ୍ଥିର ହୁଏ ଏବଂ ଏହା ଫଳରେ ଦେହସ୍ଥିତ ଷଡରସ ମଧ୍ୟରୁ ମଧୁର ରସଚକ୍ର ବା ମଧୁର ଗ୍ରନ୍ଥି ଦ୍ୱାର ସମ୍ପୂର୍ଣ୍ଣ ଉନ୍ମୁକ୍ତ ହୋଇ ବ୍ରହ୍ମଗ୍ରନ୍ଥିରେ ସଂଯୁକ୍ତ ହୁଏ ।

ଆନନ୍ଦର ଆଧାର ସଙ୍ଗୀତ ଏବଂ ସଙ୍ଗୀତର ବିଶେଷତ୍ୱ ହେଉଛି ମଧୁର ଧ୍ୱନି । ଶାସ୍ତ୍ରମତେ ଧ୍ୱନିର ମୂଳତତ୍ତ୍ୱ ନାଦ; ନାଦ ଆକାଶ ଗୁଣରେ ଅଧିକାରୀ । ଅନ୍ୟ ମତରେ

ଅଗ୍ନି ଓ ବାୟୁର ସଂଯୋଗ ହିଁ ନାଦ । ଏହା ମଧ୍ୟରେ ଈଶ୍ୱର ଓ ସଂସାରର ପଞ୍ଚଭୂତ ବିଦ୍ୟମାନ । ନାଦ ମଧ୍ୟ ପ୍ରତ୍ୟେକଙ୍କ ଗୁଣାଧାର କ୍ରିୟା ଦ୍ୱାରା ପ୍ରକାଶିତ । ଏଣୁ ନାଦର କୌଣସି ରୂପ ନାହିଁ କି ଗନ୍ଧ ନାହିଁ । ସେ ଅରୂପ ଓ ସର୍ବବ୍ୟାପୀ । ସେ ଅରୂପ, ଅନନ୍ତ, ଅବ୍ୟକ୍ତ ହେଲେ ମଧ୍ୟ ସମସ୍ତଙ୍କୁ ପ୍ରକାଶ କରିବାର ଶକ୍ତି ଓ ଗୁଣର ଅଧିକାରୀ । ତେଣୁ ଶାସ୍ତ୍ରରେ ନାଦକୁ ନାଦ ବ୍ରହ୍ମ ରୂପେ ସ୍ୱୀକାର କରାଯାଇଛି—

ଭୂମୌ ଭୂମିମୟଂ ଜଲେ ଜଲମୟଂ ବହ୍ନେଃ ସମଂ ବହ୍ନିନା
ବାୟୌ ବାୟୁମୟଂ ସୁଖେ ସୁଖମୟଂ ଭାନୋଃ ସମଂ ଭାନୁନା ।
ଚନ୍ଦ୍ରେ ଚନ୍ଦ୍ରମୟଂ ଗୁରୌ ଗୁରୁମୟଂ ବ୍ୟକ୍ତେର୍ଭିବନ୍ନାସ୍ୟୟା
ବନ୍ଦେ ନାଦମନନ୍ତଂ ହରିହରଂ ବ୍ରହ୍ମାଦସମ୍ଭାବିତମ୍ ।।

ସଙ୍ଗୀତ ହିଁ ପରମାର୍ଥ ଭଗବତ୍ ସାଧନାର ସହଜ ପନ୍ଥା ତଥା ସଙ୍ଗୀତ ସାଧନା ପରମାର୍ଥ ସାଧନା ବୋଲି ପ୍ରମାଣିତ ହୁଏ ।

ପୂଜା, ଅର୍ଚ୍ଚନା ଉଦ୍ଦେଶ୍ୟରେ ବ୍ୟବହୃତ ସମସ୍ତ ଯନ୍ତ୍ର ଓ ମନ୍ତ୍ର ଛନ୍ଦ ଓ ସ୍ୱରଦ୍ୱାରା ନିବଦ୍ଧ । ଯଜନ, ଯାଜନ, ପୂଜନ, ବନ୍ଦନ କ୍ରିୟା ମଧ୍ୟରେ ଭଜନ, କୀର୍ତ୍ତନ ମଧ୍ୟ ଏକ ପ୍ରଧାନ ଅଙ୍ଗ । ତେଣୁ ଏହି ପଥ ଅବଲମ୍ବନ କରି ବହୁ ଭକ୍ତ ଭଗବତ୍ ଭଜନରେ ଆତ୍ମନିୟୋଗ କରିଛନ୍ତି । ବିଶେଷତଃ ପରବର୍ତ୍ତୀ କାଳରେ ଓଡ଼ିଶାର ଭକ୍ତବୃନ୍ଦ ଏହି ଭଜନ ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କ ଠାରେ ଆତ୍ମ ନିବେଦନ କରିଛନ୍ତି । ବହୁ ପୂର୍ବକାଳରୁ ଭକ୍ତମାନେ ସ୍ୱରଚିତ ଭଜନମାନ ଗାନକରି ଜଗନ୍ନାଥଙ୍କଠାରେ କୃପାପ୍ରାର୍ଥୀ ହୋଇ-ଥିବାର ପ୍ରମାଣ ଓଡ଼ିଆ ଭଜନ ସାହିତ୍ୟରୁ ମିଳେ ।

"ଭୁଜ ତଳେ ମୋତେ ରଖ ମହାବାହୁ ବାହୁତଳେ ମୋତେ ରଖ ।
ବିପୁଳ ଭୁଜ ବିସ୍ତାରି ଦେଲେ ଘୁଞ୍ଚିବ କି କରି ପାରିବ ଦୁଃଖ ।।"

ଓଡ଼ିଶାର ଖୋରଧା ଗଜପତି ବୀରକେଶରୀ ଦେବ ମହାଦୁଃଖରେ ପଡ଼ିଥିବାବେଳେ ଶରଣପଞ୍ଜର ଜଗନ୍ନାଥଙ୍କୁ ସ୍ତୁତି କରି ତାଙ୍କ ବାହୁଛାୟାର ଆଶ୍ରୟ ଲୋଡ଼ିଛନ୍ତି ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବା ପୂଜାରେ ଗୀତ, ନୃତ୍ୟ ଓ ବାଦ୍ୟ ଏକ ଅବିଚ୍ଛେଦ୍ୟ ଅଙ୍ଗ ଭାବେ ବହୁକାଳରୁ ପ୍ରଚଳିତ ହୋଇଆସୁଛି । ଓଡ଼ିଶା ଇତିହାସର ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ବୈଷ୍ଣବ ମତବାଦୀ ଗଙ୍ଗ ରାଜାମାନଙ୍କ ବହୁ ପୂର୍ବରୁ ଓଡ଼ିଶାର ମନ୍ଦିରମାନଙ୍କରେ ନୃତ୍ୟ ଗୀତାଦିର ଆୟୋଜନଲାଗି ଶାସକଗଣ ବୃତ୍ତି ବ୍ୟବସ୍ଥା କରିଥିଲେ ଏବଂ ଦାକ୍ଷିଣାତ୍ୟ ରୀତି ଅନୁସାରେ ଗଙ୍ଗବଂଶର ପ୍ରଥମ ରାଜା

ଅନନ୍ତବର୍ମ ଚୋଡ଼ଗଙ୍ଗଦେବ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଦେବଦାସୀ ନୃତ୍ୟ ଓ ସଙ୍ଗୀତର ଆୟୋଜନ କରାଇଥିଲେ । ଯୁଗ ଯୁଗ ଧରି ଶ୍ରୀଜଗନ୍ନାଥ ଓ ଶ୍ରୀମନ୍ଦିର ସଙ୍ଗୀତ ଓ ନାଟ୍ୟକଳାର ପବିତ୍ର ରଙ୍ଗଭୂମିରୂପେ ସ୍ୱୀକୃତ ହୋଇଆସିଛି । ପରବର୍ତ୍ତୀ କାଳରେ ଉତ୍କଳୀୟ ପଣ୍ଡିତ ଅଗ୍ରଗଣ୍ୟ ଜୟଦେବଙ୍କ ପ୍ରଣୀତ 'ଗୀତଗୋବିନ୍ଦ'ର ଗାନ ଶ୍ରୀଜଗନ୍ନାଥଙ୍କ ନିତ୍ୟ ସେବାରେ ଅଙ୍ଗୀଭୂତ ହୋଇଥିଲା । କାନ୍ତକୋମଳ ପଦାବଳୀ ତଥା ବହୁ ଓଡ଼ିଶୀ ରାଗ ରାଗିଣୀରେ ପ୍ରଣୀତ ଏହି ଗୀତଗୋବିନ୍ଦର ସଙ୍ଗୀତ ଗାନରେ ଶ୍ରୀମନ୍ଦିର ଠାକୁରଙ୍କ ବଡ଼ସିଂହାରବେଶ ପରେ ମୁଖରିତ ହୋଇ ଉଠୁଥିଲା । ଶ୍ରୀଗୀତଗୋବିନ୍ଦର ପ୍ରସିଦ୍ଧି ସମଗ୍ର ଭାରତରେ ଘରୁଁ ଘରୁଁ ବ୍ୟାପିଗଲା, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ଉଦ୍ଦେଶ୍ୟରେ ଆସୁଥିବା ଭକ୍ତଜନମାନଙ୍କ ଦ୍ୱାରା ଅଚିରେ ଭାରତରେ ସର୍ବତ୍ର ପ୍ରଚାରିତ ହୋଇଗଲା । ଗୀତଗୋବିନ୍ଦ ରଚନା ପୂର୍ବରୁ ସଂସ୍କୃତ ସାହିତ୍ୟରେ ଏଭଳି ସୁଶ୍ରାବ୍ୟ ସଙ୍ଗୀତମୟ ଗୀତ ରଚନା ହୋଇ ନ ଥିଲା । ତେଣୁ ଭାରତୀୟ ଜନତା ଏହି ଗୀତ-କାବ୍ୟର ଅଲୌକିକ ଭାବବିନ୍ୟାସ, ମୌଳିକ ଛନ୍ଦ ଯୋଜନା, ସର୍ବୋପରି ଶ୍ରୁତିମଞ୍ଜୁଳ ପଦ ସଂଯୋଜନା, ତଥା ଭାବାନୁସାରେ ରାଗାନୁରାଗ ଗୀତମାଧୁରୀରେ ବିମୁଗ୍ଧ ହୋଇ ଟୀକା, ଟିପ୍ପଣୀ ଓ ଅନୁକୃତି ସହିତ ନିଜ ନିଜ ଅଞ୍ଚଳରେ ଏହାର ପ୍ରଚାର କରାଇଲେ ।

ଶ୍ରୀଗୀତଗୋବିନ୍ଦ ଶ୍ରୀମନ୍ଦିରର ଅନ୍ୟତମ ସେବା ଭାବେ ପ୍ରଚଳିତହେବା ପରେ ଗଜପତି ପୁରୁଷୋତ୍ତମଦେବଙ୍କ ସମୟରେ କବିଚନ୍ଦ୍ରରାୟ ଦିବାକର ମିଶ୍ରଙ୍କ ଦ୍ୱାରା ଅଭିନବ ଗୀତଗୋବିନ୍ଦ ରଚିତ ହୋଇଥିଲା । ଗୀତଗୋବିନ୍ଦ ତୁଳନାରେ ତାହା ସେତେ ଉନ୍ନତ ଧରଣର କାବ୍ୟ ହୋଇ ନ ଥିଲେ ମଧ୍ୟ କାବ୍ୟଟି ଗଜପତି ପୁରୁଷୋତ୍ତମଦେବଙ୍କ ନାମରେ ଭଣିତ ହୋଇଥିବାରୁ ଶ୍ରୀମନ୍ଦିରର ସେବାରେ ତାହାକୁ ଗାନ କରାଯିବାର ବ୍ୟବସ୍ଥା କରାଗଲା । ଖୁବ୍ ସମ୍ଭବତଃ ଏହି ବ୍ୟବସ୍ଥା ଫଳରେ ସେବକ ତଥା ଭକ୍ତ ଓ ଜନସାଧାରଣଙ୍କ ମଧ୍ୟରେ ଅସନ୍ତୋଷର ବହ୍ନି ଜଳି ଉଠିଥିବ, କିନ୍ତୁ ରାଜାଙ୍କ ବିରୋଧରେ ପ୍ରତିବାଦ ଜଣାଇବାକୁ କାହାର ସାହସ ନ ହେବା ସ୍ୱାଭାବିକ । ଏହି ବ୍ୟବସ୍ଥା କିଛି ଦିନ ଚାଲିଲା ସତ; କିନ୍ତୁ, ପ୍ରତାପରୁଦ୍ରଦେବଙ୍କ ସମୟରେ ଜନ ଅସନ୍ତୋଷକୁ ଲକ୍ଷ୍ୟ କରି ସେ ବ୍ୟବସ୍ଥା ପରିବର୍ତ୍ତେ ଗୀତଗୋବିନ୍ଦ ଗାନରେ ପୁନଃ ପ୍ରବର୍ତ୍ତନ କରାଗଲା । ଓଡ଼ିଶୀ ଢଙ୍ଗରେ ଗୀତଗୋବିନ୍ଦର ଗାନ ସେହି କାଳରୁ ଅଦ୍ୟାପି ଶ୍ରୀମନ୍ଦିରରେ ଚାଲିଆସୁଛି । ଏହି ଗାନ ପଦ୍ଧତିର ଅନୁସରଣରେ ଓଡ଼ିଶାରେ ଆଉ କେତେ ଖଣ୍ଡି ଗୀତକାବ୍ୟ ରଚିତ ହୋଇଥିଲା ଏବଂ ପ୍ରତ୍ୟେକ କାବ୍ୟରେ ଗୀତ-ଗୋବିନ୍ଦର ଆଙ୍ଗିକ ଓ ଆତ୍ମିକ ଛାୟା ସୁସ୍ପଷ୍ଟ ।

ସଂସ୍କୃତ ଗୀତକାବ୍ୟର ଏହି ଭାବଧାରା ଅନୁସରଣ କରି ପଞ୍ଚଦଶ ଶତାବ୍ଦୀଠାରୁ ଅଦ୍ୟାବଧି ଓଡ଼ିଶୀ ସଙ୍ଗୀତ କ୍ରମବିକାଶ ଲାଭକରିଛି । ଓଡ଼ିଆ ଭଜନଗୁଡ଼ିକ ମଧ୍ୟରେ

ମହାକବି ସାରଳାଦାସଙ୍କଠାରୁ କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ପର୍ଯ୍ୟନ୍ତ କବିମାନେ ଜଗନ୍ନାଥ ଭଜନର ଯେଉଁ ଧାରା ପ୍ରବାହିତ କରିଛନ୍ତି ତାହା ଅବିସ୍ମରଣୀୟ ।

କବି ସାରଳାଦାସ ସ୍ୱତନ୍ତ୍ରଭାବରେ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଭଜନ ରଚନା କରି ନ ଥିଲେ ହେଁ ତାଙ୍କ ମହାଭାରତର ବିଭିନ୍ନ ପର୍ବରେ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ଭାବରେ ବର୍ଣ୍ଣନା କରି ସ୍ୱକୀୟ ଭାବନାର ପ୍ରକୃଷ୍ଟ ପରିଚୟ ଦେଇଛନ୍ତି । ସେ ମହାଭାରତର କୃଷ୍ଣଙ୍କଠାରେ ଜଗନ୍ନାଥଙ୍କୁ ଆରୋପ କରି ନିଜେ ସେହି ଭାବରେ ଭକ୍ତ-ବତ୍ସଳର ହୋଇଥିବାର ଲକ୍ଷ୍ୟ କରାଯାଏ । ସେ ପ୍ରସଙ୍ଗକ୍ରମେ ନୀଳଗିରିର ଅବସ୍ଥିତି, ରତ୍ନ ସିଂହାସନ, କଳ୍ପବଟ ଓ ଚତୁର୍ଦ୍ଧା ମୂର୍ତ୍ତିର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଭକ୍ତ ଭାବରେ ଅତ୍ୟନ୍ତ ଆଗ୍ରହର ସହିତ ଲେଖିଛନ୍ତି—

ଗତି ମୁକ୍ତି ଦିଅ ମୋତେ ଶଙ୍ଖଚକ୍ର ହସ୍ତ ।
ଶୂଦ୍ର ମୁନି ମୁଁ ସାରଳା ଦାସ ଚରଣେ ନିତ୍ୟ ॥

ସେ ପ୍ରସଙ୍ଗତଃ ଶ୍ରୀଜଗନ୍ନାଥଙ୍କୁ ନୀଳଗିରିପତି, ଚକ୍ରପାଣି, ଦେବାଧିଦେବ, ଶରଣବତ୍ସଳ ଓ ଜନହିତକାରୀ ରୂପେ ବର୍ଣ୍ଣନାକରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ତାଙ୍କ ଭଜନ ଗାନକରିବା ନିମିତ୍ତ ନିର୍ଦ୍ଦେଶ ଦେଇ କହିଛନ୍ତି--

ଜୟ ଜୟ ଜଗନ୍ନାଥ ଜନହିତକାରୀ ।
ଜଗନ୍ନାଥ ଭଜି ଭବଜଳୁ ହୁଅ ପାରି ॥
ଜଗନ୍ନାଥ ଭଜନରେ କଷ୍ଟୁ ହୁଅ ପାର ।
ଜଗନ୍ନାଥ ଭଜନରେ ଦୁଃଖରୁ ନିସ୍ତର ॥
ଜଗନ୍ନାଥ ଭଜନରେ ପାପରୁ ମୁକୁତି ।
ଜଗନ୍ନାଥ ଭଜନରେ ଛୁଟଇ ଶୋକ ବ୍ୟାଧି ॥

ଓଡ଼ିଆ ସାହିତ୍ୟର ବ୍ୟାସକବି ସାରଳାଦାସ ମହାଭାରତର ଅଠରଟି ପର୍ବରେ ଜଗନ୍ନାଥ ମହାପ୍ରଭୁଙ୍କୁ ବିଭିନ୍ନ ଭାବରେ ଭକ୍ତିମୟ ଭଜନ ରଚନା କରିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ଓଡ଼ିଆ କାବ୍ୟମାନଙ୍କ ପାଇଁ ମାର୍ଗ ନିର୍ଦ୍ଦେଶ କରିଛନ୍ତି ।

ବ୍ୟାସକବି ସାରଳାଦାସଙ୍କ ପରେ ଉତ୍କଳ ବାଲ୍ମୀକି ବଳରାମ ଦାସ ଶ୍ରୀଜଗନ୍ନାଥଙ୍କ ଭକ୍ତିରେ ଆତ୍ମହରା ହୋଇ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ବହୁ ଭଜନ ରଚନା କରିବା ସଙ୍ଗେ ସଙ୍ଗେ ସ୍ୱରଚିତ ରାମାୟଣର ନାଁ 'ଜଗମୋହନ ରାମାୟଣ' ରଖିଛନ୍ତି । କଥିତ

ଅଛୁ, ଭକ୍ତର ମାନଭଞ୍ଜନ ପାଇଁ ଶ୍ରୀଜଗନ୍ନାଥ ପହଣ୍ଡି ପରେ ରଥ ଉପରେ ଦୃଢ଼ଭାବ ସହିତ ବସି ରହିଲେ । ଯେତେପ୍ରକାର ଚେଷ୍ଟା ବିଫଳ ହେଲା, ମାତ୍ର ନନ୍ଦିଘୋଷ ରଥ ଚଳେ ହେଲେ ଟଳିଲା ନାହିଁ । ପରଶେଷରେ ଭକ୍ତପ୍ରବର ବଳରାମ ଦାସଙ୍କ ମାନଭଞ୍ଜନ ହୁଅନ୍ତେ ରଥ ଗନ୍ତବ୍ୟ ପଥରେ ଗଡ଼ି ଚାଲିଲା । କବି ବଳରାମ ଦାସ ବାଲ୍ମୀକିଙ୍କ ରାମାୟଣର ଛାୟାରେ ସ୍ୱରଚିତ 'ଜଗମୋହନ ରାମାୟଣ' ଲେଖିଥିଲେ ହେଁ, ଭକ୍ତ ଭାବରେ ବିଭୋର ହୋଇ ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣରେ ପୁସ୍ତକଟିକୁ ଅର୍ପଣ କରିଛନ୍ତି ଏବଂ ମହାପ୍ରଭୁଙ୍କ ନିର୍ଦ୍ଦେଶମତେ ପୁସ୍ତକଟି ରଚନା କରିଛନ୍ତି ବୋଲି ରାମାୟଣରେ ସ୍ପଷ୍ଟ ଉଲ୍ଲେଖ ରହିଛି । ଓଡ଼ିଆ ସାହିତ୍ୟରେ କେବଳ ସାରଳା ଦାସ ଓ ବଳରାମ ଦାସ ନୁହନ୍ତି—ପଞ୍ଚସଖା ମଧ୍ୟରେ ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଓ ଜଗନ୍ନାଥ ନୀଳାଦ୍ରିବିହାରୀ ଜଗନ୍ନାଥଙ୍କ ଭଜନରେ ଓଡ଼ିଶୀ ସଂଗୀତକୁ ସମୃଦ୍ଧ କରିଛନ୍ତି ।

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଓଡ଼ିଆ କବିମାନଙ୍କ ମଧ୍ୟରେ ଯବନ କବି ସାଲବେଗଙ୍କ ଭଜନ ଜଗନ୍ନାଥ ଭକ୍ତି ଭାବନାରେ ଯେପରି ରସାଣିତ ଓଡ଼ିଶୀ ସଙ୍ଗୀତ ଦୃଷ୍ଟିରୁ ସେହିପରି ସମୃଦ୍ଧ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ସାଲବେଗ ଦୀର୍ଘଦିନ ନୀଳାଚଳରେ ଅବସ୍ଥାନ କରି ସ୍ନାନଯାତ୍ରା ଓ ଶ୍ରୀଗୁଣ୍ଡିଚା ବ୍ୟତୀତ ଅନ୍ୟ ସମୟରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ଦର୍ଶନ ପାଇନାହାନ୍ତି । ସେଥିପାଇଁ ତାଙ୍କ ଭକ୍ତହୃଦୟ ମହାପ୍ରଭୁଙ୍କ ଦର୍ଶନ ଲାଗି ବ୍ୟାକୁଳ ହୋଇଉଠିଛି । ସେ ସବୁବେଳେ ନିଜର ଧ୍ୟାନଜାତ କଥା ସ୍ମରଣକରି ମାନସ ଚକ୍ଷୁ ଶ୍ରୀଜଗନ୍ନାଥଙ୍କୁ ପ୍ରତ୍ୟକ୍ଷ କରିବା ସଙ୍ଗେ ସଙ୍ଗେ ଆର୍ତ୍ତି କଣ୍ଠରେ ଗାଇ ଉଠିଛନ୍ତି—

ଆହେ ନୀଳ ଶଇଳ ପ୍ରବଳ ମତ୍ତବାରଣ ।<br>
ମୋ ଆରତ ନଳିନୀ ବନକୁ କର ଦଳନ ।।

ଉକ୍ତ ଭଜନଟି ଭାବ, ଭାଷା ଓ ଶୈଳୀଦୃଷ୍ଟିରୁ ଭକ୍ତ ଜନତାର ଆଦରଣୀୟ ଭଜନ ରୂପେ ପ୍ରସିଦ୍ଧି ଲଭ କରିବା ସଙ୍ଗେସଙ୍ଗେ ସାଙ୍ଗୀତିକ ମୂଲ୍ୟାୟନ ଦୃଷ୍ଟିରୁ ଅତୁଳନୀୟ । ଏହି ଭଜନଟିର ପଦବିନ୍ୟାସ ଆର୍ତ୍ତି ଭକ୍ତର କରୁଣ ନିବେଦନକୁ ଯେପରି ଭାବେ ପରିସ୍ଫୁଟ କରୁଛି, ସଙ୍ଗୀତର ମୂର୍ଚ୍ଛନା ଦୃଷ୍ଟିରୁ ସଙ୍ଗୀତଜ୍ଞମାନଙ୍କୁ ଅନୁରୂପ ଆନନ୍ଦ ପ୍ରଦାନ କରୁଛି । ସାଲବେଗଙ୍କର ଭକ୍ତିଭାବନାକୁ ଆହୁରି ବ୍ୟାପକ କରିବା ଉଦ୍ଦେଶ୍ୟରେ କେତୋଟି ରଚନା ହସ୍ତଗତ ହୁଏ । କବି ସାଲବେଗ ଯବନ କୁଳରେ ଜାତହୋଇ ଶ୍ରୀମନ୍ଦିର ଭିତରକୁ ପ୍ରବେଶ ଅଧିକାର ପାଇ ନ ଥିବାରୁ ସବୁବେଳେ ମନ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ରୂପ ଧ୍ୟାନ କରୁଥିଲେ । ତାଙ୍କର ସେହି ଭାବନାକୁ ରୂପ ଦେଇ ସେ ଗାଇଛନ୍ତି—

ଆହେ ନୀଳଗିରି,
ତୁମ୍ଭ ଶ୍ରୀଭୁଜେ ଦକ୍ଷିଣା କେରି କେରି ।
ତୁଳସୀ ଚଉରା ପାଶେ ଜଗି
ବସି ଧ୍ୟାଉଛନ୍ତି କେତେ ଯୋଗୀ ।
ବ୍ୟାଘ୍ର ଚର୍ମ ପାରି ସ୍ତୁତି କରୁଛନ୍ତି
ଜପୁଛନ୍ତି ନାମ ସଂଖ୍ୟା କରି ॥

X X X

ଗରୁଡ଼ ପଛରେ ରହି ଦେଖ ।
କି ଶୋଭା ପାଉଛି ପଦ୍ମମୁଖ ।
ହୀରା ମାଳା ମୋତିମାଣିକ ଜଳୁଛି ହୃଦେ ଲମ୍ବି ଅଛି ବ୍ୟାଘ୍ରନଖ ।
ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଆଣି
କଲା ଶ୍ରୀମୁଖକୁ ବନ୍ଦାଣ କରନ୍ତି ସାଧୁସନ୍ଥ ବ୍ୟକ୍ତ ହରି ଧ୍ୱନି ॥
କହେ ସାଲବେଗ ହୀନ ଜାତି
ଶ୍ରୀ ରଙ୍ଗାଚରଣେ ରହୁ ମତି ।
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି ଦୟାକର ବାରେ ଲକ୍ଷ୍ମୀପତି ॥

କେବଳ ସେତିକି ନୁହେଁ, ଯବନ କବି ସାଲବେଗଙ୍କ ନିଷ୍ଠାର ମାହାତ୍ମ୍ୟ ଆଉରି ଏକ ଭଜନରେ ପ୍ରତିଫଳିତ ହୁଏ । କବି ଦୀର୍ଘଦିନ ପୁରୀରେ ଅବସ୍ଥାନ ପରେ ଶ୍ରୀବୃନ୍ଦାବନକୁ ଯାତ୍ରା କରିଥିଲେ, କିନ୍ତୁ ତାଙ୍କର ଉଦ୍ଦେଶ୍ୟ ଠିକ୍ ରଥଯାତ୍ରା ପୂର୍ବରୁ ଫେରିଆସିବେ । ଶାରୀରିକ ଅସୁସ୍ଥତାବଶତଃ ସେ ପଥ ମଧ୍ୟରେ ଅଟକି ଗଲେ । ରଥଯାତ୍ରା ପୂର୍ବରୁ ଦୂରପଥ ଅତିକ୍ରମ କରିବାର ତାଙ୍କର ସାମର୍ଥ୍ୟ ନ ଥିଲା, କିନ୍ତୁ ମନ ମଧ୍ୟରେ ଏକାଗ୍ରତାର ସହିତ ସେ ନନ୍ଦିଘୋଷ ଉପରେ ଜଗନ୍ନାଥଙ୍କୁ ଦେଖିବାର ଅଭିଳାଷ ରଖି ଗାଇଥିଲେ—

ଦୀନବନ୍ଧୁ ହେ ଗୋସାଇଁ ।
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ॥

X X X

ସାତଶ ପଞ୍ଚାଶ କୋଶ ଚାଲି ନ ପାରଇ ।
ମୋହର ଯିବାଯାଏ ନନ୍ଦିଘୋଷ ଥିବ ରହି ॥

ଭକ୍ତର ଆକୁଳ ନିବେଦନ ଭାବଗ୍ରାହୀଙ୍କ କର୍ଣ୍ଣଗୋଚର ହେଲା । ବଡ଼ ଠାକୁର ଓ ସୁଭଦ୍ରା ଦେବୀଙ୍କ ରଥ ବଳଗଣ୍ଡି ଅତିକ୍ରମ କରି ଚାଲିଗଲା, କିନ୍ତୁ କାଳିଆ ଠାକୁରଙ୍କ ରଥ ଶରଧା ବାଲିରୁ ଟଳେ ହେଲେ ଘୁଞ୍ଚିଲା ନାହିଁ । କଥିତ ଅଛି ଯେ, ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଜଗନ୍ନାଥଙ୍କ ନନ୍ଦୀଘୋଷ ରଥ ଶରଧା ବାଲିରେ ପଡ଼ି ରହିଥିଲା । କେଉଁ ସୁଦୂର ପଥ ଅତିକ୍ରମ କରି ଭକ୍ତ ସାଲବେଗ ଆସି ଦର୍ଶନ କରନ୍ତେ ପୁଣି ନନ୍ଦିଘୋଷ ଚାଲିଥିଲା । ଏବେ ବି ସେହି ଶରଧା ବାଲିରେ ସାଲବେଗଙ୍କ ସମାଧି ଅଛି । ଓଡ଼ିଆ ଭକ୍ତଜନତା ନନ୍ଦିଘୋଷ ରଥ ଆଗରେ ସାଲବେଗଙ୍କର ସେହି ଭାବମୟ ଓ ସଙ୍ଗୀତମୟ ପଦାବଳୀ ଅଦ୍ୟାପି ଗାନ କରୁଥିବାର ଦେଖାଯାଏ । ସାଲବେଗଙ୍କ ଭଜନଗୁଡ଼ିକରେ କେବଳ ସାବଲୀଳ ଶବ୍ଦ ଯୋଜନାରେ ଗୁରୁତ୍ୱ ନାହିଁ, ଗାନ ପଦ୍ଧତି ଉପରେ ବିଶେଷ ବୈଶିଷ୍ଟ୍ୟ ରହିଛି । ଓଡ଼ିଶୀ ଶୈଳୀରେ ସାଲବେଗଙ୍କ ଭଜନଗୁଡ଼ିକ ଗାନକଲେ ତାହା ଯେକୌଣସି ଭକ୍ତର ହୃଦୟକୁ ଭାବବିହ୍ୱଳ କରିପାରେ, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶୀ ଶୈଳୀରେ ଜଗନ୍ନାଥଙ୍କ ଭଜନ ରଚନା କରିବାରେ କବି ବନମାଳୀଙ୍କ ଅପୂର୍ବ କୃତିତ୍ୱ ପରିଲକ୍ଷିତ ହୁଏ । ଅଷ୍ଟାଦଶ ଶତାବ୍ଦୀର ଶ୍ରୀକ୍ଷେତ୍ରବାସୀ ବନମାଳୀ ମହାପ୍ରଭୁଙ୍କର 'ଶ୍ରୀମୁଖ ଦର୍ଶନ ମାଗୁଣି' ସୂଚକ ଭଜନଟି ସ୍ୱର ଓ ଶବ୍ଦ ସଂଯୋଜନା ଦୃଷ୍ଟିରୁ ଅତ୍ୟନ୍ତ ଉଚ୍ଚକୋଟୀର ବୋଲି ମନେହୁଏ । ଭକ୍ତକବି ବନମାଳୀ ଉଚ୍ଛ୍ୱସିତ କଣ୍ଠରେ ଶ୍ରୀମୁଖ ଦର୍ଶନର ଅଭିଳାଷ ପ୍ରକାଶକରି ତା ତୁଳନାରେ ଇନ୍ଦ୍ର, ଚନ୍ଦ୍ର, ରୁଦ୍ର, ବ୍ରହ୍ମାଦି ଦେବଦେବୀଙ୍କ ଦର୍ଶନକୁ ତୁଚ୍ଛ ମଣନ କରିଛନ୍ତି—

ମହାବାହୁ ଏହି କଥାରେ ମୋ ମନ ।
ନିତି ଦେଖୁଥିବି କାଳାଦ୍ରି ମଣ୍ଡପେ କନ୍ଦର୍ପସୁନ୍ଦର ବଦନ ।।
ଅନ୍ତକାଳେ ଜଳପିଇ ପଡ଼ିଥିବି ବକଳ କରି ବସନ ।
ଶଚୀପତି ପଦ ତୁଚ୍ଛ ମଣୁଥିବି ଥିଲେ ତୁମ୍ଭ ସନ୍ନିଧାନ ।।

× × ×

ଅବକାଶମାନଙ୍କରେ ମୋ ଲାଳସା ହୋଇଥିବ ଅହର୍ନିଶ ।
ଚେତେବେଳେ ଡୋଳେ ହେଲେ ନ ଦେଖିବି ବ୍ରହ୍ମା, ରୁଦ୍ର, ଧନଈଶ ।।
ଘନ ବଦନ ଚନ୍ଦ୍ରକୁ ଗ୍ରହି ମୁହିଁ ତାପତ୍ରୟକୁ ନାଶିବି ।
ବୋଲେ ବନମାଳୀ ଜନ୍ତୁପତି ମାଖ ଲୋକଙ୍କୁ ଦେଖି ହସିବି ।।

କବି ବନମାଳୀଙ୍କ ପରି କବି ନିତ୍ୟାନନ୍ଦ ଦାସଙ୍କ ଶ୍ରୀଜଗନ୍ନାଥ ଭଜନ ଅତ୍ୟନ୍ତ ହୃଦୟସ୍ପର୍ଶୀ । ସେ ପ୍ରଭୁଙ୍କଠାରେ ନିବେଦନ କରି ଦୁଃଖ ଜଣାଇବା ସଙ୍ଗେ ସଙ୍ଗେ ପତିତଜନଙ୍କୁ ଉଦ୍ଧାର କରିବା ପ୍ରଭୁଙ୍କର କର୍ତ୍ତବ୍ୟ ବୋଲି ଦାବୀ ଉପସ୍ଥାପିତ କରିଛନ୍ତି—

ପତିତ ଜନଙ୍କୁ ଉଦ୍ଧାରିବା ପାଇଁ ଉଡ଼ାଉ ଅଛ ପତାକା ।
ବାହୁ ଟେକି ତୁମ୍ଭେ ବସି ରହୁଁ ରହୁଁ ବିପତ୍ତି କରିଛ ଡକା
ମହାପ୍ରଭୁ ହେ ।
ଦାସ ଗଲେ ତୁମ୍ଭେ ପରେ କି କରିବ କରୁଣା ଭଣ୍ଡାର ଫେଇ ।
ଦୁଃଖୀ ଗଲେ ନାଶ ଅର୍ଜିବ କି ଯଶ ପଚ୍ଛ ଚତୁର୍ବର୍ଗ ଦେଇ ।।
ଘୋର ନବଘନ ଆଉ ଯେବେ ଧାନ ଚାତକ ଜୀବନ ହରାଇବ ।
ସମୁଦ୍ରେ ବରଷି ଘୋର ଜଳରାଶି ଘୃତକବନ୍ଧୁ କି ବୋଲାଇବ ।।

× × ×

ଦୀନବନ୍ଧୁ ବୋଲି ନାମ ଯେ ବହୁଛ ଏହା ନ ଚେତ କି ଖବରଗ୍ରାହୀ ।
ଏ ନାମ ଏବେ ଏଣିକି ନ ବହିବ ଚାହଁପରୁ ନେତ ଥୁଅ ନେଇ ।।

× × ×

ସୁଦର୍ଶନ ନାମେ ଚକ୍ର ବହୁଥିବ ଟେକି ବାହୁରେ ଦକ୍ଷିଣ କରେ ।
କହେ ନିତ୍ୟାନନ୍ଦ ଅପରାଧୀ ମନ୍ଦ ମୋହର ଶରଣ ତାଙ୍କଠାରେ ।।

କେବଳ ସେତିକି ନୁହେଁ, ନିତ୍ୟାନନ୍ଦଙ୍କ ପରି କବି ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୁଙ୍କର ପତିତପାବନ ବାନାକୁ ସ୍ମରଣକରି ସମସ୍ତ ଆଶାଭରସା ତ୍ୟାଗପୂର୍ବକ ଚତୁର୍ବର୍ଗଦାମୀ ଜନାର୍ଦ୍ଦନ ଜଗନ୍ନାଥଙ୍କ ଠାରେ ଶରଣ ପଶି; ତାଙ୍କୁ ଉଦ୍ଧାର ନ କଲେ ନିଷ୍କଳଙ୍କ କଳାନିଧି ଅଙ୍କରେ କଳଙ୍କ ଲାଗିଯିବାର ସତର୍କବାଣୀ ଶୁଣାଇଛନ୍ତି—

ଆହେ ଗିରିଧର, ଘୋଷଣା ବାଜୁଛି ତିନିପୁର ।
ଉଡ଼ୁଛି କେତନ ପତିତପାବନ
ଶରଣ ସୋଦର ବିଶ୍ୱମ୍ଭର ।
ଚରାଚର ଚରଣସ୍ପର୍ଶିତ ଚଞ୍ଚଳାପତି
ଚତୁର୍ବର୍ଗଦାମୀ ତୁମ୍ଭେ ।
ଛାଡ଼ି ସବୁ ଆଶା କରିଛି ଭରସା
ଏହି ବୁଝିମୋନ୍ ଧରି ଦମ୍ଭେ ।
ଆହେ ଜନାର୍ଦ୍ଦନ,
ଝଟତି ନ ହେଲେ ସୁପ୍ରସନ୍ନ
ନିର୍ମଳ ପରି କଳାନିଧି ଅଙ୍କରେ କଳଙ୍କ ଲାଗିଯିବଟି ଜାଣ ।।

× × ×

ଜନ୍ମର ପୂର୍ବରୁ ଲୁଚୁଥିବ ଅଣି
ଅନ୍ଧକୁ ସ୍ୱପ୍ନରେ ଚକ୍ଷୁ ଦେଲ ।'
ସେ ମହିମାମାନ ଏବେ କେଉଁଣେ ଗଲା
ଶ୍ରୀହସ୍ତୁ ଚକ୍ର କି ହଜାଇଲ ।
ଆହେ ହୃଷୀକେଶ,
କ୍ଷମାକର ଦୀନଜନ ଦୋଷ
ଅଭୟ ଚରଣେ ଶରଣ ପଶୁଛି ଅଭିମନ୍ୟୁର ପୂରାଅ ଆଶ ॥

ଭକ୍ତକବି ଅଭିମନ୍ୟୁଙ୍କ ପରି ସଙ୍ଗୀତ ପରିପୂର୍ଣ୍ଣ ହୃଦୟସ୍ପର୍ଶୀ ଭଜନ ରଚନାରେ ପାରଳାଖେମୁଣ୍ଡି ନିବାସୀ ଗୋପାଳକୃଷ୍ଣ ପଟ୍ଟନାୟକ ଅପୂର୍ବ ଦକ୍ଷତା ଦେଖାଇଛନ୍ତି । ତାଙ୍କ ଭଜନଗୁଡ଼ିକରେ ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଠାରେ ଶରଣାପନ୍ନ ହେବା ସଙ୍ଗେ ସଙ୍ଗେ ନିତ୍ୟଧାମର ଆଶାପୂର୍ଣ୍ଣ ମାର୍ଗ ସଦାସର୍ବଦା ଭକ୍ତଜନଙ୍କ ଲାଗି ମୁକ୍ତ ଥିବାର ଧାରଣା ପୋଷଣ କରିଛନ୍ତି । ସେ ଶ୍ରୀଜଗନ୍ନାଥଙ୍କ ଅପାର କରୁଣାର ମହତ୍ତ୍ୱ ବୁଝାଇବାକୁ ଯାଇ ଭକ୍ତଜନଙ୍କୁ ସମ୍ବୋଧନ କରି ଗାଇଛନ୍ତି—

"ଜଗବନ୍ଧୁ ଦୟାକୁ ଆଉଁ ମନ କାହିଁ ପାଉଁ ଭକ୍ତରେ !
ରହି ଉଦ୍ଧରିବେ ଏ ଜଞ୍ଜାଳରେ !
ନିରୁପାଧି କୃପାକର, ମହିମାବଧି ନୀଳାଚଳ ସୁଧାକର !
ନିଖିଳ ପ୍ରାଣୀ ହିତକାରୀ ଚୋ ଚୁର
କଦନ କି ତାଙ୍କୁ ଘୋର !

× × ×

ଦାମୋଦର ଗଲେ ନ ମାନୁ ଯା ଦେଲେ
ଶୁଣି ତ ଥିବୁ ପୁରାଣେ,
କୃଥା ହୋଇବ କି ଜଣାଇବାର ତୁ
ପ୍ରଣାମ କରି ଚରଣେ ।

× × ×

ଯା ଗୁଣାର୍ଣ୍ଣବରୁ ବିନ୍ଦୁ ଏ ବର୍ଣ୍ଣିଲେ
ଶେଷରେ ନ ହେବ ଶେଷ,
କି କହିବ ତାହା ଗୋପାଳକୃଷ୍ଣ ତ
ନୁହଇ କୀଟ ସଦୃଶ ।",

ଚନ୍ଦନ ହଜୁରୀଙ୍କ ଭଜନଗୁଡ଼ିକ ଯମକ ଅନୁପ୍ରାସପୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ ସାଙ୍ଗୀତିକ ମହତ୍ତ୍ୱ ଦୃଷ୍ଟିରୁ ଅତ୍ୟନ୍ତ ଉପାଦେୟ । ସେ ଜଣେ ଜାତିସ୍ମର ହୋଇ ଥିଲେ ହେଁ, ମୁଖ୍ୟତଃ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଭକ୍ତ ମଧ୍ୟରେ ଅନ୍ୟତମ । ପ୍ରଥମତଃ ମହାପ୍ରଭୁଙ୍କ ସେବା ପୂଜା କରିବା ତାଙ୍କର ପାରମ୍ପରିକ କାର୍ଯ୍ୟ । ଦ୍ୱିତୀୟତଃ ତାଙ୍କର କବିହୃଦୟ ଭକ୍ତିଭାବନାରେ ଉଦ୍‌ବେଳିତ । ତାଙ୍କ ଭଜନର ଛନ୍ଦେ ଛନ୍ଦେ ଫୁଟି ଉଠିଛି ଆର୍ତ୍ତି ଭକ୍ତର କରୁଣ ନିବେଦନ । ତେଣୁ ସେ ଶେଷ ଜୀବନରେ ଜଗନ୍ନାଥଙ୍କ ଶରଣାପନ୍ନ ହୋଇ ଉଚ୍ଛ୍ୱସିତ କଣ୍ଠରେ ରଚନାଚାତୁରୀ ପୂର୍ଣ୍ଣ କମନୀୟ ଭଜନଟିଏ ଗାଇଛନ୍ତି—

ଚକାନୟନକୁ ପଢିତ କେନ୍ଦ୍ର !
ଛକାଇ ଖର ନିଃଶ୍ୱାସ ପକାଇ ॥
ଡକା ପକାଇ ଗରୁଡ଼ ପଚ୍ଛରେ ବଢାଉ ମୋ ଆର୍ତ୍ତି ଶୁଣ ସତ୍ୱରେ
ଢକା ବାଜୁଛି ମହିମା ହେ,
ଠକାଇ କର କର୍ଣ୍ଣେ ଗିର ନ ଶୁଣ କାହିଁକି ବଚସକର୍ମା ହେ ॥

× × ×

ଧଣ୍ଡାମାଳବୃନ୍ଦା ଦୁର୍ଦ୍ଦଶା ରହୁ, ଚଣ୍ଡାଳ ଗ୍ରାସୁଅଛି ରହୁଁ ରହୁଁ ।
ଭଣ୍ଡାରେ ଖଣ୍ଡା ନାହିଁକି ମଣିମା, ଗଣ୍ଡାକର ଦଶୁ ନାହିଁ ମହିମା,
ହଣ୍ଡା ମୋ ଯାଉଛି ଫାଟି ହେ,
ଅଣ୍ଡାକର କୃପା ଜଳ ବୃଷ୍ଟି କର ମୋ ଚିତ୍ତ ଚାତକ ପାଟି ହେ ॥
ମନ୍ଦରଧର ନୀଳଗିରିବାସୀ, କନ୍ଦରବାସୀ ପ୍ରାୟେ ଅଛ ବସି,
ପନ୍ଦରନେତ୍ର ଧାତା ପୁରନ୍ଦର ବନ୍ଦନ କରନ୍ତି ଯେଉଁ ପୟର,
ଛନ୍ଦ ଛାଡ଼ ଦେବରାଜେ ହେ,
ନନ୍ଦ ନନ୍ଦନ ଶ୍ରୀଚରଣାର ବନ୍ଦେ ଚନ୍ଦନ ହଜୁରୀ ଭଜେ ହେ ॥

ନୟାଗଡ଼ ଦରବାରର ରାଜକବି ଯଦୁମଣି ମହାପାତ୍ର ନିଜର ରମ୍ୟ ରଚନା ଲାଗି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସୁପରିଚିତ । ତାଙ୍କ କବିତାର ପ୍ରତ୍ୟେକ ପଦଯୋଜନା ଆକ୍ଷେପୋକ୍ତିମୂଳକ ତଥା କୌତୁହଳୋଦ୍ଦୀପକ । ସେ ରାଜଦରବାରରେ କବିତା ପାଠ କରିବା ସମୟରେ ଯେପରି ହାସ୍ୟ ରସାବହ ସାଙ୍ଗୀତିକ ଛଟାର ପରିପ୍ରକାଶ କରନ୍ତି, ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଭଜନ ରଚନା କରିବାବେଳେ ମଧ୍ୟ ଅନୁରୂପ ଶୈଳୀକୁ ପରିହାର କରିନାହାନ୍ତି । ସେ ଜଗନ୍ନାଥଙ୍କ ଠାରେ ଅଳି କରିବା ସଙ୍ଗେ ସଙ୍ଗେ ଭକ୍ତଙ୍କ ପାଇଁ ଶ୍ରୀଜଗନ୍ନାଥ ଯେ ସ୍ୱତନ୍ତ୍ର ଅନୁକମ୍ପା ଦେଖାଉଛନ୍ତି ସେଥିପାଇଁ ସେ ଆକ୍ଷେପକରି ଗାଇଛନ୍ତି—

ଓଜଶୀଳ ଶୁକ ଗଜ          ଜୀବନ ହରଣେ ତେଜ
ଅର୍ପଣ କଲ କୃପଣ ନୋହି ।
ଗମ୍ଭୀର ଜଳେ କୁମ୍ଭୀର          ଗଲ ଗ୍ରହଣେ କୁମ୍ଭୀର
ଜୀବ ରକ୍ଷା କଲ କଷା ବନ୍ଧି ।
ହେ ନୀଳାଚଳ-କଳାକର,
ସତ କି ଏ ମିଛ ?
ଦେଲ ଯାହା ନେଲ ତାହା          ଏଥିକୁ କିମ୍ପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ।
ଦଳି ବଳିଷ୍ଠ ବଳିକି          ଅକଳିତ ବିଭୂତିକି
ଦଳିତ କରରେ କରିଥିଲ ।
ନ ମାନି ଭରି ରମାକୁ          ଅକିଞ୍ଚନ ସୁଦାମାକୁ
ବିପୁଳ ସମ୍ପଦେ ମଣ୍ଡି ଦେଲ ।।
ହେ ନୀଳାଚଳ-କଳାକର,
ସତ କି ଏ ମିଛ ?

× × ×

ପାତକୀ ମୁକୁଟ ଶ୍ରେଣୀ          ଶିରୋମଣି ଯଦୁମଣି
ମନ ଛଳେ ନେଇ ନ ପାରିବ ।
ଏହା ଛଡ଼ାଇଣେ ଯେବେ          ଚିତ୍ତ ଦେଇ ପାର ଲବେ
ତେବେ ସିନା ଦାତା ବୋଲାଇବ ।
ହେ ନୀଳାଚଳ-କଳାକର,
ସତ କି ଏ ମିଛ ?

ଊନବିଂଶ ଶତାବ୍ଦୀର ପ୍ରସିଦ୍ଧ ଭକ୍ତକବି ଗୌରଚରଣ ଅଧିକାଂଶ ଓଡ଼ିଶୀ ସଙ୍ଗୀତ କ୍ଷେତ୍ରରେ ଜଣେ ସ୍ୱନାମଧନ୍ୟ ଗୀତିକାର । ତାଙ୍କ ଲେଖନୀରୁ ଶତାଧିକ ଭଜନ, ଜଣାଣ ନିଃସୃତ ହୋଇଥିଲେ ହେଁ ଶ୍ରୀଜଗନ୍ନାଥଙ୍କ ଭଜନରେ ସେ ଯେଉଁ ଗୀତିମାଧୁର୍ଯ୍ୟ ପରିବେଷଣ କରିଛନ୍ତି ଓଡ଼ିଶାର ସଙ୍ଗୀତ କ୍ଷେତ୍ରରେ ତାହାର ପଟାନ୍ତର ନାହିଁ । କେବଳ ଗୀତାତ୍ମକ ମୂଲ୍ୟାୟନ ଦୃଷ୍ଟିରୁ ନୁହେଁ ଭଜନ ଗୁଡ଼ିକର ଭାଷା, ଭାବ ଓ ବ୍ୟଙ୍ଗ ସାଧାରଣ ଜନତାର କାହିଁକି ଯେକୌଣସି ବିଦଗ୍ଧ ପାଠକର ହୃଦୟକୁ ଆପ୍ଲୁତ କରିଥାଏ । କବି ଗୌରଚରଣ ଶ୍ରୀଗୁଣ୍ଡିଚାମନ୍ଦିରର ଅବସ୍ଥାନ କାଳୀନ ଜଗନ୍ନାଥଙ୍କୁ ଆକ୍ଷେପକରି ଯେଉଁ ଭଜନ ରଚନା କରିଛନ୍ତି ତାହା ତାଙ୍କ କବିପ୍ରତିଭାର ସ୍ୱତଃ ପରିଚୟ ଦେଇଥାଏ—

କଳାସିଂହ କାହିଁକି ଅଇଲୁଟିର ଶ୍ରୀନୀଳକନ୍ଦର ଗ୍ରନ୍ଥ ।
ଭାଇ ଭଗ୍ନୀ ସଙ୍ଗେ ଯେନ କର ରଙ୍ଗେ ରହିଛୁ ଘୁଣ୍ଡି ଗୃହବାଡ଼ ।।

× × ×

ଅରଗଳି ଗଳି ପିବାକୁ ତେଣିକି ବ୍ରାହ୍ମଣଙ୍କୁ ଆଜ୍ଞା ନାହିଁ ।
ଏବେ ନାନା ଜାତି ମୁଦ୍ରିତ ଆପଣ ଲଦୁଛନ୍ତି ଖନ୍ଦ ବାହି ।।

× × ×

ବଡ଼ ଦେଉଳରେ ବଡ଼ ଧଣ୍ଟାମାଳ ବଡ ରଙ୍ଗ ଧଡ଼ି ପିନ୍ଧା ।
ଏବେ ଭାଇଭଗ୍ନୀ ତିନିଜଣ ଯାକ ଖମ୍ବରେ ହୋଇଛ ବନ୍ଧା ।।

× × ×

ଘର ଘରଣୀକି ନ'ଦ୍ଦନକୁ ଯଗ୍ କରିଆସିଅଛୁ କଣ୍ଠ ।
ସେ କଥା ପାଶୋରି ମୂଲଅଛୁ ଗାଳି ତୁ ବଡ଼ ବିଷମ ଖଣ୍ଡ ।।

× × ×

ବଡ଼ ଲୋକ ପୁଅ ବୋଲି ସିନା ତୋତେ କେହି ନ ବୋଲନ୍ତି କିଛି ।
ଭଉଣୀକି ଯେନ ଦାଣ୍ଡେ ବୁଲିବାର କାହା!ଘରେ ଦେଖା ଅଛି ।।
ଗୌରଚରଣ ବୋଲେ ପ୍ରଭୁପଣ ଜଣାଗଲା ଏବେ ଆସ ।
ପତିତପାବନ ପତାକା ଉଡ଼ାଇ ରତ୍ନସିଂହାସନେ ବସ ।।

ଓଡ଼ିଶୀ ସଙ୍ଗୀତ ରଚନା କ୍ଷେତ୍ରରେ କବିସୂର୍ଯ୍ୟ ବଳଦେବ ରଥଙ୍କ ଅବଦାନ ଅବିସ୍ମରଣୀୟ । ରାଧାକୃଷ୍ଣଙ୍କ ଲୀଳାଗାନରେ ତାଙ୍କର ସମସ୍ତ ରଚନା ପରିପୁଷ୍ଟ ହୋଇଥିଲେ ହେଁ ସେ ଶ୍ରୀଜଗନ୍ନାଥଙ୍କ ଭଜନରେ ଅଲୌକିକ ପ୍ରତିଭାର ଚମତ୍କାରିତା ପ୍ରଦର୍ଶନ କରିଛନ୍ତି । କବିସୂର୍ଯ୍ୟଙ୍କ ରଚନାଶୈଳୀ ଅନୁପ୍ରାସାଦି ଅଳଙ୍କାର ଯୋଗୁ ଅତୀବ କମନୀୟ ତଥା ସୁଶ୍ରାବ୍ୟ । ସେ ଜଗନ୍ନାଥଙ୍କ ପ୍ରତି ଛନ୍ଦୋକ୍ତି ପ୍ରକାଶକରି ତାଙ୍କର ଅନୁଗ୍ରହ ପ୍ରାର୍ଥନା କରିବାରେ ଅପୂର୍ବ ଭକ୍ତିଭାବର ପରାକାଷ୍ଠା ଦେଖାଇଛନ୍ତି—

କ୍ଷୀରସମୁଦ୍ର ସିନ୍ଧୁ ଜେମା ପ୍ରାଣବନ୍ଧୁ ତୁମେ ତ ଜଗତପତି ।
ଟେକ ସମଦୃଷ୍ଟି ପତାକାକୁ ପୁଣି ଏ କି ପକ୍ଷପାତ ରୀତି ।।
ମହାପ୍ରଭୁ ହେ,
କେ କି ଭଲ ମୁଁ ନ କଲି
କେ କି ଦେଲା ଅବା ମୁଁ ଅବା ନ ଦେବା ଯେନ ଏତେ ପର ହେଲି ହେ ।।

× × ×

କବିରବିସ୍ୱଗୁରୁ ଯୋଡ଼ିକର ଯୁଗକୁ ଗ୍ରୀମୂରେ କହେ ।
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଅଯୁଷ୍ଟ ନୁହେଁ ॥
ହେ ମହାପ୍ରଭୁ,
ସବୁ ତୁମ୍ଭ ଇଚ୍ଛା ବିନା,
ରଖ ବା ନ ରଖ ମୋହର ଗତି ତ ପତିତପାବନ ବାନା ହେ ॥

କବିସୂର୍ଯ୍ୟ ବଳଦେବ ରଥଙ୍କ 'ବାଧିଲ ଜାଣି କ୍ଷମା କର ନୋହିଲେ ରମା ରମଣ ଦଣ୍ଡେ ହାଥ ଟାଳ' ଭଜନଟି ଭକ୍ତଜନତା ପକ୍ଷରେ ଯେପରି ଆଦରଣୀୟ ହୋଇପାରିଛି ଓଡ଼ିଶୀ ସଙ୍ଗୀତ କ୍ଷେତ୍ରରେ ଅନୁରୂପ ଲକ୍ଷଣୀୟ ହୋଇଛି । କବି ଶ୍ରୀଜଗନ୍ନାଥଙ୍କୁ ଏକ କାଳସର୍ପ ରୂପେ ବର୍ଣ୍ଣନାକରି ପ୍ରତ୍ୟକ୍ଷରେ ଭର୍ତ୍ସନା କରିବା ଛଳରେ ବଳିଅର ଭୁଜଙ୍କ ଅନୁଗ୍ରହ ପ୍ରାର୍ଥନାକରି ଗାଇଛନ୍ତି—

କହିଲ କବିସୂର୍ଯ୍ୟ କାଳ ନୁହ ଅଧୈର୍ଯ୍ୟ
ଏଣିକି ମହତ ନ ଯାଉ ।
ମୁଁ ତୁମ୍ଭ ପରିଗ୍ରହ ଜାଣିଲେ କି ବିଗ୍ରହ
ଇତରେ ନ ଜାଣନ୍ତୁ ଆଉ ॥
ହେ କୃପାନିଧି,
ଯେତେବେଳେ ମୋ ଅନ୍ତ ହେବ,
ଏତିକି ମାତ୍ର ମୋତେ ଦେବ,
ପରେ ତିରିଟଦ୍ୱାର ସୀମାରୁ ପରିହାର କରାଇ
ଯତ୍ନ ତହିଁ ନେବ ହେ ॥

ଓଡ଼ିଶୀ ସଙ୍ଗୀତ ରଚନା କ୍ଷେତ୍ରରେ ଶ୍ରୀଜଗନ୍ନାଥ ଭଜନାବଳୀର ଉପାଦେୟତା ଅନସ୍ୱୀକାର୍ଯ୍ୟ । ଓଡ଼ିଶାର ବହୁ କୃତୀସନ୍ତାନ ସାଙ୍ଗୀତିକ ଶୈଳୀଦୃଷ୍ଟିରୁ ଅସଂଖ୍ୟ ଭଜନ ରଚନା କରିଛନ୍ତି । ଏଠାରେ ସମସ୍ତ ଭଜନର ଆଲୋଚନା ସମ୍ଭବ ନୁହେଁ । କେବଳ ଦିଗ୍ ଦର୍ଶନ ଦୃଷ୍ଟିରୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶୀ ସଙ୍ଗୀତରେ ଯେଉଁ ପରମ୍ପରା ସୃଷ୍ଟି ହୋଇଛି ତା'ର ମାତ୍ର କେତୋଟି ଦୃଷ୍ଟାନ୍ତ ଉପସ୍ଥାପିତ କରାଯାଇଛି ।

●

# ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ

କେଉଁ ଅନାଦି କାଳରୁ ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ସାଂସ୍କୃତିକ ମେରୁଦଣ୍ଡ ରୂପେ ପରିଗଣିତ ହୋଇ ଆସୁଛନ୍ତି, ତା'ର ଇୟତ୍ତା ନାହିଁ । ଏ ଦେଶର ଶାସକ ଦିଗ୍‌ବିଜୟୀ ରାଜାମାନେ ମଧ୍ୟ ସ୍ୱଶାସିତ ଆଗଙ୍ଗା ଗୋଦାବରୀ ବିଶାଳ ଭୂଖଣ୍ଡକୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣତଳେ ଅର୍ପଣ କରି କୃତକୃତ୍ୟ ହୋଇଛନ୍ତି । ଏଣୁ ଏ ଜାତିର ଠାକୁର ବଡ଼ଠାକୁର, ତାଙ୍କ ଦେଉଳ ବଡ଼ଦେଉଳ, ତାଙ୍କ ଭୋଗ ବଡ଼ଭୋଗ, ତାଙ୍କ ଦାଣ୍ଡ ବଡ଼ଦାଣ୍ଡ, ତାଙ୍କ କୃହତ୍ ଶୃଙ୍ଗାର ବେଶ ବଡ଼ ସିଂହାର ବେଶ ରୂପେ ଯୁଗଯୁଗ ଧରି ନିଜର ବଡ଼ିମା ରଖି ଆସିଛନ୍ତି । କାଳକ୍ରମେ ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ପାଶୁପତ, ଗାଣପତ୍ୟ ଓ ସୌର ସମସ୍ତେ ଜଗନ୍ନାଥ ଧର୍ମରେ ଲୀନ ହୋଇଛନ୍ତି । ତେଣୁ ଏ ଜାତିର ପ୍ରତ୍ୟେକ କାର୍ଯ୍ୟରେ ଜଗନ୍ନାଥ ମହାପ୍ରଭୁଙ୍କ ନାମ ଆଦରର ସହିତ କୀର୍ତ୍ତିତ ହେବା ବିଚିତ୍ର ନୁହେଁ ।

ବୈଦିକ ଯୁଗରୁ ଅଦ୍ୟାବଧି ଶ୍ରୀଜଗନ୍ନାଥ ବିଶ୍ୱବାସୀଙ୍କ ସମ୍ମୁଖରେ ଶ୍ରୀଜଗନ୍ନାଥଙ୍କ ମହିମା ଗୀତ ହୋଇଆସୁଛି । ତେଣୁ ଏ ଦେଶର କବି କୋବିଦମାନେ ତାଙ୍କର ପ୍ରାୟ ପ୍ରତ୍ୟେକ ରଚନାରେ ଶ୍ରୀଜଗନ୍ନାଥଙ୍କ ସ୍ତୁତି, ବର୍ଣ୍ଣନାଆଦିର ଉଲ୍ଲେଖ କରିବା ଅସ୍ୱାଭାବିକ ନୁହେଁ ।

ମଧ୍ୟଯୁଗୀୟ ଭାରତରେ ସର୍ବଭାରତୀୟ ସ୍ତରରେ ଯେତେ ସଂସ୍କୃତ ଗ୍ରନ୍ଥ ରଚିତ ହୋଇଥିଲା ତନ୍ମଧ୍ୟରେ ଓଡ଼ିଆ କବିଙ୍କ ରଚିତ ସଂସ୍କୃତ ଗ୍ରନ୍ଥର ସଂଖ୍ୟା ଆଦୌ ନ୍ୟୂନ ନୁହେଁ । କିନ୍ତୁ ଅଧିକାଂଶ ସଂସ୍କୃତ ଗ୍ରନ୍ଥରେ ଓଡ଼ିଆ କବିମାନେ ଯେକୌଣସି ପ୍ରକାରେ ଶ୍ରୀଜଗନ୍ନାଥଙ୍କୁ ବର୍ଣ୍ଣନା କରିଛନ୍ତି । ଏପରି କି ଦାନପତ୍ରମାନଙ୍କରେ ମଧ୍ୟ ଜଗନ୍ନାଥଙ୍କ ନାମର ଉଲ୍ଲେଖରହିଛି । କେବଳ ସେତିକି ନୁହେଁ ବ୍ରହ୍ମ, ସ୍କନ୍ଦଆଦି ପୁରାଣମାନଙ୍କରେ ଶ୍ରୀଜଗନ୍ନାଥଙ୍କ ମହିମା କୀର୍ତ୍ତିତ ହୋଇଛି ଏବଂ ନୀଳାଚଳ କ୍ଷେତ୍ରକୁ ପୁଣ୍ୟତମ କ୍ଷେତ୍ର ଓ ଦାରୁବ୍ରହ୍ମଙ୍କ ଦର୍ଶନରେ ମୁକ୍ତିଲାଭ କରାଯାଏ ବୋଲି ଉଲ୍ଲେଖ ଅଛି । ସ୍ତୁତିକାରମାନଙ୍କ ମଧ୍ୟରେ ପଞ୍ଚଦଶ ଶତାବ୍ଦୀର ଯୋଗୀଶ୍ୱର ପାତ୍ର ସ୍ୱ-ପୁସ୍ତକ ଅଦ୍‌ଭୂତ ସାଗରରେ ଜନ୍ମଭୂମି

ଉତ୍କଳର ଗୌରବ ପ୍ରଖ୍ୟାପନ କରିବା ସଙ୍ଗେ ସଙ୍ଗେ "ଭକ୍ତ୍ୟା ଏବମଣୀବ ଯସ୍ୟ ଜଗନ୍ନା-ଥୋଽୟଂ ନିତ୍ୟସ୍ଥିତଃ" ଶ୍ରୀଜଗନ୍ନାଥଙ୍କୁ ଦାରୁବ୍ରହ୍ମ ସ୍ୱରୂପ ନିତ୍ୟ ଗୋଲୋକେଶ୍ୱର ରୂପେ ବର୍ଣ୍ଣନା କରିଛନ୍ତି । ମନ୍ତ୍ରୀବର ଗୋଦାବର ମିଶ୍ର ସ୍ୱରଚିତ 'ଜୟ ଚନ୍ଦ୍ରାମଣି' ଗ୍ରନ୍ଥର ଆରମ୍ଭରେ ଜୟଦେବଙ୍କ ବେଦାନୁଦ୍ଧରତେ···ଶ୍ଳୋକର ଅନୁକରଣରେ ଦଶାବତାରଙ୍କୁ ସ୍ତୁତି କରି, ଶ୍ରୀଜଗନ୍ନାଥ ହିଁ ହେଉଛନ୍ତି ସ୍ୱୟଂ ଦଶାବତାରୀ ବୋଲି ବର୍ଣ୍ଣନା କରିଛନ୍ତି ।

"ବାସଂ ମ୍ଳେଚ୍ଛନିବାସନୈ କନକପୂର୍ଣ୍ଣଂ
ନୀଳାଦ୍ରିନାଥଂ ଭଜେ ।"

ତନ୍ତ୍ରଶାସ୍ତ୍ରଗୁଡ଼ିକରେ ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ରର ନିର୍ମାଣଦାୟୀ ଭୈରବରୂପେ ବର୍ଣ୍ଣନା କରାଯାଇଛି ଏବଂ ଓଡ୍ରଦେଶକୁ ପ୍ରଥମ ତାନ୍ତ୍ରିକ ପୀଠରୂପେ ତାନ୍ତ୍ରିକମାନେ ସ୍ୱୀକାର କରିଛନ୍ତି ।

ଅନ୍ୟାନ୍ୟ ଶାସ୍ତ୍ରଗୁଡ଼ିକ ବ୍ୟତୀତ ସଂସ୍କୃତରେ ରଚିତ କାବ୍ୟଗ୍ରନ୍ଥ ଗୁଡ଼ିକରେ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା ଅଧିକ ମାତ୍ରାରେ ରହିଛି । ଓଡ଼ିଶାରେ ରଚିତ ସଂସ୍କୃତ କାବ୍ୟ-ଗ୍ରନ୍ଥଗୁଡ଼ିକର ଆଲୋଚନାରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ରଚିତ ମୁରାରିମିଶ୍ରଙ୍କ ଅନର୍ଘରାଘବ ନାଟକରେ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଦୁଇଟି ଶ୍ଳୋକ ରଚିତ ହୋଇଛି ଏବଂ କବି ନାଟକର ସୂତ୍ରଧର ମୁଖରେ ତାଙ୍କର ନାଟକଟିକୁ ଶ୍ରୀଜଗନ୍ନାଥଙ୍କର କୌଣସି ଏକ ଯାତ୍ରାରେ ଅଭିନୀତ କରାଇଥିବାର ଉଲ୍ଲେଖ କରିଛନ୍ତି । ପ୍ରସିଦ୍ଧ ଓଡ଼ିଆ ଗୀତକବି ଅଗ୍ରଣୀ ଜୟଦେବ ତାଙ୍କ 'ଦଶାବତାର'ର ପ୍ରତ୍ୟେକ ଶ୍ଳୋକରେ "ଜୟ ଜଗଦୀଶ ହରେ" ବୋଲି ଧ୍ୟାନ କରି ଶ୍ରୀଜଗନ୍ନାଥଙ୍କ ଠାରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ଶ୍ରୀଗୀତଗୋବିନ୍ଦର ଅନୁକରଣରେ ଲିଖିତ ମହାକବି କବିଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ପ୍ରଣୀତ ଅଭିନବ ଗୀତଗୋବିନ୍ଦ ପୁସ୍ତକର ପ୍ରତି ଛନ୍ଦେ ଛନ୍ଦେ ଶ୍ରୀଜଗନ୍ନାଥଙ୍କ ସ୍ତୁତି ମୁଖରିତ ହୋଇଉଠିଛି । ସେ ଦଶାବତାର ବର୍ଣ୍ଣନା ପ୍ରସଙ୍ଗରେ ପ୍ରତ୍ୟେକ ଅବତାର ଶେଷରେ ଜୟଦେବଙ୍କ ପରି 'ଜୟଜଗଦୀଶ ହରେ' ନ ଲେଖି 'ଜନନପାଳନ ନାଶକାରଣ—ନୀଳଗିରିପତିମଚ୍ୟୁତଂ' ବୋଲି ଉଲ୍ଲେଖ କରି ନିଜ ଭକ୍ତିଭାବନାର ପରାକାଷ୍ଠା ଦେଖାଇଛନ୍ତି । ସେ ଶ୍ରୀଜଗନ୍ନାଥଙ୍କୁ ଦଶାବତାରୀ ରୂପେ ପ୍ରତ୍ୟକ୍ଷ ଭାବରେ ଉଲ୍ଲେଖ କରିଥିବାର ସୂଚନା ତାଙ୍କର ଗୋଟିଏ ଶ୍ଳୋକରୁ ସ୍ପଷ୍ଟତଃ ମିଳେ—

"ନୀଳଗିରିପତି-ଚରଣସରସିଜମତ୍ତ ମଧୁକର ରୂପିଣା ।
ରଚିତମେତତ୍ ପୁରୁଷୋତ୍ତମ ଭୂଭୁଜାମତିରସ୍ୱରୁଣା ॥
ନମତ ଦଶବିଧ-ରୂପମଦ୍ଭୁତମଖିଳମୁନିଜନ ବନ୍ଦିତମ୍ ।
ଜନନପାଳନନାଶକାରଣ ନୀଳଗିରିପତିମଚ୍ୟୁତମ୍" ॥

ତାଙ୍କ ପରେ କବି ଶ୍ରୀ ରଘୂତ୍ତମ ତୀର୍ଥ ସ୍ୱରଚିତ ମୁକୁନ୍ଦବିଳାସ ଶୀର୍ଷକ ଗୀତ-କାବ୍ୟରେ ଶ୍ରୀଜଗନ୍ନାଥଙ୍କୁ ପ୍ରକୃତି-ପୁରୁଷ, ରାଧାକୃଷ୍ଣ ଏବଂ ବ୍ରହ୍ମାବିଷ୍ଣୁ-ମହେଶ୍ୱର ସ୍ୱରୂପୀ ବୋଲି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ମତ୍ସ୍ୟକୂର୍ମାଦି—ଦଶାବତାର ସ୍ରଷ୍ଟା ଶ୍ରୀଜଗନ୍ନାଥଙ୍କ ଠାରେ ଅଚଳାଭକ୍ତି ପ୍ରଦର୍ଶନ କରିଛନ୍ତି—

ଯୋ ଦ୍ୱେଧା ପ୍ରକୃତିଃ ପୁମାନିତି ମତଃ ସ୍ତ୍ରୀପୁଂସଦେହାଶ୍ରିତୋ
ଯସ୍ତ୍ରେଧା ବିଧିବିଷ୍ଣୁଶଙ୍କରବପୁର୍ଧାମ୍ନି ଦର୍ଦୃଶ୍ୟତେ ।
ଶ୍ରୀମନ୍ନୀଳଗିରୌ ଚ ଦାରୁତନୁଧୃକ୍ ଯୋଽସୌ ଚତୁର୍ଦ୍ଧା ସ୍ଥିତଃ ।
ରାଧାକୃଷ୍ଣତନୁଧରେ ବିଜୟତେ ବୃନ୍ଦାବନେନେଶ ପ୍ରଭୁଃ ।

× × ×

ନ ମତ୍ସ୍ୟୋ ନ କୂର୍ମୋ ନ ଭବତି ବରାହୋ ନ ନୃହରିଃ ।
ନ ଖର୍ବୋ ନ ରାମୋ ନ ଚ ସୁଗତ କଲ୍କୀ ହି ଭଗବାନ୍ ।
ଗୁଣାଧାରାନ୍ତାତ୍ମା ନିଗୁଣେରଚିତଂ ଚିଦସମୟୋ ।
ବିଧତ୍ତେଽସୌ ତତ୍ତତ୍କପଟମୟରୂପଂ ନଟ ଇବ ॥

ଏହିପରି ଭାବରେ ଦେଖିବାକୁ ଗଲେ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚରିତ ଅବଲମ୍ବନରେ ଗଜପତି କପିଳେନ୍ଦ୍ରଦେବଙ୍କ ନାମରେ ଭଣିତ ପର୍ଶୁରାମବିଜୟ, କବିଡିଣ୍ଡିମ ଜୀବଦେବାଚାର୍ଯ୍ୟଙ୍କ ଭକ୍ତିବୈଭବ ନାଟକ ଓ ଉଷାହରଣ ନାଟିକା, ଭକ୍ତକବି ରାୟ ରାମାନନ୍ଦ ପଟ୍ଟନାୟକଙ୍କ ଶ୍ରୀଜଗନ୍ନାଥ ବଲ୍ଲଭ ନାଟକ ପ୍ରଭୃତି ସଂସ୍କୃତ ପୁସ୍ତକରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର କବିଡିଣ୍ଡିମ ଜୀବଦେବଙ୍କ ପୁତ୍ର ଜୟଦେବ—(ଦ୍ୱିତୀୟ)ଙ୍କ ଦ୍ୱାରା ପୀୟୂଷଲହରୀ ବା 'ବୈଷ୍ଣବାମୃତ ଗୋଷ୍ଠୀ ରୂପକ' ଶୀର୍ଷକ ଖଣ୍ଡିଏ ଏକାଙ୍କିକା ରଚିତ ହୋଇଥିଲା । କବି ଜୟଦେବ ନାଟିକାର ଆରମ୍ଭ ଓ ଶେଷରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଦାରୁବିଗ୍ରହକୁ ସ୍ତୁତି କରି ସମଗ୍ର ଜଗତର ମଙ୍ଗଳ କାମନା କରିବା ସଙ୍ଗେ ସଙ୍ଗେ ଶତ୍ରୁଜନିତ ବିପଦରୁ ଉଦ୍ଧାର ପାଇବା ଲାଗି ପ୍ରାର୍ଥନା କରିଛନ୍ତି ।

ଶୁଭମସ୍ତୁ ସର୍ବଜଗତାଂ ନିରନ୍ତରଂ
ନ କପୋରପି ସ୍ଫୁରତୁ ବୈପଦଂ ପଦମ୍ ।
ଜଗଦୀଶ୍ୱରଃ କପଟଦାରୁବିଗ୍ରହଃ
କରୁଣା କଟାକ୍ଷଲହରୀ ବିମୁଞ୍ଚତୁ ॥

କେବଳ ପୀୟୂଷଲହରୀ ନାଟିକାରେ ନୁହେଁ, ପୁରୁଷୋତ୍ତମଦେବଙ୍କ ନାମରେ ଭଣିତ ଅଭିନବ ବେଣୀସଂହାର, ଗଜପତି ରାମଚନ୍ଦ୍ର ଦେବଙ୍କ ନାମରେ ଭଣିତ ଶ୍ରୀକୃଷ୍ଣ ଭକ୍ତବାତ୍ସଲ୍ୟ ନାଟକ, ପରମାନନ୍ଦଦାସଙ୍କ 'ଚୈତନ୍ୟ ଚନ୍ଦ୍ରୋଦୟ ନାଟକ, କବିରତ୍ନ ପୁରୋହିତ ସଦାଶିବ ଉଦ୍‌ଗାତାଙ୍କ ପ୍ରମୁଦିତ ଗୋବିନ୍ଦ ନାଟକ, ନରସିଂହ ମିଶ୍ରଙ୍କ ଭକ୍ତି ମହୋଦୟ ନାଟିକା, ଚମ୍ପୁମୀ ଚନ୍ଦ୍ରଶେଖର ରାଜଗୁରୁଙ୍କ ମଧୁରାନିରୁଦ୍ଧ ନାଟକ, ନୀଳକଣ୍ଠ ମିଶ୍ରଙ୍କ ଭକ୍ତିମହୋଦୟ ପ୍ରଭୃତି ଦୃଶ୍ୟକାବ୍ୟରେ ଶ୍ରୀଜଗନ୍ନାଥଙ୍କ ମହିମାସ୍ତୁତି ବର୍ଣ୍ଣିତ ହୋଇଛି ।

ସଂସ୍କୃତ ସାହିତ୍ୟର ଅନ୍ୟାନ୍ୟ ବିଭାବପରି ଓଡ଼ିଆ ପଣ୍ଡିତମାନଙ୍କ ଦ୍ୱାରା କେତେ ଖଣ୍ଡି ସଙ୍ଗୀତ ଗ୍ରନ୍ଥ ରଚିତ ହୋଇଥିଲା । ସେଗୁଡ଼ିକ ମଧ୍ୟରେ କୃଷ୍ଣଦାସ ବଡ଼ଜେନା ମହାପାତ୍ରଙ୍କ ରଚିତ ଗୀତପ୍ରକାଶ ଗ୍ରନ୍ଥ ଅନ୍ୟତମ ପ୍ରାଚୀନ ଗ୍ରନ୍ଥ । କବି ଶ୍ରୀ ବଡ଼ଜେନା ମହାପାତ୍ର 'ଗୀତପ୍ରକାଶ'ର ଆରମ୍ଭରେ ସର୍ବକାମ ଫଳପ୍ରଦ ଶରଣରକ୍ଷଣ କରୁଣା-ସାଗର ଶାଶ୍ୱତ ସ୍ୱରୂପୀ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରି ପାଠ ଆରମ୍ଭ କରିଛନ୍ତି ।

"ଜାମଦଂ ନୀଳଶୈଳସ୍ଥଂ କରୁଣାବରୁଣାଳୟଂ ।
ଶରଣଂ ସର୍ବସତ୍ତ୍ୱାନାଂ ଶାଶ୍ୱତଂ ଧାମ କାମଯେ" ॥

ପାରଳାଖେମୁଣ୍ଡିର ରାଜା ଗଜପତି ଜଗନ୍ନାଥ ନାରାୟଣ ଦେବଙ୍କ ସଙ୍ଗୀତ ନାରାୟଣ ଗ୍ରନ୍ଥଟି ଓଡ଼ିଶାରେ ରଚିତ ସଙ୍ଗୀତ ପୁସ୍ତକମାନଙ୍କ ମଧ୍ୟରେ ଏକ ପ୍ରାମାଣିକ ରଚନା । ଉକ୍ତ ପୁସ୍ତକରେ କବି ସଙ୍ଗୀତର ବିଭିନ୍ନ ବିଭାବ ବିଷୟରେ ଆଲୋଚନା କରିଥିଲେ ହେଁ ମଙ୍ଗଳାଚରଣରେ ଗୋଟିଏ ଅତି ଚମତ୍କାର ଯମକପୂର୍ଣ୍ଣ ଶ୍ଳୋକ ଦ୍ୱାରା ଶ୍ରୀଜଗନ୍ନାଥଙ୍କ ବନ୍ଦନା କରିଛନ୍ତି । ଗଜପତି ନାରାୟଣ ଦେବ ମଙ୍ଗଳାଚରଣ ଶ୍ଳୋକରେ ଶ୍ରୀଜଗନ୍ନାଥଙ୍କୁ ନୀଳାଦ୍ରିକନ୍ଦରବିହାରୀ ମନ୍ଦିରାଳୟବାସୀ ଦେବତାମାନଙ୍କ ଦ୍ୱାରା ବନ୍ଦିତ ଭକ୍ତଜନମାନଙ୍କ ସ୍ତୁତ୍ୟ ତଥା ମହାଲକ୍ଷ୍ମୀଙ୍କ ପ୍ରାଣବଲ୍ଲଭ ରୂପେ ସ୍ତୁତିକରି ସ୍ୱଭକ୍ତିର ପରାକାଷ୍ଠା ଦେଖାଇଛନ୍ତି ।

ନୀଳାଦ୍ରିକନ୍ଦରାନନ୍ଦଂ ମନ୍ଦିରାଳୟବନ୍ଦିତଂ
ବନ୍ଦେ ବନ୍ଦାରୁମନ୍ଦାରମିନ୍ଦିରାମନ୍ଦିରଂ ମହଃ ।

ଏହିପରି ଭାବରେ ଦେଖିବାକୁ ଗଲେ ଓଡ଼ିଶାରେ ରଚିତ ସଂସ୍କୃତ ସାହିତ୍ୟ ଗ୍ରନ୍ଥରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବର୍ଣ୍ଣନା ନାନା ଭାବରେ ପରିବେଷିତ ହୋଇଛି । ଓଡ଼ିଆ ସଂସ୍କୃତିର ସ୍ରଷ୍ଟା ଜାତିର ନମସ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରଥମେ ପ୍ରଣାମ ନିବେଦନ କରି ଗ୍ରନ୍ଥ ରଚନା କରିବା ଓଡ଼ିଶାର ଏକ ପରମ୍ପରା । ଅବଶ୍ୟ କେତେକ

କବି ନିଜ ନିଜର ଇଷ୍ଟଦେବ ଶିବ, ଦୁର୍ଗା, ଗୋପୀନାଥ ରାମ, କୃଷ୍ଣ ପ୍ରଭୃତିଙ୍କୁ ସ୍ୱରଚିତ ଗ୍ରନ୍ଥର ମଙ୍ଗଳାଚରଣରେ ସ୍ଥାନ ଦେଇଛନ୍ତି; କିନ୍ତୁ ଓଡ଼ିଆ କବିମାନେ ଶ୍ରୀଜଗନ୍ନାଥଙ୍କୁ ଦଶାବତାରୀ ରୂପେ ପରିକଳ୍ପନା କରିଥିବାରୁ ଯେକୌଣସି ଦେବଦେବୀଙ୍କୁ ସ୍ତୁତି କରାଗଲେ ତାହା ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ବୋଲି ବୁଝିବାକୁ ହେବ ।

ଓଡ଼ିଶାର ସଂସ୍କୃତ ବିଦ୍ୱାନମାନେ କେବଳ ଶ୍ରୀଜଗନ୍ନାଥଙ୍କୁ ସ୍ୱରଚିତ ଗ୍ରନ୍ଥମାନଙ୍କର ମଙ୍ଗଳାଚରଣରେ ବର୍ଣ୍ଣନା କରି କ୍ଷାନ୍ତ ହୋଇନାହାନ୍ତି । ସେମାନେ ମହାପ୍ରଭୁଙ୍କର ବିଭିନ୍ନ ଲୀଳା ବର୍ଣ୍ଣନା କରି ଖଣ୍ଡିଏ ଖଣ୍ଡିଏ ସ୍ୱତନ୍ତ୍ର ପୁସ୍ତକ ରଚନା କରି ଅଛନ୍ତି । ସେହି ଗ୍ରନ୍ଥଗୁଡ଼ିକ ମଧ୍ୟରେ ବାସୁଦେବ ରଥ ସୋମଯାଜୀଙ୍କ ରଚିତ ଗଙ୍ଗବଂଶାନୁଚରିତ ଚମ୍ପୂ, ବନବାରି ଚକ୍ରପାଣିଙ୍କ ରଚିତ ଗୁଣ୍ଡିଚା ଚମ୍ପୂ, ଅଭିନବ ଜଗନ୍ନାଥଦାସଙ୍କ ନୀଳାଦ୍ରି ଶତକ, ପଣ୍ଡିତ ନିତ୍ୟାନନ୍ଦଙ୍କ ଗୁଣ୍ଡିଚା ଶତକ, ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ ଶ୍ରୀଜଗନ୍ନାଥ ଶତକ, ନୀଳାମ୍ବର ଆଚାର୍ଯ୍ୟ ଓ ସଦାଶିବ ମିଶ୍ରଙ୍କ ଚନ୍ଦନଯାତ୍ରାଚମ୍ପୂ ଆଦି ଗ୍ରନ୍ଥ ପ୍ରଧାନ । ଉକ୍ତ କବିମାନେ ଶ୍ରୀକ୍ଷେତ୍ରର ପ୍ରଧାନ ଯାତ୍ରା ଗୁଣ୍ଡିଚା ଓ ଚନ୍ଦନ ଯାତ୍ରାକୁ ଉପଜୀବ୍ୟ କରି ଯେଉଁ ଗ୍ରନ୍ଥମାନ ପ୍ରଣୟନ କରିଛନ୍ତି ତାହା ବିଦଗ୍ଧ ପାଠକ ସମାଜରେ ବିଶେଷ ଭାବରେ ଆଦୃତ ହୋଇଛି । ତନ୍ମଧ୍ୟରେ ନିମ୍ନୋକ୍ତ ଶ୍ଳୋକଗୁଡ଼ିକ ସହୃଦୟ ପାଠକମାନଙ୍କ ଅବଗତି ନିମିତ୍ତ ଏଠାରେ ଉଦ୍ଧାର କରାଗଲା ।

"ସର୍ବାତ୍ମା ଭଗବାନିତି ପ୍ରଥମୁକ୍ତଃ ସିଦ୍ଧାନ୍ତସମ୍ବାଦିଭିଃ ।
ଯଦ୍ୟତ୍ର ପ୍ରୋକ୍ତମଶେଷଖଣ୍ଡନ ପରୈ ସ୍ତତ୍ତ୍ୱଥା ନାନ୍ୟଥା ।
ଯତ୍ର ନୀଳାଚଳ ରତ୍ନକନ୍ଦରତଟି ସିଂହାସନାଧାସିନଃ ।
ତସ୍ୟାଂ ନୟନୋତ୍ସବଃ ସମଜନି ତ୍ରୈଲୋକ୍ୟନାଥୋ ହରିଃ ।"

— ବାସୁଦେବ ରଥଙ୍କ ଗଙ୍ଗବଂଶାନୁଚରିତ ଚମ୍ପୂ

"ସଦ୍ୟୋ ଭିନ୍ନାଞ୍ଜନାଭ କନକରସ୍ଥଳସଚ୍ଚଞ୍ଚଲାଲଙ୍କିତାଙ୍ଗଃ ।
ସ୍ନିଗ୍ଧୋ ଗମ୍ଭୀରନାଦସ୍ତ୍ରିଜଗତି ଜନତାଲୋଚନାଲୀ ବିନୋଦଃ ।
ଭୂଲକ୍ଷ୍ମୀମୋଦକାରୀ ଦ୍ୱିଦଶପତିଧନୁର୍ଭୂଷଣାଲଂକୃତୋଽସୌ ।
ପାୟାନ୍ନୀଳାଚଳସ୍ଥୋ ନବମୁଦିରବପୁର୍ଜୀବନଧାରମୂର୍ତ୍ତିଃ ।"

—ବନବାରି ଚକ୍ରପାଣିଙ୍କ ଗୁଣ୍ଡିଚା ଚମ୍ପୂ

"ଇନ୍ଦ୍ରଦ୍ୟୁମ୍ନକ୍ଷିତୀନ୍ଦ୍ରପ୍ରଣୟକୃତମହାନୁଗ୍ରହୋଦଗ୍ରଚେତା
ନେତାବୃନ୍ଦାରକାଣାଂ ପତିତଜନସମୁଦ୍ଧାରକାରୁଣ୍ୟସିନ୍ଧୁଃ ।
ଦୀନାନାଥୈକବନ୍ଧୁର୍ଜଳଧିତଟନଟନ୍ନୀଳଶୈଳାଗ୍ରଜାଗ୍ର-
ତ୍ତେଜ ସା ସମ୍ପଦେବ ଜ୍ଜଳକଳୁଷକରିଧ୍ୱଂସସିଂହୋ ନୃସିଂହ ।"

— ଅଭିନବ ଜଗନ୍ନାଥ ଦାସଙ୍କ ନୀଳାଦ୍ରିନାଥ ଶତକ

"ଗ୍ରୀକଚନ୍ଦ୍ରକସ୍ତୁରୁକାନ୍ତରୁଦସ୍ତୁ ପ୍ରଦ୍ୟୁମ୍ନଭୂଷାକୃତଃ
ସୌଭଦ୍ରାବଳସନ୍ନତଃ ପ୍ରବକଶଚ୍ଛୁବ୍ରମ୍ନକାନ୍ତୋଦ୍‌ଗତଃ ।
ନାଗାହ୍ଵୋନ୍ନଥତାର୍କ୍ଷ୍ଣନାହତମତଃ କାଦମ୍ବସ୍ଵତଗର୍ଡଃ
ଭୂସ୍ଥାନ୍ନୀଳଗିରୌ ଶୟ୍ଟି ତ ମମ ବଳୋଭଦ୍ରା ଚ ଲକ୍ଷ୍ମୀପତଃ ।"

— ନତ୍ୟାନନ୍ଦଙ୍କ ନୀଳାଦ୍ରିନାଥ ଶତକ

ଗୁରୁସ୍ଵେ ରତଗ୍ରଧରେଣ ତଳସଦ୍ ଗାଚ୍ଛତାଷ୍ଟ ପ୍ରଗ୍ଭ
ପାରୁଷ୍ୟପ୍ରଦକାନ୍ତ ଭକ୍ତଜନତା ସାରୂପ୍ୟସମ୍ପାଦକମ୍ ।
କାରୁଣ୍ୟଂ କଳୟନ୍ନି ଲୋକଘଟନେ ତାରୁଣ୍ୟଧୂନ୍ତଦ୍ଦ୍ଵରଂ
ଦାରୁବ୍ରହ୍ମ ମମାବରସ୍ତୁ ହୃଦୟେ କାରୁଣ୍ୟ ବାରାଂନଧିଃ ।"

—ସଦାଶିବ ମିଶ୍ରଙ୍କ ଚନ୍ଦନ ଚମ୍ପୂ

## ଓଡ଼ିଆ ସାହିତ୍ୟ—

ଉତ୍କଳୀୟ ବିଦ୍ଵାନମାନଙ୍କ ଦ୍ଵାରା ଖ୍ରୀଷ୍ଟୀୟ ଚତୁର୍ଥ ପଞ୍ଚମ ଶତାବ୍ଦୀ ଠାରୁ ଆରମ୍ଭ କରି ଅଦ୍ୟାପି ଶ୍ରୀଜଗନ୍ନାଥଙ୍କ ମହିମା, ଚରିତ, ଯାତ୍ରା ପଦ୍ଧତି ଉପରେ ବହୁ କବିଙ୍କ ଦ୍ଵାରା ଶତାଧିକ ଗ୍ରନ୍ଥ ରଚିତ ହୋଇଛି । ତନ୍ମଧ୍ୟରେ କେତୋଟି ଓଡ଼ିଆ ଅଭିଲେଖର ଉପଯୋଗିତା ଖୁବ୍ ଅଧିକ ବୋଲି ମନେହୁଏ । ଓଡ଼ିଶାର ପ୍ରସିଦ୍ଧ ରାଜା ଗଜପତି କପିଳେନ୍ଦ୍ର ଦେବ ଓଡ଼ିଆ ଭାଷା ଓ ସାହିତ୍ୟର ସମ୍ପ୍ରସାରକ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କଦ୍ଵାରା ପ୍ରଦତ୍ତ ଗୋଟିଏ ଅଭିଲେଖରୁ ଜଣାଯାଏ ଯେ, ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଜଣେ ପରମ ଭକ୍ତ ଥିଲେ । କେବଳ ସେତିକ ନୁହେଁ ଭାଷାତାତ୍ତ୍ଵିକ ଦୃଷ୍ଟିକୋଣରୁ ବିଚାର କଲେ ପଞ୍ଚଦଶ ଶତାବ୍ଦୀର ଏହି ଓଡ଼ିଆ ଅଭିଲେଖ ଓଡ଼ିଆ ଗଦ୍ୟ-ସାହିତ୍ୟର ଏକ ଦୁର୍ଲ୍ଲଭ ଅଂଶ ।

"ଭୋ ଶ୍ରୀ ଜଗନ୍ନାଥ, ମୋହର ବାହାର ଅଭ୍ୟନ୍ତର ସମସ୍ତ ତୁ ଜାଣୁ । ମୋହର ଯେତେ ରତନ ପଦାର୍ଥ ଅଛୁ, ସେ ତୋହର । X-X X ଏ ଭୂମିଖଣ୍ଡ ତୁ ଯାହାକୁ ଅନୁଗ୍ରହ କରୁ...ବୀର ଗଜପତି ପ୍ରତାପ କପିଳେସର ଦେବ ମହାରାଜାଙ୍କର...ଭୋ ଜଗନ୍ନାଥ, ତୋହ ସେବକ ଏମନ୍ତ ଜଣାଉଅଛୁ । ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ଦେବଙ୍କ ପଦ୍ମପାଦଙ୍କୁ ଭକ୍ତନିମିତ୍ତେ କପିଳେସର ରଜାଏ ସେବା କରି ଦେଲେ ନୃତ୍ୟତୋଡ଼ରମାନ । ଶ୍ରୀଭୁଜରେ ରହି ଶଙ୍ଖଚକ୍ର ଦୁଇ ପ୍ରମେଶ୍ଵରଙ୍କ ମଣ୍ଡିହିଂକ ସୁନା ଯୋଗାଡ଼ ।"

ଗଜପତି କପିଳେନ୍ଦ୍ର ଦେବଙ୍କ ସେନାବାହିନୀର ଅନ୍ୟତମ ନାୟକ ସିଦ୍ଧେଶ୍ଵର ପରିଡ଼ା ବା ସାରଳାଦାସ, ମହାଭାରତ ରଚନା କରି ଓଡ଼ିଆ ସାହିତ୍ୟର ଏକ ଉତ୍ତୁଙ୍ଗ

ହିମାଳୟ ସୃଷ୍ଟି କରିଛନ୍ତି । ଭାଷା, ଭାବ, ଶୈଳୀ ଓ ବିଷୟ ପ୍ରତିପାଦନରେ ମହାକବି ସାରଳା ଦାସ ଉତ୍କଳର ବ୍ୟାସଦେବ ରୂପେ ପରିଚିତ । ସଂସ୍କୃତ ମହାଭାରତର କଥାବସ୍ତୁ ଉପରେ ଖଣ୍ଡିଏ ସ୍ୱତନ୍ତ୍ର ପୁସ୍ତକ ଲେଖି ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ପରିବେଷଣ କରିଛନ୍ତି । ମୂଳ ମହାଭାରତର କେବଳ ପଦାଙ୍କ ଅନୁସରଣ କରିବା ବ୍ୟତୀତ ବିଷୟ ପ୍ରତିପାଦନରେ ସାରଳାଦାସ ଅସାଧାରଣ ପ୍ରତିଭାର ପରିଚୟ ଦେଇଛନ୍ତି । ସେ ତାଙ୍କ ଗ୍ରନ୍ଥରେ ଓଡ଼ିଶାର ପର୍ବପର୍ବାଣି ତଥା ସାଂସ୍କୃତିକ ଚିହ୍ନମାନ ଏପରି ଭାବରେ ଉଲ୍ଲେଖ କରିଛନ୍ତି ଯେ, ତାହା ଏକ ମୌଳିକ ଗ୍ରନ୍ଥରୂପେ ପାଠକ ସମାଜରେ ସମାଦୃତ ହୁଏ । କବି ସାରଳା ଦାସ ମହାଭାରତରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଓଡ଼ିଶାର ଜାତୀୟ ବିଗ୍ରହ ରୂପେ ଚିହ୍ନଟ କରିଛନ୍ତି । ସେ ମଙ୍ଗଳାଚରଣ ପ୍ରଭୃତି ବହୁ ସ୍ଥାନରେ ଚକାଡ଼ୋଳା, ପତିତପାବନ, ବୌଦ୍ଧାବତାର, ନୀଳକନ୍ଦରବାସୀ ଜଗନ୍ନାଥଙ୍କୁ ସ୍ତୁତି କରିଥିଲେହେଁ, ଅନ୍ୟାନ୍ୟ ସ୍ଥଳରେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଅଭେଦ କଳ୍ପନା କରିଛନ୍ତି । ଶ୍ରୀକୃଷ୍ଣଙ୍କର ସମସ୍ତ କାର୍ଯ୍ୟକଳାପ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର କାର୍ଯ୍ୟରୂପେ ବର୍ଣ୍ଣନା କରି ସାରଳାଦାସ ଜାତୀୟ ଗୌରବର ପ୍ରତୀକ ରୂପେ ତାଙ୍କୁ ଶୀର୍ଷ ସ୍ଥାନରେ ଆସୀନ କରାଇଛନ୍ତି । ବିଶେଷତଃ ମୂଷଳୀପର୍ବରେ ଶ୍ରୀକୃଷ୍ଣଙ୍କର ଦେହାବସାନ ବର୍ଣ୍ଣନା କରିବାକୁ ଯାଇ କବି ସାରଳା ଦାସ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ନବ କଳେବର ବର୍ଣ୍ଣନା କରି ମହାଭାରତ ଗ୍ରନ୍ଥଟିକୁ ଏକ ଜାତୀୟ ମହାକାବ୍ୟରେ ପରିଣତ କରିଛନ୍ତି । ଶ୍ରୀ ଜଗନ୍ନାଥଙ୍କ ନାମ ଓ ମହିମା ବର୍ଣ୍ଣିତ ମହାଭାରତର ଉଦ୍ଧୃତି ମଧ୍ୟରୁ କେତୋଟି ଉଦାହରଣ ସ୍ୱରୂପ ଏଠାରେ ପ୍ରଦତ୍ତ ହେଲା ।

ବଉଧ ରୂପେ ବିଜୟେ କରିଛନ୍ତି ଜଗନ୍ନାଥେ ।

—ମଧ୍ୟପର୍ବ

× × ×

ବଉଧ ରୂପେ ନୀଳକନ୍ଦରେ ଛନ୍ତି ବସି ।

× × ×

ଦ୍ୱାପର ଯୁଗ ଶେଷରେ ଦେବ ଜଗନ୍ନାଥ
ବଉଦ୍ଧ ରୂପରେ ବିଜେ କରିବେ ଯେ ଏଥ ।

—ସଭାପର୍ବ

× × ×

ବଳଭଦ୍ର ସୁଭଦ୍ରା ଏ କୃଷ୍ଣ ତିନ ରୂପ,
ବଉଦ୍ଧ ରୂପରେ ହେଲେ ଏମନ୍ତ ସ୍ୱରୂପ ।

— ବନପର୍ବ

ଜୟ ପ୍ରଭୁ ଚକାଡ଼ୋଳା ତ୍ରୈଲୋକ୍ୟ ପିତା,
ଜୟ ପତିତପାବନ ପାପୀ ତ୍ରାଣକର୍ତ୍ତା ।
ଜୟ ନୀଳାଦ୍ରି ବିହାରୀ ଆହେ ଜଗନ୍ନାଥ,
ବୌଦ୍ଧରୂପେ କଳିଯୁଗେ ମହିମା ବିଖ୍ୟାତ ।

—କାର୍ତ୍ତିକା ପର୍ବ

ଦଶମ ଅବତାରରେ ନଷ୍ଟ ବିହରିବୁ
ଦୁଷ୍ଟଜନ ମାରି ସନ୍ଥଜନଙ୍କୁ ପାଳିବୁ ।

—ମୂଷଳୀପର୍ବ

ଉତ୍କଳ ବାଲ୍ମୀକି ବଳରାମ ଦାସ ଜଗମୋହନ ରାମାୟଣରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବର୍ଣ୍ଣନା କରି ସ୍ୱଭକ୍ତି ଭାବନାର ପରାକାଷ୍ଠା ବହୁଳ ଭାବରେ ପ୍ରଦର୍ଶନ କରିଛନ୍ତି । ସେ ସ୍ୱରଚିତ ରାମାୟଣ ଗ୍ରନ୍ଥଟିକୁ ଜଗନ୍ନାଥ ମହାପ୍ରଭୁଙ୍କ ନାମରେ ଉତ୍ସର୍ଗ କରି ପୁସ୍ତକର ନାମ ଜଗମୋହନ ରାମାୟଣ ରଖିଛନ୍ତି ଏବଂ ଗ୍ରନ୍ଥର ପ୍ରଥମ ଅଧ୍ୟାୟଟିକୁ ମଙ୍ଗଳାଚରଣ ଅଧ୍ୟାୟ ରୂପେ ରଚନା କରି ଶ୍ରୀ ଜଗନ୍ନାଥଙ୍କ ସ୍ତୁତିଗାନ କରିଛନ୍ତି । କେବଳ ସେତିକି ନୁହେଁ, ଜଗମୋହନ ରାମାୟଣରେ ଆଦ୍ୟକାଣ୍ଡ ଓ ଉତ୍ତରାକାଣ୍ଡରେ ଜଗନ୍ନାଥ ସ୍ୱୟଂ ଗ୍ରନ୍ଥର ରଚୟିତା ବୋଲି ଉଲ୍ଲେଖ କରି ମହାପ୍ରଭୁଙ୍କଠାରେ ଅଚଳା ଭକ୍ତି ପ୍ରଦର୍ଶନ କରିଛନ୍ତି ।

"ଶ୍ରୀ ଜଗନ୍ନାଥଙ୍କର ଆଜ୍ଞା ଶିରେ ଧରି ।
ଗ୍ରନ୍ଥ ବଖାଣିବି ମୁଁ ଆଦ୍ୟ ପ୍ରାନ୍ତ କରି ।

—ଆଦ୍ୟକାଣ୍ଡ

× × ×

ଜଗମୋହନ ବୋଲି ସେ ରାମାୟଣ ଗ୍ରନ୍ଥ,
ଯେତୁ ଥିର କରି ସେ ନୀଳଗିରି ଜଗନ୍ନାଥ ।
ସେ ହରି ମୋହର କଣ୍ଠେ ବିଜେ କରିଥାନ୍ତି,
ଆପଣା ଚରିତ ଯେ ଆପଣେ ବଖାଣନ୍ତି ।

—ଉତ୍ତରକାଣ୍ଡ ଆରମ୍ଭ

ଓଡ଼ିଆ ପଞ୍ଚସଖା ସାହିତ୍ୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ବର୍ଣ୍ଣନା ବିଶେଷ ଭାବରେ ପ୍ରକଟିତ ହୋଇଛି । ଶ୍ରୀ ଜଗନ୍ନାଥ ଦାସ ଓଡ଼ିଆ ଭାଗବତରେ ମହାପ୍ରଭୁ

ଜଗନ୍ନାଥଙ୍କୁ ଦଶାବତାର ରୂପେ ବର୍ଣ୍ଣନା କରି ଓଡ଼ିଆ କବି ଜୟଦେବଙ୍କ ଦଶାବତାର ପରମ୍ପରାକୁ ପରୋକ୍ଷ ଭାବରେ ଓଡ଼ିଶାର ପରମ୍ପରା ବୋଲି ସ୍ୱୀକାର କରିଛନ୍ତି ।

ନମସ୍ତେ ପ୍ରଭୁ ଜଗନ୍ନାଥ । ଅନାଥ ଲୋକଙ୍କର ନାଥ ।
ହୋଇଲୁ ଦଶ ଅବତାର । ନାଶିଲୁ ଅବନୀର ଭାର ।
ଯେହ୍ନେ ପ୍ରକାରେ ମୋର ମନ । ତୋ ପାଦେ ରହୁ ଭଗବାନ ।
କହଇ ଜଗନ୍ନାଥ ଦାସ । କମଳ ଚରଣକୁ ଆଶ ।।

ଜଗନ୍ନାଥ ଦାସଙ୍କ ଷୋଳ ଚଉପଦୀରେ ମୁଖ୍ୟତଃ ଶ୍ରୀକୃଷ୍ଣଙ୍କ ଗୋପଲୀଳା ପ୍ରକରଣ ବର୍ଣ୍ଣିତ ହୋଇଛି କିନ୍ତୁ କବି ଜଗନ୍ନାଥ ଦାସ ଗୋପୀବଲ୍ଲଭ ଶ୍ରୀକୃଷ୍ଣଙ୍କ ସହିତ ଜଗନ୍ନାଥଙ୍କର ଅଭେଦ କଳ୍ପନା କରି ନୀଳଗିରି ବିହାରୀ ନିଜର ଇଷ୍ଟଦେବଙ୍କ ପ୍ରତି ଭକ୍ତିଭାବର ପରାକାଷ୍ଠା ଦେଖାଇଛନ୍ତି ।

ଜଗନ୍ନାଥ ଦାସ ଓ ବଳରାମ ଦାସଙ୍କ ବ୍ୟତୀତ ପଞ୍ଚସଖାମାନଙ୍କ ମଧ୍ୟରେ ଅନ୍ୟାନ୍ୟ ତିନିଜଣ ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ; ସେମାନଙ୍କ ଦ୍ୱାରା ରଚିତ ହରିବଂଶ, କଳିଯୁଗ ଗୀତା, ଗରୁଡ଼ ଗୀତା, ଗୁରୁଭକ୍ତି ଗୀତା, ଶିବ ସ୍ୱରୋଦୟ, ପ୍ରେମଭକ୍ତି ବ୍ରହ୍ମଗୀତା । ଆଗତ ଭବିଷ୍ୟ ମାଳିକା ପ୍ରଭୃତିରେ ଶ୍ରୀଜଗନ୍ନାଥଙ୍କ ମହିମା ପ୍ରତି ଛଟେ ଛଟେ ଫୁଟିଉଠିଛି ।

ରାମବିଭା ଓ କଳ୍ପଲତା କାବ୍ୟର କବି ଅର୍ଜ୍ଜୁନଦାସ ଶ୍ରୀରାମଚରିତ ଓ ଏକ କାଳ୍ପନିକ ବିଷୟବସ୍ତୁ ଅବଲମ୍ବନରେ କାବ୍ୟ ଦୁଇଟି ରଚନା କରିଥିଲେ ହେଁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ତାଙ୍କର ଐକାନ୍ତିକ ଭକ୍ତିଧାରାର ନିଦର୍ଶନ ସ୍ୱରୂପ ସେ ଦୁଇଟିଯାକ କାବ୍ୟର ବିଭିନ୍ନ ସ୍ଥଳରେ ମହାପ୍ରଭୁଙ୍କ ବେଶ ଓ ଧୂପର ବର୍ଣ୍ଣନା କରିଛନ୍ତି ।

"ଶୁଣ ହେ ରସିକମାନେ, ଦକ୍ଷିଣ ଉଦଧି କୂଳେ ।
କ୍ଷେତ୍ରବର ନୀଳଗିରି ନବରରୁ ଶୁଣି ରାଜ୍ୟବିଜୟ କଲେ ।।
ବନ୍ଧ ତଡାଉ ଲାଗି ହୋଇ ବାମେ ଶାରବରସିରି
ନନ୍ଦିଘୋଷ ରଥୁବରେ ଆରୋହଣ
ଶ୍ରୀଭୁଜେ ଶଙ୍ଖଚକ୍ର ଧରି ।।

× × ×

ଶୁଣହେ ରସିକଜନେ ଜ୍ୟେଷ୍ଠ ପୂର୍ଣ୍ଣିମୀ ଦିନ ।
ଜ୍ୟେଷ୍ଠା ନକ୍ଷତ୍ର ସେକାଳେ ଚମକ ବାଜେ ସ୍ନାନ କୂଳେ ।

× × ×

ବୈଶାଖ ଶୁକ୍ଳ ତିଥି    ତୃତୀୟା ବୋଲି ବିଖ୍ୟାତ
ମାଳଗିରି ନୃପବର ଦେବନ୍ତି ଯେତେକ ।
ସକଳ ସାମନ୍ତ ଶିବ    ମିଳି ଚନ୍ଦନ ଉତ୍ସବ
ଆପଣେ ଅନନ୍ତ ସଙ୍ଗେ ଜଳଜାହମା ॥

× × ×

ନରେନ୍ଦ୍ରର କୂଳେ ବିଜେ    ଚମକ ନିଶାଣ ବାଜେ
ରୂପ ଆସି ତହିଁଯେ କଳ୍ପ ତୁରିତ ।
ଜଳକେଳି କରନ୍ତି ଯେବେ    ଅର୍ଜୁନ କେରୁଆଳ ଧରଇ ଭାବେ ।

— କଳ୍ପଲତା

ଏହିପରି ଭାବରେ ଦେଖିବାକୁ ଗଲେ ଓଡ଼ିଆ ସାହିତ୍ୟର ଅଧିକାଂଶ କାବ୍ୟରେ ଶ୍ରୀଜଗନ୍ନାଥଙ୍କ ମହିମା ବର୍ଣ୍ଣିତ ହୋଇଛି, କିନ୍ତୁ ଶ୍ରୀଜଗନ୍ନାଥଙ୍କ ଯାତ୍ରା, ମହିମା ପ୍ରଭୃତି ବର୍ଣ୍ଣିତ ହୋଇ ସ୍ୱତନ୍ତ୍ର କାବ୍ୟ ରଚିତ ହୋଇଥିବାର ଦୃଷ୍ଟାନ୍ତ ଓଡ଼ିଆ ସାହିତ୍ୟରେ ମଧ୍ୟ ଅଭାବ ନାହିଁ । ଓଡ଼ିଆ ସାହିତ୍ୟରେ ଭକ୍ତକବି ବଳରାମଦାସଙ୍କ ରଚିତ ଲକ୍ଷ୍ମୀପୁରାଣ ପୁସ୍ତକଟି ଏକ ପ୍ରାଚୀନତମ ଜଗନ୍ନାଥ ସାହିତ୍ୟ । ହିନ୍ଦୁଧର୍ମର ଆଚାରବିଚାର ସହିତ ଚଣ୍ଡାଳ ଘରେ ପ୍ରବେଶ କରିଥିବାରୁ ଶ୍ରୀମନ୍ଦିରରୁ ମହାଲକ୍ଷ୍ମୀଙ୍କ ବିତାଡ଼ନ । ବଳଭଦ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଧନ-ହୀନ ଅବସ୍ଥା ଓ ପରିଶେଷରେ ମହାଲକ୍ଷ୍ମୀଙ୍କ ନିକଟରେ ସେମାନଙ୍କର କ୍ଷମା ପ୍ରାର୍ଥନା କାହାଣୀରେ ଲକ୍ଷ୍ମୀପୁରାଣ ପୁସ୍ତକଟି ରଚିତ ହୋଇଛି । କିନ୍ତୁ କବି ବଳରାମଦାସ ଲକ୍ଷ୍ମୀପୁରାଣ ପୁସ୍ତକ ମାଧ୍ୟମରେ ଓଡ଼ିଶାର ରକ୍ଷଣଶୀଳ ହିନ୍ଦୁ ସମାଜରେ ଏକ ମହାନ୍ ସାମାଜିକ ବିପ୍ଳବର ସୂତ୍ରପାତ କରିଛନ୍ତି । ମଧ୍ୟଯୁଗୀୟ ଓଡ଼ିଶାରେ ଜାତିଆଣ ପ୍ରଥାର ଉଗ୍ରରୂପ ବିରୁଦ୍ଧରେ ଉଦାରପନ୍ଥୀ ବଳରାମଦାସ ଶ୍ରୀଜଗନ୍ନାଥ ଓ ମହାଲକ୍ଷ୍ମୀଙ୍କ ଅନ୍ତରାଳରେ ରହି ଶ୍ରୀମନ୍ଦିରର ବଡ଼ପଣ୍ଡାମାନଙ୍କୁ ପ୍ରତିଦ୍ୱନ୍ଦ୍ୱିତାମୂଳକ ଆହ୍ୱାନ ଜଣାଇଛନ୍ତି । ଜାତିଆଣ ପ୍ରଥା ବିରୁଦ୍ଧରେ କବିଙ୍କର ଉକ୍ତିରୁ ବେଶ୍ ଜଣାପଡ଼େ ଯେ, ସେ ସମାଜର ତଥାକଥିତ ଉଚ୍ଚବର୍ଗର ବ୍ୟକ୍ତିମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ତଦ୍‌ବ୍ୟତୀତ ମଧ୍ୟଯୁଗୀୟ ଓଡ଼ିଆ ସମାଜରେ ନାରୀର ସ୍ଥିତି ଯେପରି ଦୟନୀୟ ହୋଇଥିଲା, ତା' ବିରୁଦ୍ଧରେ ଭକ୍ତକବି ବଳରାମଦାସ ସ୍ୱର ଉତ୍ତୋଳନ କରି ନାରୀର ମହତ୍ତ୍ୱ ପ୍ରତିଷ୍ଠା ଲାଗି ଆପ୍ରାଣ ଚେଷ୍ଟାକରିଛନ୍ତି । ମହାଲକ୍ଷ୍ମୀଙ୍କ ଜିଦ୍ ଆଗରେ ବଡ଼ଠାକୁରଙ୍କ ମୁଣ୍ଡ ନୁଆଁଇ ଦେଇ କବି ପ୍ରତ୍ୟେକ ଓଡ଼ିଆ ଘରଣୀର କାନରେ ଆଶ୍ୱାସନାରେ ବାଣୀ ଶୁଣାଇବା ସଙ୍ଗେ ଏ ସମାଜରେ ନାରୀ ଜାଗରଣର ସୂତ୍ରପାତ କରିଛନ୍ତି ।

ଓଡ଼ିଆ ଜଗନ୍ନାଥ ସାହିତ୍ୟ ମଧ୍ୟରେ ପୁରୁଷୋତ୍ତମଦାସଙ୍କ କାଞ୍ଚିବିଜୟ କାବ୍ୟଟି ଖଣ୍ଡିଏ ଚମତ୍କାର ପୁସ୍ତକ । ପୁରୁଷୋତ୍ତମଦେବଙ୍କ କାଞ୍ଚିଅଭିଯାନ କଳାଘୋଡ଼ା ଧଳାଘୋଡ଼ାରେ ଚଢ଼ି ଶ୍ରୀଜଗନ୍ନାଥ ବଳଭଦ୍ରଙ୍କ ଯୁଦ୍ଧ ସ୍ଥଳକୁ ଗମନ ଓ ପଥମଧ୍ୟରେ ମାଣିକ ଗଉଡ଼ୁଣୀଠାରୁ ମହାପ୍ରଭୁଙ୍କର ଦହିଖିଆ କାହାଣୀ ଉପରେ ଆଧାରିତ । କାଞ୍ଚି-କାବେରୀ କାବ୍ୟଟି ଓଡ଼ିଆ ପାଠକ ପ୍ରାଣରେ ଜାତୀୟ ଭାବନାର ସ୍ରୋତ ଛୁଟାଇଦେଇ କାବ୍ୟଟିକୁ ଉପାଣିତ କରିବା ଇଚ୍ଛାରେ କବି ପୁରୁଷୋତ୍ତମ ମାଣିକ ଗଉଡ଼ୁଣୀ ଆଖ୍ୟାୟିକା ସୃଷ୍ଟି କରି ପରୋକ୍ଷରେ ଆଦରପର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ପ୍ରଭୁଙ୍କ ପତିତପାବନ ନାମର ସାର୍ଥକତା ସମ୍ପାଦନ କରିଛନ୍ତି । ବିଷୟବସ୍ତୁ ଦୃଷ୍ଟିରୁ ବିଚାରକଲେ କାଞ୍ଚିକାବେରୀ ହେଉଛି ଖଣ୍ଡିଏ ଐତିହାସିକ କାବ୍ୟ; କିନ୍ତୁ କବି ମାଣିକ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ହାସ ପରିହାସର ଯେଉଁ ଅବତାରଣା କରିଛନ୍ତି ତାହା ମୁଖ୍ୟତଃ ଶୁଦ୍ଧ ଭକ୍ତିଭାବର ପରିଚାୟକ । ବିଶୁଦ୍ଧ କୃଷ୍ଣଭକ୍ତ ରାୟରାମାନନ୍ଦଙ୍କ ମତରେ ତାହା ଅଚିନ୍ତ୍ୟ ଭେଦାଭେଦର ପରିଚାୟକ । କାବ୍ୟରେ ଶ୍ରୀଜଗନ୍ନାଥଙ୍କର ପରିହାସାତ୍ମକ ବାଣୀ ମାଣିକଠାରେ ରାଧାତ୍ୱ ଆରୋପ କରିଛି ଏବଂ ଶ୍ରୀଜଗନ୍ନାଥ ରସିକଶେଖର କୃଷ୍ଣରୂପରେ ମାଣିକର ମାନସ-ଚକ୍ଷୁରେ ପ୍ରତିଭାତ ହୋଇଛନ୍ତି । କିନ୍ତୁ ଉଭୟଙ୍କର ନିବେଦନ ଦୈହିକ ନୁହେଁ, ମାନସିକ ରାଗାନୁଗା ବା ଶୁଦ୍ଧାଭକ୍ତିଭାବରେ ଆପ୍ଳୁତ । ମାଣିକର ଆତ୍ମନିବେଦନ ପରି ମଧୁର ରସର ପରିବେଷଣ ସମଗ୍ର ବୈଷ୍ଣବ ସାହିତ୍ୟରେ ବିରଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ପୁରୁଷୋତ୍ତମ କାବ୍ୟର ଶେଷରେ ଶ୍ରୀଜଗନ୍ନାଥଙ୍କ ଠାରେ ଆତ୍ମ-ନିବେଦନ ପୂର୍ବକ ଲେଖିଛନ୍ତି—

"ସେ କାକଅା ରାଉତଙ୍କ ଭୃତ୍ୟଙ୍କ ଭୃତ୍ୟଦାସ ।
କରୁଣ ଦାସ ନାତି ମୁଁ ଯେ ଭାଗୀରଥି ଶିଷ୍ୟ ॥
ଯେ ଜଗନ୍ନାଥ ବଳଭଦ୍ର ସୁଭଦ୍ରା ସୁଦର୍ଶନ ।
ଏ ଚାରି ସାମନ୍ତରୁ ନ ଜାଣଇ ଆନ ॥
ତାହାଙ୍କ ଆଜ୍ଞାରେ ମୁଁ ବିରୋଧେ ନ ଡରି ।
ବଖାଣୁଅାଏ ପଦ ଯାହା ତାହା କରି ॥
ଶ୍ରୀଜଗନ୍ନାଥଙ୍କ କାଞ୍ଚିକାବେରୀ ରସ ।
ପୁରୁଷୋତ୍ତମ ଦାସ ସେବା ରାଉତଙ୍କ ପାଶ ॥"

ଓଡ଼ିଆ ସାହିତ୍ୟରେ ଅନ୍ୟ ଯେତେଖଣ୍ଡି ଜଗନ୍ନାଥ ସାହିତ୍ୟ ମିଳୁଛି ତନ୍ମଧ୍ୟରେ ଲୋକନାଥ ବିଦ୍ୟାଧରଙ୍କ ନୀଳାଦ୍ରି ମହୋତ୍ସବ ପୁସ୍ତକ ଅନ୍ୟତମ ଉପାଦେୟ କାବ୍ୟ । କବି ଲୋକନାଥ ବିଦ୍ୟାଧର ଗଜପତି ଦିବ୍ୟସିଂହ ଦେବ (ପ୍ରଥମ)ଙ୍କ ଅ ୧୪ଙ୍କ ଅର୍ଥାତ୍ ୧୬୯୯ ଖ୍ରୀଷ୍ଟାବ୍ଦରେ ନୀଳାଦ୍ରି ମହୋତ୍ସବ ପୁସ୍ତକ ରଚନା କରିଥିଲେ ।

ପୁସ୍ତକଟିର ୨୬ଟି ଛାନ୍ଦରେ ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିଭିନ୍ନ ଯାତ୍ରା ଏବଂ ଯାତ୍ରା ପରିଦର୍ଶନରେ ଆସୁଥିବା ଯାତ୍ରୀମାନଙ୍କର ଭାବ, ଭକ୍ତ, ଉକ୍ତି ତଥା ଯାତ୍ରା ସମସ୍ତର ବିଭିନ୍ନ ଶୋଭା । ରଥ, ଚନ୍ଦନଯାତ୍ରା, ଦୋଲୋତ୍ସବ ପ୍ରଭୃତିର ଆଡ଼ମ୍ବର ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । କବି ଲୋକନାଥ ବିଦ୍ୟାଧର ଭଞ୍ଜଯୁଗର ପୂର୍ବବର୍ତ୍ତୀ କବି ହୋଇଥିଲେ ମଧ୍ୟ ଭଞ୍ଜୀୟ ଶୈଳୀର ପରିପ୍ରକାଶ ପୂର୍ଣ୍ଣମାତ୍ରାରେ ତାଙ୍କ କାବ୍ୟରୁ ମିଳିଥାଏ ବିଭିନ୍ନ ଅଳଙ୍କାରର ସମାବେଶ ବିଶେଷତଃ ଶବ୍ଦାଳଂକାର ଯୋଜନାରେ କାବ୍ୟଟି ଅଳଂକୃତ ହୋଇଛି । ସ୍ଥଳ ବିଶେଷରେ ଭଞ୍ଜୀୟ ପରିପାଟୀକୁ କବି ଲୋକନାଥ ବିଦ୍ୟାଧର ପ୍ରଭାବିତ କରିଥିବା ପରି ମନେହୁଏ । ପରିଶେଷରେ କବି ସ୍ୱ-ପୃଷ୍ଠପୋଷକ ରାଜା ଦିବ୍ୟସିଂହଦେବଙ୍କ ନାମ ଓ ତାଙ୍କ ଚତୁର୍ଦ୍ଦଶ ଅଙ୍କରେ କାବ୍ୟରଚନା କରିଥିବାର ପ୍ରମାଣ ସ୍ୱରୂପ କେତୋଟି ପଦ ଉଲ୍ଲେଖ କରିଛନ୍ତି ।

"ଆଜ୍ଞା ଦିବ୍ୟସିଂହଦେବ,
ଦିବ୍ୟସିଂହ ପରି ବାରଣ ଦାରଣ ଏ ନରେଶ,
ଚତୁର୍ଦ୍ଦଶ ଅଙ୍କରେ,
ଯେହ୍ନେ କମ୍ବୁକଣ୍ଠକ କଣ୍ଠକରେ,
ହୋଇଛି ଏ ବିରଚିତ ॥

× × ×

ଜଗତ ହିତରେ ଦାରୁ କଳେବର ଧରି ।
ନୀଳାଚଳେ ବିଜେ କରିଅଛନ୍ତି ଦଇତାରି ॥
ଉଚ୍ଛବମାନଙ୍କୁ କରିବାକୁ ସେ କାରଣ ।
ଏମନ୍ତ ପ୍ରଭୁ ଥାଉଁ ଥାଉଁ ଜନେ ଏଡ଼େ ଅଜାଣ ॥

× × ×

ଏବଂଭୂତ ଦେବଦେବ ଦିବ୍ୟସିଂହ ଦେବ ।
ତାହାଙ୍କ ମହିମା ଲବ କେ କହିପାରିବ ॥
ଏ ନରେଶ ଚତୁର୍ଦ୍ଦଶ ଅଙ୍କରେ ଗୀତ ।
କମ୍ବୁକଣ୍ଠକରେ ହୋଇଅଛି ବିରଚିତ ॥

× × ×

ମନଦେଇ ଶୁଣ ଭଗବଦଗଧ ଜନ ।
ନୀଳାଦ୍ରି ମହୋତ୍ସବ ନାମେ ଗୀତ ହେଲା ପୂର୍ଣ୍ଣ ॥"

— ନୀଳାଦ୍ରି ମହୋତ୍ସବ ।

ଓଡ଼ିଆ ସାହିତ୍ୟରେ କୃଷ୍ଣଦାସ ବା ଦୀନକୃଷ୍ଣଦାସ ନାମରେ ପାଞ୍ଚଜଣ କବିଙ୍କର ସନ୍ଧାନ ମିଳେ । ତନ୍ମଧ୍ୟରେ ରସକଲ୍ଲୋଳକାର କୃଷ୍ଣଦାସ ଓ ରସବିନୋଦକାର କୃଷ୍ଣଦାସ ଦୁଇଜଣ ବିଶେଷ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ରସକଲ୍ଲୋଳକାର କୃଷ୍ଣଦାସ ଜଣେ ପ୍ରସିଦ୍ଧ ସଙ୍ଗୀତଜ୍ଞ ଥିଲେ । ଖୁବ୍ ସମ୍ଭବତଃ ସେ ଗୀତପ୍ରକାଶ ଶୀର୍ଷକ ସଙ୍ଗୀତ ଗ୍ରନ୍ଥର ପ୍ରଣେତା କୃଷ୍ଣଦାସ ବଡ଼ଜେନା ମହାପାତ୍ର ହୋଇପାରନ୍ତି । ଶ୍ରୀରାଧାକୃଷ୍ଣଲୀଳା ସମ୍ବଳିତ ରସକଲ୍ଲୋଳକାବ୍ୟ ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ରତ୍ନ । କବି ରସକଲ୍ଲୋଳର ଅନେକ ଗ୍ରନ୍ଥରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବେଶ ଓ ଯାତ୍ରାଦି ବର୍ଣ୍ଣନା ମଞ୍ଜୁଳ ଶୈଳୀରେ କରିଛନ୍ତି । କିନ୍ତୁ ରସବିନୋଦକାର କୃଷ୍ଣଦାସ ଜଗମୋହନଗ୍ରନ୍ଥ ନାମରେ ଏକ ସ୍ୱତନ୍ତ୍ର ଜଗନ୍ନାଥ କାବ୍ୟ ରଚନା କରିଛନ୍ତି । ତାଙ୍କ ରଚିତ ଗୁଣ୍ଡିଚାଭିଜନା ଚଉତିଶା, ସ୍ନାନପୂର୍ଣ୍ଣିମା ଚଉତିଶା ପ୍ରଭୃତି କେତୋଟି କବିତା ମିଳୁଥିଲେ ହେଁ କେବଳ ଜଗନ୍ନାଥ ଚରିତାମୃତକୁ ଅବଲମ୍ବନକରି ଜଗମୋହନ ଗ୍ରନ୍ଥ ରଚିତ ହୋଇଛି । ସେ ଚତୁର୍ଦ୍ଦଶ ଗ୍ରନ୍ଥରେ ପରିଷ୍କାର ଭାବରେ ଲେଖିଛନ୍ତି—

ଜଗନ୍ନାଥ ଚରିତ ଅମୂଲ୍ୟ ରସ ମଣି ।
ସବୁଠାରୁ ଭରସା ତା' କରିଅଛୁ ଜାଣି ॥
ଦୁସ୍ତରକାଳ ଚକ୍ରାରୁ ତରିବାକୁ ମୁହିଁ ।
ଅହର୍ନିଶ ହୃଦ ସମ୍ପୁଟରେ ରଖିଥାଇ ॥
ଜଗନ୍ନାଥ ନାମ ମୋର ପରମ ମଙ୍ଗଳ ।
ଜଗନ୍ନାଥ ନାମ ମୋର ସବୁଠାରୁ ବଳ ॥

× × ×

ଜଗନ୍ନାଥ ନାମ ମୁକ୍ତିବାଟ ସୁନାଶୀର ।
ବୋଲେ ଦୀନକୃଷ୍ଣଦାସ ଜଗନ୍ନାଥ କୃପାକର ॥

ଭକ୍ତ ପ୍ରବର ସାଲବେଗଙ୍କ ନାମରେ ଭଣିତ ଏ ପର୍ଯ୍ୟନ୍ତ କୌଣସି ସ୍ୱତନ୍ତ୍ରଗ୍ରନ୍ଥ ମିଳୁ ନ ଥିଲେ ହେଁ, କବିଙ୍କକୃତ ଶତାଧିକ ଭଜନାବଳୀର ସନ୍ଧାନ ମିଳୁଛି । କବି ସପ୍ତଦଶ ଶତାବ୍ଦୀର ପରିବେଶ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ଚରିତ ଅବଲମ୍ବନରେ ଭଜନ ରଚନାକରି ଖ୍ୟାତିଲଭ କରିବା ବାସ୍ତବିକ ଏକ ଦୁଃସାହସିକ ପଦକ୍ଷେପ । ଭକ୍ତିଭାବନା ଦୃଷ୍ଟିରୁ ହେଉ କିମ୍ବା କାନ୍ତକୋମଳ ପଦାବଳୀ ଯୋଜନା ଯୋଗୁଁ ହେଉ ତାଙ୍କ କୃତ ଭଜନଗୁଡ଼ିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବିଶେଷ ସମାଦୃତ ହୁଏ । ତାଙ୍କ ରଚିତ—

"ଅହେ ନୀଳ ଶଇଳ ପ୍ରବଳ ମତ୍ତବାରଣ ।"

× × ×

"ଦୀନବନ୍ଧୁ ହେ ଗୋସାଇଁ" ।

× × ×

"କେଉଁଣେ ଘେନଯାଉଛ ଜଗନ୍ନାଥଙ୍କୁ" ପ୍ରଭୃତି ରଚନା ସବୁଶ୍ରେଣୀର ଜନସାଧାରଣଙ୍କ ଦ୍ୱାରା ଅଦୃତ ହୋଇଛୁ । ଅଦ୍ୟାପି କବିଙ୍କ ରଚିତ ଆହୁରି ଅନେକ ଶ୍ରୀଜଗନ୍ନାଥଙ୍କ ଭଜନ ଅପ୍ରକାଶିତ ଅବସ୍ଥାରେ ରହିଛି ।

"ସୁନ୍ଦର ବଦନ ପଙ୍କଜ ଢୋଳା
ଦରଶନେ ନକର ହେଳା ।
କର୍ଣ୍ଣରେ କୁଣ୍ଡଳ ଗଳେ ଚନ୍ଦ୍ରହାର
ଚନ୍ଦ୍ରସାର ହୋଇ ଲମ୍ବିଛି ମାଳା ।

× × ×

ଜଗନ୍ନାଥ ପ୍ରଭୁ ଏହି ଦେଉଳରେ
ଏତେ ପ୍ରଭୁ ଆଉ ନଥିବେ ପରା,
ନୀଳାଞ୍ଚଳେ ଦାରୁସ୍ୱରୂପେ ବିଜେଏ
ନାମ ସଂକୀର୍ତ୍ତନେ ହୋଇଲ ଭୋଳା,
କହେ ସାଲବେଗ ଜାତିରେ ଯବନ,
ଭବସାଗରକୁ ତୋ ନାମ ଭେଳା ॥

× × ×

ଆଗୋ, ବନ୍ଧନ ଦିବ, ପଙ୍କଜ ଢୋଲା ଦେଖିବ
ସିଂହ ଦୁଆର ପାଳ, ଯେବେ କରବେ ଗୋଳ
ପେଲପଶିବ ନ ଘୁଞ୍ଚିବ ।

× × ×

ନବୀନ ଘନବରନ ପ୍ରଭୁ ଚକାଆଖି
ମୋ ହୃଦସ୍ତ ବେଦନାକୁ ତୁମ୍ଭେ ସିନା ସାକ୍ଷୀ ।
ଡାହାଣେ ଶ୍ରୀ ବଳଭଦ୍ର ମଧ୍ୟରେ ବହେଣୀ
ବସିଛନ୍ତି ଜଗନ୍ନାଥ ଶଙ୍ଖ ଚକ୍ର ଘେନି ।
ଦେହ ତ ବଢ଼ିଲ ପ୍ରଭୁ କେତେ ଭୋଗ ଖାଇ
ଛନ ରଥ ସାଜ ଗାଜ ବଡଦାଣ୍ଡେ ଯାଉ ।

× × ×

କହେ ସାଲବେଗ ହୀନ ଜାତିରେ ଯବନ
ତୁମ୍ଭ ଶ୍ରୀଚରଣ ବିନୁ ଜାଣେ ନାହିଁ ଆନ ।"

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଶ୍ରୀଜଗନ୍ନାଥଙ୍କ ଭଜନ ରଚନା କରିବାରେ ବହୁ ଖ୍ୟାତନାମା କବି କୃତିତ୍ୱ ଦେଖାଇଛନ୍ତି । ହାଡ଼ିଲାଦାସ, ପଞ୍ଚସଖା, ରାୟ ରାମାନନ୍ଦ, ମାଧବୀ ଦାସୀ ପ୍ରଭୃତି କବିଙ୍କ ପଦାଙ୍କ ଅନୁସରଣ କରି ପରବର୍ତ୍ତୀ କାଳରେ, ବିଶେଷତଃ ଅଷ୍ଟାଦଶ ଶତାବ୍ଦୀରେ ବହୁ କବି ଭଜନ, ଜଣାଣ ଓ ଚଉତିଶା ରଚନା କରି ଶ୍ରୀ ଜଗନ୍ନାଥ ମହିମା କୀର୍ତ୍ତନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭଜନ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । କିନ୍ତୁ ଯେଉଁ କବିମାନେ ଶ୍ରୀଜଗନ୍ନାଙ୍କ ଯାତ୍ରାଦିର ବର୍ଣ୍ଣନା କରି ସ୍ୱତନ୍ତ୍ର ଗ୍ରନ୍ଥ ରଚନା କରିଛନ୍ତି ସେମାନଙ୍କ ମଧ୍ୟରେ ଦାମ ଦାସଙ୍କ ଦେଉଳ ତୋଳା, ବିଦ୍ୟାପତି ଚରିତ, ପୁରୁଷୋତ୍ତମ ଦାସଙ୍କ ଗୁଣ୍ଡିଚା ବିଜୟ, କୃପାସିନ୍ଧୁ ଦାସଙ୍କ ଚତୁର୍ଦ୍ଧା ମୂର୍ତ୍ତି ବର୍ଣ୍ଣନ, ବିପ୍ର ରାମ ଦାସଙ୍କ ଗୁଣ୍ଡିଚା ଉତ୍ସବ ବର୍ଣ୍ଣନା, ଶିଶୁ ଦାମ ଦାସଙ୍କ ନେତ୍ରୋତ୍ସବ ବର୍ଣ୍ଣନା, ଧରମୁ ଦାସଙ୍କ ବାହୁଡ଼ାଯାତ୍ରା ବର୍ଣ୍ଣନା, ରାମ ଦାସଙ୍କ ବଳଭଦ୍ର ବୋଲି, କାଶୀ ଦାସଙ୍କ ସ୍ନାନଯାତ୍ରା ଓ ଗୁଣ୍ଡିଚା ବିଜେ, କରୁଣାକର ଦାସ, ସୁଦାମ ଦାସ ଦେବ ନାରାୟଣ ଓ ଗଦାଧର ଦାସଙ୍କ ଲକ୍ଷ୍ମୀ ପୁରାଣ ପ୍ରଭୃତି ବହୁ ଗ୍ରନ୍ଥର ନାମ ଉଲ୍ଲେଖଯୋଗ୍ୟ ।

ପଦ୍ୟାବଳୀକାର କବି ବନମାଳୀଙ୍କ ନାମରେ ବହୁ ଜଗନ୍ନାଥ ଭଜନ ଭଣିତା ହୋଇଥିବାର ଦେଖିବାକୁ ମିଳେ । ଅବଶ୍ୟ ତନ୍ମଧ୍ୟରେ ବିଶେଷତଃ "ବାଟ ଗୁଡ଼ ସୁଘଟ ନାଗର, ଯମୁନା ଟିକି ନୀର ଆଣିକି" "କିଛି ମାଗୁନାହିଁ ମୁଁ ତୋତେ" ପ୍ରଭୃତି କେତୋଟି ସାଲବେଗଙ୍କ ଦ୍ୱାରା ରଚିତ ବୋଲି ପ୍ରମାଣିତ ହୋଇସାରିଛି । ତଥାପି କେତୋଟି ଉପାଦେୟ ଭଜନ "ଆହେ ପ୍ରଭୁ କଳାଶ୍ରୀମୁଖ", "ମହାବାହୁ ଏହି କଥାରେ ମୋ ମନ" ପ୍ରଭୃତି ମର୍ମସ୍ପର୍ଶୀ ଭଜନ ବନମାଳୀଙ୍କ ଦ୍ୱାରା ରଚିତ ହୋଇଛି ।

ଅଷ୍ଟାଦଶ ଶତାବ୍ଦୀ ଓ ଊନବିଂଶ ଶତାବ୍ଦୀରେ ରଚିତ ଅନ୍ୟାନ୍ୟ କବିମାନଙ୍କ ଜଗନ୍ନାଥ ଭଜନଗୁଡ଼ିକ ମଧ୍ୟରେ ବୀରକେଶରୀ ଦେବ ମହାରାଜାଙ୍କ ନାମରେ ଭଣିତ "ଦୀନବାନ୍ଧବ ହେ ଭୂଜତଳେ ମୋତେ ରଖ", ମାଧବ ଦାସଙ୍କ "କାହିଁପାଇଁ ମନ ହେଲୁ ବାଉଳା, ଚିହ୍ନି ନ ପାରିଲୁ ପଙ୍କଜ ଡୋଳା", କବି ସଦାନନ୍ଦଙ୍କ "ଜୟ ନୀଳାଦ୍ରି ବିହାରୀ ଦୀନବନ୍ଧୁ", କବି ଚଣ୍ଡୀ ଦାସଙ୍କ "ଭଜମନ ଜଗନ୍ନାଥଙ୍କୁ, ନୀଳାଚଳବାସୀ ଜଗନ୍ନାଥଙ୍କୁ" ଗୌରଚରଣ ଅଧିକାରୀଙ୍କ "ନୀଳାଚଳେ ହେ ଦେଖ ଉଡ଼ୁଛି ବାନା, ପତିତପାବନ ନାମଟି ଯା ନାଁ" କିମ୍ବା "କାଳିଆ କାହ୍ନୁ ଆଉ ବିଳମ୍ବ କାହିଁକି, ବରଷକେ ଥରେ ବିଜୟ ରଥରେ ପତିତ ତାରିବା ପାଇଁକି" ତଥା କବିସୂର୍ଯ୍ୟ ଗୋପାଳକୃଷ୍ଣ, ରାଜକବି ଶ୍ୟାମସୁନ୍ଦର ପ୍ରଭୃତିଙ୍କର ରଚନା ଅଦ୍ୟାପି ଓଡ଼ିଆ ଭକ୍ତଜନତା ତଥା ଆକାଶବାଣୀ ମାଧ୍ୟମରେ ପ୍ରଚାରିତ ହେଉଛି ।

ଖ୍ରୀଷ୍ଟୀୟ ୧୮୬୦ ସାଲରେ ରାଜକବି ଗୋପୀନାଥ ସିଂହ, ନୀଳାଦ୍ରି ବିହାର ନାମକ ଖଣ୍ଡିଏ ତେଇଶ ଛାନ୍ଦ ବିଶିଷ୍ଟ ଶ୍ରୀଜଗନ୍ନାଥ କାବ୍ୟ ଲେଖିଛନ୍ତି । ସେଥିରେ ସେ

ପୁର ଓ ନଗର ଶୋଭାବର୍ଣ୍ଣନା, ଶ୍ରୀକ୍ଷେତ୍ରର କୁଣ୍ଡ ଓ ବଟ ମହିମା, ଶିବ ଓ ଶକ୍ତିଙ୍କ ମହିମା, ରାଜନୀତି, ବଡଠାକୁରଙ୍କ ବଡସିଂହାର ବେଶ, ହିମ ଋତୁ ଓ ଓଡଣ ଷଷ୍ଠୀ, ବସନ୍ତ ଓ ଦୋଳଯାତ୍ରା, ଦମନକଯାତ୍ରା, ଗ୍ରୀଷ୍ମ ଋତୁ ଓ ଚନ୍ଦନଯାତ୍ରା, ସ୍ନାନଯାତ୍ରା, ନେତ୍ରୋତ୍ସବ, ପହଣ୍ଡି ବିଜେ, ହାଟବର୍ଣ୍ଣନା, ରଥ ଉପରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ଶୋଭାବର୍ଣ୍ଣନା, ରଥଦମ୍ଭାର, ହେରାଯାତ୍ରା ଓ ଲକ୍ଷ୍ମୀଙ୍କ ଗମନ, ବର୍ଷାଋତୁ ଓ ବିରହିଣୀ ନାୟିକା ବର୍ଣ୍ଣନା, ବାହୁଡା ଓ ଲକ୍ଷ୍ମୀନାରାୟଣ ଭେଟ ଏବଂ ପରିଶେଷରେ ଶରତଋତୁ ତଥା ପ୍ରମୋଦ ବର୍ଣ୍ଣନାକରି କାବ୍ୟଟିକୁ ସମ୍ପୂର୍ଣ୍ଣ କରିଛନ୍ତି ।

କବି ନିଜ ବିଷୟରେ ପରିଚୟ ଦେବାକୁ ଯାଇ ଲେଖିଛନ୍ତି—

“ଏହି ରୂପେ ମାଳଗିରି ବିହାର ସମ୍ପୂର୍ଣ୍ଣ ।
କଲି ମୋର ଦୋଷ ନ ଧରିବ ବୁଧଜନ ॥

× × ×

ଯୁଗ ଅଭ୍ରଗିରିଚନ୍ଦ୍ର ସଂଖ୍ୟା ଶକାବ୍ଦରେ
କର୍କଟମାସ ବିରୋଧୀ ନାମ ସମ୍ବତ୍ସରେ ଯେ ॥
ପୂର୍ଣ୍ଣ କଲି ଏହୁ ଗୀତ ବୁଧନର ହିତେ ।
ଦୋଷଥିଲେ ରୋଷ ନ ହେବନ ଧୀର ଚିତ୍ତେ ହେ ॥”

ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଗ୍ରନ୍ଥଭଣ୍ଡାର ମନ୍ଥନ କଲେ ଶ୍ରୀଜଗନ୍ନାଥଙ୍କ ଚରିତ ଅବଲମ୍ବନରେ ଆହୁରି ଶହ ଶହ କବିଙ୍କ ବହୁସଂଖ୍ୟକ କାବ୍ୟ ମିଳିପାରିବ । ଜାତୀୟଚେତନାର ପ୍ରତୀକ ସଂସ୍କୃତିର ମୂର୍ତ୍ତିମନ୍ତ ସ୍ୱରୂପ ଶ୍ରୀଜଗନ୍ନାଥ ଯୁଗ ଯୁଗ ଧରି ଏ ଜାତିକୁ ପ୍ରତ୍ୟେକ କ୍ଷେତ୍ରରେ ପ୍ରେରଣା ଦେଇଆସିଛନ୍ତି । ଯାହା ଫଳରେ ଶ୍ରୀଜଗନ୍ନାଥଙ୍କୁ ଅବଲମ୍ବନ କରି ଶହ ଶହ ପୁସ୍ତକ, ହଜାର ହଜାର ଭଜନ, ଚଉତିଶା, ଚଉପଦୀ ପ୍ରଭୃତି ରଚିତ ହୋଇପାରିଛି । କେବଳ ସେତିକି କାହିଁକି ଉତ୍ତର ଭାରତର ସନ୍ଥକବି କବୀର ଦାସ ଉଚ୍ଛ୍ୱସିତ କଣ୍ଠରେ ଗାଇଛନ୍ତି—

“ଠାକୁର୍ ଭଲେ ବିରାଜୋ ଉଡ଼ୀଶା ଜଗନ୍ନାଥ ପୁରୀ” ବିଦେଶାଗତ ଭକ୍ତମାନଙ୍କର ମନୋରଞ୍ଜନ ନିମିତ୍ତ ବହୁ ଭାଷାବିତ୍ ଓ କବି ବ୍ରଜନାଥ ବଡଯେନା ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଦଶକରେ ଗୁଣ୍ଡିଚା ବିଜେ ଶୀର୍ଷକ ଗୋଟିଏ ପ୍ରାଚୀନ ହିନ୍ଦୀକାବ୍ୟ ରଚନା କରିଛନ୍ତି । ସେଥିରେ ସେ ରଥଯାତ୍ରାରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଶୋଭାବର୍ଣ୍ଣନାକରି ଲେଖିଛନ୍ତି—

"ଦେଖ ଓ ବଳଦେବ ତାଳଧ୍ୱଜ     ରଥରଥୀ କାମପାଳ,
ଧବଳବରନ ଦନ୍ତିତକୋଳ     ମନ୍ଦ ମନ୍ଦହାସୀ,
କାଦମ୍ବରୀ ମଦରମତ୍ତ     ବହନ୍ତ କରୁଣା ରାଶି,
ପ୍ରବଲ ଅମଲ ଘୂର୍ମିତ ନେତ୍ର ।
ଯାକେ ନାହିଁ ବୈର ମିତ୍ର ॥
ରେବତୀପତି କୁମୁଦ ଚନ୍ଦ୍ର,
ମଙ୍ଗଳମସ୍ତୁ ହରଷକନ୍ଦ ।

ବୃନ୍ଦାରକ ବୃନ୍ଦବଣ୍ୟ ସୁନ୍ଦର ନୀଳବାସୀ

× × ×

ଓ୍ୱ ଦେବୀ ସୁଭଦ୍ରା ଭଏ ଭକ୍ତ ଭଦ୍ରା
ସର୍ବୋଂ ଲୋକମାତା ଭବାନୀ ଦସ୍ତାଦ୍ରୀ ॥
ବଲ୍ଲୀ ହେମଗୋଷ୍ଠୀ ସଦା ହେ କଶୋଷ୍ଠୀ,
ସୁକେଶୀ ବିଳାସୀ ଅନାଶୀ ଅଛିଦ୍ରା ।

× × ×

ନନ୍ଦନନିକେତନ ସ୍ୟନ୍ଦନପର ବୈଠତ କୋ ଜଗନ୍ନାଥସୋ ପ୍ୟାରେ ।
ବାଦଲକାଲ କଲ୍ମୂଜ କାନ୍ତ ସୁକାନ୍ତ କଲମୁଖ ରାଜତ ପ୍ୟାରେ ॥
ରୁରୁ ନଲଧର ଗୁଁଦ ବସ୍ତ୍ରବର ଲଲପ୍ରବାଲ ଜବାଧର ତାରେ ।
ଆପ ବିଶାଳଭୁଜ ଦୋଉ ତୋଲ କେ ଦୀନ କୋ ରାଖନେ କୋ
ପୁକାରେ ।

ଏହିପରି ଭାବରେ ଦେଖିବାକୁ ଗଲେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ ମଧ୍ୟରେ ଜଗନ୍ନାଥ ସାହିତ୍ୟ ସମ୍ବନ୍ଧରେ ବିଶେଷ ଆଲୋଚନା ପର୍ଯ୍ୟାଲୋଚନା ଆବଶ୍ୟକ ।

# ଶ୍ରୀଜଗନ୍ନାଥଙ୍କ ସେବାପୂଜା

ଦେବାଧିଦେବ ପ୍ରଭୁ ଜଗତର ନାଥ ନୀଳାଦ୍ରିବିହାରୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମନ୍ଦିର ବଡ଼ଦେଉଳ ନାମରେ ବିଶ୍ୱରେ ଖ୍ୟାତିଲାଭ କରିଛି । କେବଳ ଦେଉଳ ବଡ଼ ନୁହେଁ, ତାଙ୍କ ଭୋଗ ବଡ଼ଭୋଗ ବା ମହାପ୍ରସାଦ, ତାଙ୍କ ଦାଣ୍ଡ ବଡ଼ଦାଣ୍ଡ, ତାଙ୍କ ବେଶ ବଡ଼ସିଂହାର ବେଶ ଓ ସେ ନିଜେ ବଡ଼ଠାକୁର, ବିଶ୍ୱଜନତାର ଆରାଧ୍ୟ ଶ୍ରୀଜଗନ୍ନାଥ ରୂପେ କେଉଁ ଆଦିମ କାଳରୁ ନୀଳଗିରିରେ ବାସ କରିଛନ୍ତି । ଜଗତର ଶ୍ରେଷ୍ଠ ସମ୍ମାନାସ୍ପଦ ସ୍ଥାନରେ ଅଧିଷ୍ଠିତ କରାଇ ବିଶ୍ୱଜନତା ରାଜକୀୟ ବିଧିରେ ତାଙ୍କର ପୂଜାର୍ଚ୍ଚନାର ବ୍ୟବସ୍ଥା କରିଛନ୍ତି । ତେଣୁ ବ୍ରାହ୍ମମୁହୂର୍ତ୍ତରୁ ଆରମ୍ଭ କରି ନିଶାର୍ଦ୍ଧ ପର୍ଯ୍ୟନ୍ତ ଯେତେ ପ୍ରକାର ବିଧିବିଧାନ ଶ୍ରୀମନ୍ଦିରରେ ଅନୁଷ୍ଠିତ ହୁଏ ତାହା ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ । ପ୍ରକୃତରେ ଦେଖିବାକୁ ଗଲେ ସେହି ନୀତିଗୁଡ଼ିକ ଅତିମାନବୀୟ ଭାବଧାରାରେ ପରିପୂର୍ଣ୍ଣ । ଶ୍ରେଷ୍ଠ ସମ୍ମାନର ଅଧିକାରୀ ଜଣେ ରାଜଚକ୍ରବର୍ତ୍ତୀଙ୍କ ଅଙ୍ଗସେବା ଲାଗି ଯେତେ ପ୍ରକାର ଆୟୋଜନ କରାଯାଏ, ବଡ଼ଠାକୁରଙ୍କ ସେବା ପୂଜା ଅନୁରୂପ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବରଂ କେତେକାଂଶରେ କୌତୂହଳୋଦ୍ଦୀପକ ।

ଶ୍ରୀମନ୍ଦିର ବିଧିବିଧାନ ଅନୁସାରେ ସମସ୍ତ ସେବକ ଓ ସେବାୟତମାନଙ୍କୁ ଡାକିବାର ବ୍ୟବସ୍ଥା ରହିଛି । ଜଣେ ଲୋକ ସେଦିନର ପ୍ରତ୍ୟେକ ସେବକଙ୍କ ଘରକୁ ଯାଇ ଡାକିଦିଏ । ଶ୍ରୀମନ୍ଦିରର ଭାଷାରେ ସେ ସେବକଙ୍କୁ "ପାଇକ" କୁହାଯାଏ । ଭିତରଛୁ ମହାପାତ୍ର, ପାଳିଆ ମେକାପ, ପ୍ରତିହାରୀ, ଅଖଣ୍ଡ ମେକାପ୍ ଆସି ଉପସ୍ଥିତ ହେଲେ ସେମାନଙ୍କ ଆଗରେ ସିଂହଦ୍ୱାରର ଚାବି "ମୁଦୁଲି" ନାମକ ସେବକ ଖୋଲନ୍ତି । ଭିତରଚ୍ଛୁ ମହାପାତ୍ର ଭିତରକୁ ଗଲେ ବଡ଼ଛତା ମଠର ବାଦ୍ୟକାରମାନେ ବାଜା ବଜାଇ ଭିତରକୁ ଯାଆନ୍ତି । ପୂର୍ବରାତ୍ରିର ପହୁଡ଼ବେଳେ ତଳିଛ ମହାପାତ୍ର, ଜୟ ବିଜୟ ଦ୍ୱାରରେ ଯେଉଁ "ମୁଦ" ଦେଇଥାନ୍ତି ତାହା ଅକ୍ଷୁର୍ଣ୍ଣ ଅଛି କି ନାହିଁ ଭିତରଛୁ ମହାପାତ୍ର ପରୀକ୍ଷା କରି ଦେଖନ୍ତି ଏବଂ ତତ୍ପରେ ଜୟବିଜୟ ଦ୍ୱାର ଖୋଲେ । ସେ ଦ୍ୱାର ଖୋଲି ସାରିବା ପରେ ପ୍ରତିହାରୀ ଭିତରୁ କବାଟ ବନ୍ଦ କରି ଦିଅନ୍ତି । "ଅଖଣ୍ଡ ମେକାପ" ଭିତରେ ଦୀପ ଲଗାନ୍ତି । ଦୀପ ଲାଗିସାରିବା ପରେ ଜୟବିଜୟ ଦ୍ୱାର ଖୋଲେ । ସେ ସମୟରେ

ଉପସ୍ଥିତ ପ୍ରତ୍ୟେକ ସେବକ ଶ୍ରୀମନ୍ଦିରର ପବିତ୍ରତା ପ୍ରତି ଦୃଷ୍ଟି ଦେଇ ଚ୍ଛଣଆଡେ ନିରୀକ୍ଷଣ କରନ୍ତି ।

'ଖଟଶେଯ ମେକାପ' ନାମକ ସେବକ ପୂର୍ବଦିନ ଶ୍ରୀଜଗନ୍ନାଥଙ୍କ ଶଯ୍ୟା ପାଇଁ ତିନୋଟିଯାକ ପଲଙ୍କ ଉଠାଇ ଏବଂ ଶୟନ ସମୟରେ ବ୍ୟବହୃତ ହେଉଥିବା ସୁବାସିତ ଜଳ ପ୍ରଭୃତି ଦ୍ରବ୍ୟଗୁଡ଼ିକୁ ଭଣ୍ଡାର ଗୃହରେ ରଖି ଦିଅନ୍ତି । ଭଣ୍ଡାର ମେକାପ କର୍ପୂର-ଦାନରେ କର୍ପୂର ରଖନ୍ତି । ସୁଆର, ବଡ଼ୁ, ସେବକ ତିନୋଟି ନିର୍ଦ୍ଦିଷ୍ଟ ରୂପା ଥାଳି ନେଇ ସେଥିରେ ପିଷ୍ଟକ ଆଳତି ଓ ଏକୋଇଶଟି ବତି ରଖି ଯୋଗାଇ ଦିଅନ୍ତି । ଦହି ଓ ଗୁଆଳ ଚୂର୍ଣ୍ଣର ମିଶ୍ରଣକୁ ପିଷ୍ଟକ ଆଳତି କୁହାଯାଏ । ଗରାବଡ଼ୁ ଉପାଧିଧାରୀ ସେବକ ଝରି (ଗଡ଼ୁ) ରେ ଜଳ ଆଣି ଯୋଗାନ୍ତି । ଶ୍ରୀଜଗନ୍ନାଥଙ୍କର ସେବାପୂଜା ପାଇଁ ଯେତେ ଜଳ ଆବଶ୍ୟକ ହୁଏ ସେ ସମସ୍ତ ଜଳ ବିମଳାଦେବୀଙ୍କ କୂଅରୁ ଆସେ । ତିନିଜଣ ପୁଂହାରୀ ଯାଇ କର୍ପୂର ଆଳତି, ଏକୋଇଶ ବତି, ଆଳତି ଏବଂ ପିଷ୍ଟକ ଆଳତି ପର୍ଯ୍ୟାୟକ୍ରମେ କରନ୍ତି । ଏହାକୁ ମଙ୍ଗଳ ଆଳତି କୁହାଯାଏ । ଏହି ମଙ୍ଗଳ ଆଳତି ପ୍ରସାଦ ଆଳତି ପରେ 'ଚର୍ଚ୍ଚାବାଲ' ଗ୍ରାଜନଅରରେ ଦିଅନ୍ତି । ତା'ପରେ ସିଂହାସନ ଉପରକୁ ଉଠି ଠାକୁରଙ୍କର ପୂର୍ବଦିନର ବଡ଼ସିଂହାର ବେଶ ମଇଲମ କରନ୍ତି । ମାଳ ଓ ବସ୍ତ୍ର ଆଦି କଢ଼ାଯିବାକୁ "ମଇଲମ" କୁହାଯାଏ । ସମସ୍ତ ବେଶ ଉଲ୍ଲଗି ସାରିବା ପରେ ସୂତା ତଡ଼ପ ଲାଗି କରନ୍ତି । ତାପରେ ସୁଆର ବଡ଼ୁ "ଅମୁଣିଆ" ପାଣି ପକାଇ ଘର ପରିଷ୍କାର କରନ୍ତି । ଏହି ଘର ଧୋଇବା ଓ ପ୍ରକ୍ଷାଳନ କରିବା ଶବ୍ଦ କାଳକ୍ରମେ 'ଧୋ ପଖାଳ'ରେ ପରିଣତ ହୋଇଛି । "ଧୋ ପଖାଳ" ପାଇଁ ଯେତେ ଜଳ ଆବଶ୍ୟକ ପଡ଼େ ସେ ସମସ୍ତ ଜଳ "ପାଣିଆପଟ" ନାମକ ସେବକ ଯୋଗାଇ ଥାଆନ୍ତି । ଧୋ ପଖାଳ ପରେ ସୁଆର ବଡ଼ୁ ତିନୋଟି ମେଳ ଓ ତିନୋଟି ପିଢ଼ା ପକାଇ ଦିଅନ୍ତି । ଗରାବଡ଼ୁ ତିନୋଟି ଝରିରେ ପାଣି ରଖନ୍ତି । "ଆସ୍ଥାନ ପ୍ରତିହାରୀ" ସେବକ କଂସା ଦର୍ପଣ ତିନୋଟି, ତିନୋଟି ଥାଳିଆରେ କଚ୍ଛ ଫୁଲ ଓ ଶଙ୍ଖ ବଉଠି ତିନୋଟି ରଖି ଦିଅନ୍ତି । ଉକ୍ତ ସ୍ନାନକର୍ମରେ ବ୍ୟବହୃତ ହେଉଥିବା ସମସ୍ତ ଥାଳି, ପରଖ, ଗରା, ଝରି, କଂସାପାତ୍ର ଗୁଡ଼ିକୁ "ଦର୍ପଣିଆ" ସେବକ ପରିଷ୍କାର କରନ୍ତି ଏବଂ ସ୍ନାନପୂଜାଦି ପାଇଁ ଯେତେ ଫୁଲ ତଥା ମାଳ ଆବଶ୍ୟକ ହୁଏ ତାହାକୁ 'ଦଯ୍ୟଣାମାଳ' ନାମକ ସେବକ ଯୋଗାଇ ଥାଆନ୍ତି । ପୁଂହାରୀ ତିନିଜଣ ସିଂହାସନ ଉପରୁ ଓହ୍ଲାଇ ପିଢ଼ା ଉପରେ ବସି ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଦେବୀଙ୍କୁ କୁମ୍ଭାଟୁଆ ଦାନ୍ତକାଠି ଏବଂ ଆଳତିରେ ଦାନ୍ତ ଘଷାନ୍ତି । ସୁବର୍ଣ୍ଣ ଜିଭ ଛେଲରେ ଶ୍ରୀଦେବଙ୍କର ଜିହ୍ୱା ପରିଷ୍କାର କରିଦିଅନ୍ତି । ତତ୍ପରେ କଂସାଦର୍ପଣରେ ପଡ଼ିଥିବା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଦେବୀଙ୍କର ପ୍ରତିବିମ୍ବ ଉପରେ ଦହି ଢାଳନ୍ତି ଏବଂ ଝରିରେ ଥିବା ପାଣି ସେଥିରେ ପକାନ୍ତି । ତାହାକୁ ଠାକୁରଙ୍କର ମାର୍ଜଣା

ଅବକାଶ ବା ସ୍ନାନ କୁହାଯାଏ । ଅବକାଶ ପରେ 'ପାଳିଆ' ଓ 'ପ୍ରତିହାରୀ' ଅବକାଶ ଜଳ ନେଇ ରାଜପ୍ରାସାଦରେ ଦିଅନ୍ତି ।

ଅବକାଶ ସମୟରେ ବ୍ୟବହୃତ ଦନ୍ତକାଠି ଆଦି 'ମହାଭୋଇ' ସେବକ ଯୋଗାଇ-ଥାନ୍ତି । ଅବକାଶ ସରିବା ପରେ 'ଚାକର' ଓ 'ଗରୁଡ଼ ସେବକ' ନାମକ ଦୁଇଜଣ ସେବକ ଗରାରେ ବିମଳାଦେବୀଙ୍କ କୂଅରୁ ପାଣି ଆଣି ଗରୁଡ଼ଲାଗି ହୋଇଥିବା ମାଲ୍ୟାଦି ମଇଳମ କରାଇ ଚୂଆଚନ୍ଦନ ଲଗାଇ ସ୍ନାନ କରାଇ ଦିଅନ୍ତି । ସ୍ନାନପରେ ସିଂହାରୀ ତିନିଜଣ ସିଂହାସନ ଉପରକୁ ଯାଇ ପୂର୍ବରୁ ଲାଗି କରାଯାଇଥିବା ତଡ଼ପକୁ ଉଲଗି ଦେଇ ପଞ୍ଚବସ୍ତ୍ର ପରିଧାନ କରାଇ ଦିଅନ୍ତି । ଉକ୍ତ ବେଶ ପରେ ଶ୍ରୀଦେବଙ୍କର ସର୍ବସାଧାରଣ ଦର୍ଶନ ଆରମ୍ଭ ହୁଏ । ଉକ୍ତ ଦର୍ଶନକୁ 'ସାହାଣମେଳ' କୁହାଯାଏ । ସାହାଣମେଳ ନୀତି ପାଳିତ ହେବା ଫଳରେ ସର୍ବସାଧାରଣ ଯାତ୍ରୀଙ୍କ ଠାରୁ "ପିଣ୍ଡିକା" ସ୍ୱରୂପ ଟଙ୍କା ଆଦାୟ ହୁଏ ଏବଂ ସେହି ଟଙ୍କା ଶ୍ରୀମନ୍ଦିରର ଆୟ ଖାତରେ ଗୃହୀତ ହୁଏ । ସର୍ବସାଧାରଣଙ୍କ ଦର୍ଶନ ପରେ ସିଂହାରୀ ବେଶ ଆରମ୍ଭ କରନ୍ତି । ଉକ୍ତ ବେଶରେ ଠାକୁର ଅନ୍ୟପାଟ ଓ ମାଲ୍ୟାଦି ପରିଧାନ କରନ୍ତି । ବେଶ ପରେ ପୁନର୍ବାର ସୁଆର ବଡୁ ଭିତର ପରିଷ୍କାର କରି ଧୋଇ ଦିଅନ୍ତି । "ଶୁଦ୍ଧ ସୁଆର" ନାମକ ସେବକ ଅଣସର ପିଣ୍ଡିକୁ ଧୋଇ ପରିଷ୍କାର କରି ଦିଅନ୍ତି ।

ଶ୍ରୀଜଗନ୍ନାଥଙ୍କର ବ୍ରାହ୍ମମୁହୂର୍ତ୍ତର ଉପରୋକ୍ତ ନୀତିଗୁଡ଼ିକ ସରିବାପରେ ରନ୍ଧନଗୃହ ପରିଷ୍କାର କରାଯାଏ । 'ରୋଷଧୋପଖାଳିଆ' ରନ୍ଧନ ଗୃହ ପରିଷ୍କାର କରେ । ରୋଷ ଧୋପଖାଳ ସରିବା ପରେ 'ରୋଷ ପାଏକ' 'ଅମୋଣିଆ ପରିଚ୍ଛା' ଓ 'ମହା ସୁଆର'ଙ୍କୁ ରୋଷ ପରିଷ୍କାର ବିଷୟରେ ଜଣାଇ ଦିଅନ୍ତି । ତତ୍ପରେ "ରୋଷପାଇକ" ହୋମ ପାଇଁ କାଠ ଲଗାଇ ଦିଅନ୍ତି ଏବଂ ଅମୋଣିଆ ପରିଚ୍ଛା ତଥା ମହାସୁଆରଙ୍କ ଠାରୁ ହୋମ ପ୍ରସ୍ତୁତ ବିଷୟରେ ଖବର ପାଇ, ପୂଜାପଣ୍ଡା ରୋଷ ଘରେ ଯାଇ ହୋମ କରନ୍ତି । ଉକ୍ତ ହୋମରେ ଗୋଟିଏ ନଡ଼ିଆ ପୋଡ଼ାଯାଏ । ହୋମ ଶେଷରେ ସେଥିରୁ ଅଗ୍ନି ଯାଇ ରୋଷ କାର୍ଯ୍ୟ ଆରମ୍ଭ ହୁଏ । ଏବଂ ପୂଜାପଣ୍ଡା ସୂର୍ଯ୍ୟପୂଜା କରନ୍ତି । ମୁକ୍ତିମଣ୍ଡପ ନିକଟରେ ଯେଉଁ ସୂର୍ଯ୍ୟମନ୍ଦିର ରହିଛି ସେହି ସୂର୍ଯ୍ୟଦେବଙ୍କୁ ସେଠାରେ ପୂଜା କରାଯାଏ । ସୂର୍ଯ୍ୟ ପୂଜା ପାଇଁ ଆବଶ୍ୟକୀୟ ଫୁଲ, ତୁଳସୀ, ଘଣ୍ଟି, ଶଙ୍ଖ ଆଦି ପଦାର୍ଥ 'ପତି ବଡୁ' ସେବକ ଯୋଗାଇ ଦିଅନ୍ତି । ସୂର୍ଯ୍ୟପୂଜା ପରେ ପତି ବଡ଼ୁ ସମସ୍ତ ପୂଜାସାମଗ୍ରୀ 'ଜୟ ବିଜୟ' ଦ୍ୱାର ତଥା କଳାହାଟ ଦ୍ୱାର ନିକଟରେ ରଖନ୍ତି ଏବଂ ପୂଜାପଣ୍ଡା ଦ୍ୱାରପାଳ ପୂଜା କରନ୍ତି । ସୂର୍ଯ୍ୟପୂଜା ତଥା ଦ୍ୱାରପାଳ ପୂଜାପାଇଁ ଯେଉଁ ଧୂପ ଦିଆଯାଏ, ସେଥିପାଇଁ ଅଗ୍ନି ରୋଷ ଘରେ ଅନୁଷ୍ଠିତ ହୋଇଥିବା ହୋମରୁ ଆସେ ।

ଦ୍ୱାରପାଳ ପୂଜା ସମାପ୍ତ ହେଲାପରେ ଶ୍ରୀଜଗନ୍ନାଥଙ୍କର ବଲ୍ଲଭ ଭୋଗ ଆରମ୍ଭ ହୁଏ । "ବଲ୍ଲଭ ଭୋଗ" ପାଇଁ ସୁଆର ବଡ଼ୁ ଅମୁଣିଆ ପାଣି ପକାନ୍ତି । ଗରାବଡୁ ଝରରେ ପାଣି ଓ ଘଣ୍ଟାଜଳ ଦିଅନ୍ତି । ଚନ୍ଦନ, ଜାଇଫଳ ଆଦି ଘୋରା ହୋଇ ଜଳରେ ମିଶିଥାଏ, ସେହି ଜଳକୁ ଠାକୁରଙ୍କର "ଘଣ୍ଟାଜଳ" କୁହାଯାଏ । ସୁଆରବଡ଼ୁ ଧୂପ ଦିଅନ୍ତି । ଅନବସର ଘରେ ଖଟୁଲି ସେବକ ଖଟୁଲି ପକାଇ ଦିଅନ୍ତି । ମହାସୁଆର ବଲ୍ଲଭ ଭୋଗ ପରିବେଷଣ କରନ୍ତି । ଭୋଗ ପାଇଁ ଉଦ୍ଦିଷ୍ଟ ସମସ୍ତ କାର୍ଯ୍ୟ ସମାପନ ପରେ ପୂଜାପଣ୍ଡା ବିଗ୍ରହମାନଙ୍କର ଅର୍ଚ୍ଚନା ଆରମ୍ଭ କରନ୍ତି । ବଲ୍ଲଭ ଭୋଗରେ ଖଇ, କୋରା, ଖୁଆମଣ୍ଡା, କଦଳୀ, ନଡ଼ିଆ ପାଢି, ଦହି, ଲହୁଣୀ ଆଦି ପରିବେଷିତ ହୁଏ । ଏହାକୁ ଠାକୁରଙ୍କର ପ୍ରଥମ ଶୁଖିଲା ଭୋଗ ବା ଜଳଯୋଗ କୁହାଯାଏ ।

ବଲ୍ଲଭ ଭୋଗ ପରେ ସକାଳଧୂପ ଆରମ୍ଭ ହୁଏ । ସକାଳ ଧୂପ ପାଇଁ ସୁଆରବଡ଼ୁ ଅନବସର ପିଣ୍ଡି ଓ ଭିତର ବେଢ଼ା ସଫା କରନ୍ତି, ପୂଜାପଣ୍ଡା ମୁରୁଜ ପକାନ୍ତି । ଭୋଗ ପାଇଁ ସ୍ୱରେଟି ଥାଳି ଓ ଦୁଇଟି ପରଖ (ପିତଳ ପାତ୍ର) ଠାକୁରଙ୍କ ସମ୍ମୁଖରେ ରଖାଯାଏ । ଶ୍ରୀ ଜଗନ୍ନାଥ ଓ ବଳଭଦ୍ରଙ୍କ ପାଖରେ ଗୋଟିଏ ଥାଳି ଓ ପରଖ ଏବଂ ସୁଭଦ୍ରାଦେବୀ ତଥା ସୁଦର୍ଶନଙ୍କ ସମ୍ମୁଖରେ କେବଳ ଥାଳି ଦୁଇଟି ରଖାଯାଏ । ଏ ସମସ୍ତ ଥାଳି ଆଦି ବ୍ୟବହୃତ ପାତ୍ର "ପାଣିଆ ପଟ" ସେବକ ମାଜିକରି ପରିଷ୍କାର କରିଥାଏ । ପ୍ରତିହାରୀ ଦ୍ୱାରରେ ଟେରା ବାନ୍ଧନ୍ତି । ଦ୍ୱାରର ଉପର ଭାଗରେ ଏକ ବସ୍ତ୍ର ଉଭୟ ଦିଗରେ ବନ୍ଧା ଯାଇଥାଏ । ତାହାକୁ ଟେରା ପକାଇବା କୁହାଯାଏ । ଟେରା ପଡ଼ିସାରିବା ପରେ ପ୍ରତିହାରୀ ଓ ପ୍ରଧାନୀ ନାମକ ସେବକ ଭୋଗ ଡାକ ଯାଆନ୍ତି । ପନ୍ତି ବଡ଼ୁ ଓ ଛଡ଼ୁଆ ନାମକ ଦୁଇଜଣ ସେବକ ଖେଚେଡ଼ି ଆଣି ଥାଳରେ ବାଢ଼ନ୍ତି । ମହା ସୁପକାର ଝିଲ୍ଲି, କାନ୍ତି ଏଣ୍ଡୁରି, ଅଦା ପଚଡ଼ି, ମାଠ ପୁଳି, ହଂସକେଳି, କାକରୁଆ, ବୁନ୍ଦିଆ, କ୍ଷୀରି ପ୍ରଭୃତି ବାଢ଼ନ୍ତି । ପୂଜାପଣ୍ଡା ଭୋଗ କରି ବସନ୍ତି । ପୂଜାପାଇଁ ଗରାବଡ଼ୁ ଜଳ, ସୁଆର ବଡ଼ୁ ଧୂପ, ପଟିବଡ଼ୁ ରୂପାର ପାତ୍ର ବା ସଜ ଓ ଅନ୍ୟାନ୍ୟ ପୂଜାସାମଗ୍ରୀ ଯଥା— ମହୁ, ଘିଅ, ଫୁଲ, ତୁଳସୀ ଯୋଗାଇ ଦିଅନ୍ତି । ପୂଜାସମୟରେ ସୁଆରବଡ଼ୁ ପୂଜାପଣ୍ଡାଙ୍କ ନିକଟରେ ଦର୍ପଣ ଧରି ଠିଆ ହୁଅନ୍ତି ଏବଂ ସେହି ଦର୍ପଣରେ ଠାକୁରଙ୍କର ପ୍ରତିବିମ୍ବ ପଡ଼ୁଥାଏ । ସେହି ପ୍ରତିବିମ୍ବକୁ ଧ୍ୟାନକରି ସ୍ତୋତ୍ରପାଠ ପୂର୍ବକ ପୂଜାପଣ୍ଡା ପୂଜା କରନ୍ତି । ପୂଜା ଆରମ୍ଭ ହେବା ପୂର୍ବରୁ ପ୍ରତିହାରୀ ଟେରା ପକାନ୍ତି । ଠାକୁରଙ୍କର ରତ୍ନଦ୍ୱାର ବନ୍ଦ କରିବାକୁ ଟେରା ପକାଇବା କୁହାଯାଏ । ପୂଜା ସରିଲେ ପ୍ରତିହାରୀ କବାଟ ଖୋଲନ୍ତି । 'ପନ୍ତିବଡ଼ୁ', 'ହଡ଼ପ ନାଏକ' ନାମକ ସେବକଙ୍କୁ ଡାକନ୍ତି । ଡାକରା ପାଇ ଉକ୍ତ ସେବକ ହଡ଼ପ ଗୃହରୁ ବଡ଼ିଆ ଯୋଗାଣିଆ ଯୋଗାଇଥିବା ଢନଖଣ୍ଡ "ବଡ଼ିଆ" ରୂପା ବଟାରେ ରଖି ପୂଜାପଣ୍ଡାଙ୍କୁ ଯୋଗାଇ ଦିଅନ୍ତି ଏବଂ ଠାକୁରଙ୍କୁ ବଡ଼ିଆ ଲାଗି କରାଯାଏ । ପୂନର୍ବାର

ପଢ଼ିବଡ଼ୁ କର୍ପୂର ଆଳତି ଏବଂ ଏକୋଇଶ ବତୀ ଯୋଗାଇ ଦିଅନ୍ତି । ଆଳତି ଆଦି ସରିଲାପରେ ପୂଜାପଣ୍ଡା ଚାଲିଆସନ୍ତି । ତତ୍ପରେ "କୋଠିଆ" ଦେଉଠାରେ ଘଣ୍ଟବେଷ୍ଟିତ ଭୋଗପଦାର୍ଥମାନ ବାହାରକୁ ନେଇ ଆସନ୍ତି । ଏହି ଧୂପକୁ ଖେଚେଡ଼ି ଭୋଗ ମଧ୍ୟ କୁହାଯାଏ ।

ପୂର୍ବର ମତ ଅନୁସାରେ ସକାଳ ଧୂପ ସମୟରେ ଜଗମୋହନଙ୍କ ଠାରେ ଶ୍ରୀମନ୍ଦିରର ସେବିକା ଦେବଦାସୀ ନୃତ୍ୟ କରୁଥିବାର ପ୍ରମାଣ ମିଳେ । କିନ୍ତୁ ବର୍ତ୍ତମାନ ମନ୍ଦିର ମଧ୍ୟରେ ସେ ନୀତି ହେଉନାହିଁ ।

ସକାଳ ଧୂପପରେ ସୁଆର ବଡ଼ୁ ଭିତର ଧୋଇ ନିଅନ୍ତି । ସିଂହାରୀ ଠାକୁରଙ୍କର ବେଶ ମଇଲମ କରନ୍ତି । ଉକ୍ତ ମଇଲମ ହେବା ସମୟରେ ସୁଆର ବଡ଼ୁ 'ଘୋଡ଼ା-ଚଉକ' ରଖିଥାନ୍ତି, ସେହି ଚଉକ ଉପରେ ଛିଡ଼ା ହୋଇ ବିଗ୍ରହମାନଙ୍କ ମାଲ୍ୟାଦି ମଇଲମ କରନ୍ତି । ମେକାପ ପଞ୍ଚବସ୍ତ୍ର ଯୋଗାନ୍ତି । ଶ୍ରୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ବେଶ ସରିବା ପରେ ଭୋଗ ମଣ୍ଡପ ଆରମ୍ଭ ହୁଏ । ସୁଆର ବଡ଼ୁ ପାଣିଛିଞ୍ଚି ତିନୋଟି ପିଢ଼ା ଦୁଆର ମୁହଁରେ ରଖନ୍ତି । ତା'ପରେ ରୋଷଘରୁ ମହାପ୍ରସାଦ ଆସେ । ଏହି ଭୋଗ ସମୟରେ ପ୍ରତିହାରୀ ଡାକ ଯାଆନ୍ତି ନାହିଁ । ଦୁଇପଟ ଦ୍ୱାରରେ ଦୁଇଜଣ ପ୍ରତିହାରୀ ବସି ରହନ୍ତି । ପଢ଼ିବଡ଼ୁ ତିନୋଟି ପିତଳ ଥାଳରେ ଫୁଲତୁଳସୀ ଓ ତିନୋଟି ଶଙ୍ଖ ବଡ଼ୁ ନେଇ ରଖନ୍ତି । ଗରାବଡ଼ୁ ତିନୋଟି ଝଣରେ ପାଣି ରଖନ୍ତି । ସୁଆରବଡ଼ୁ ଧୂପ, ପଢ଼ିବଡ଼ୁ ଦୀପ, ଖଟୁଲି ସେବକ ତିନୋଟି ଖଟୁଲି ଭୋଗ ମଣ୍ଡପ ଗୃହରେ ପକାନ୍ତି । ପୂଜାପଣ୍ଡା ପୂଜା କରି ବସନ୍ତି । ଉକ୍ତ ଭୋଗ ସମୟରେ ଦର୍ପଣ ଆବଶ୍ୟକ ପଡ଼େ ନାହିଁ । ଏହି ଭୋଗମଣ୍ଡପ ଲୋକ ମୁଖରେ "ଭିଅଣ୍ଟ" ନାମରେ ଖ୍ୟାତ । ଭୋଗ ସମାପ୍ତ ହେଲା ପରେ କୋଠିଆ ସମସ୍ତ ଭୋଜ୍ୟ ପଦାର୍ଥ ନେଇ ବାହାରକୁ ଚାଲି ଆସନ୍ତି ଏବଂ ସୁଆର ବଡ଼ୁ ଗୃହ ପରିଷ୍କାର କରି ନିଅନ୍ତି । ଏହି 'ଭୋଗ ମଣ୍ଡପ' ଭୋଗ ଶ୍ରୀମନ୍ଦିରର ଅତିରିକ୍ତ ଭୋଗ । ଜନସାଧାରଣଙ୍କର ଆବଶ୍ୟକତା ବା ଚାହିଦା ଅନୁସାରେ ଏଥିରେ ଭୋଗପଦାର୍ଥ ସମର୍ପଣ କରାଯାଏ ।

ଭୋଗ ମଣ୍ଡପରେ ଶ୍ରୀଠାକୁରଙ୍କର ମଧ୍ୟାହ୍ନ ଧୂପ ଆରମ୍ଭ ହୁଏ । ମଧ୍ୟାହ୍ନ ଧୂପର ସମସ୍ତ ନୀତି ନିୟମ ସକାଳ ଧୂପ ପରି ହୋଇଥାଏ କିନ୍ତୁ ମଧ୍ୟାହ୍ନ ଧୂପରେ ଓଳିଆ (ଘିଅ ଅନ୍ନ), ମରିଚ ପାଣି ଓ ପିଠା ସମର୍ପଣ କରାଯାଏ । ଧୂପ ପରେ ପନ୍ତିବଡ଼ୁ ହଡ଼ପ ନାଏକଙ୍କୁ ଡାକିଲେ ଆସ୍ଥାନ ପ୍ରତିହାରୀ ଟେରା ଫିଟାନ୍ତି । ଦ୍ୱାର ଫିଟି ସାରିବା ପରେ ହଡ଼ପ ନାଏକ 'ବଢ଼ଆ—ଯୋଗାଣିଆ' ଠାରୁ ଆଣିଥିବା ବଢ଼ଆ ତିନିଖଣ୍ଡି

ରୂପା ବଟାରେ ରଖି ପୂଜାପଣ୍ଡାଙ୍କୁ ଯୋଗାଇ ଦିଅନ୍ତି । ପୂଜାପଣ୍ଡା ଠାକୁରଙ୍କୁ ବାଢ଼ିଆ ସମର୍ପଣ କରନ୍ତି ।

ମଧ୍ୟାହ୍ନ ଭୋଗପରେ ସୁଆରବଡ଼ୁ ଗୃହ ପ୍ରକ୍ଷାଳନ କରନ୍ତି । ସିଂହାରୀ ପୂର୍ବବେଶ ମଇଲମକରି ଅନ୍ୟ ମାଲ୍ୟବସ୍ତ୍ର ପିନ୍ଧାଇଦିଅନ୍ତି । ସନ୍ଧ୍ୟା ଆଳତି ହୁଏ । ଆଳତିପାଇଁ ସୁଆରବଡ଼ୁ ଏକୋଇଶଟି ବତି ଓ ପିଷ୍ଟକ ଆଳତି, ମେଖାପ-କର୍ପୂର ଆଳତି ଯୋଗାଇ ଥାଆନ୍ତି । ସିଂହାରୀ ଆଳତି କରିସାରିବା ପରେ ସନ୍ଧ୍ୟାଧୂପ ବସେ । ସୁଆରବଡ଼ୁ ଅନବସର ପିଣ୍ଡି ପରିଷ୍କାର କରନ୍ତି । ଗରାବଡ଼ୁ ଜଳ, ପଟିବଡ଼ୁ ପୁଷ୍ପ ଦିଅନ୍ତି ଏବଂ ପାଟ ସଜାଡ଼ନ୍ତି । ଆସ୍ଥାନ ପ୍ରତିହାରୀ ଦକ୍ଷିଣଦ୍ୱାରରେ ପାଣିପକାଇ ପୂଜାସ୍ଥାନ ସଜାଡ଼ି ଦେଇ 'ବାହାରଦେଉଳ'କୁ ଜଣାଇ ଦିଅନ୍ତି । 'ବାହାର ଦେଉଳ' ଭୋଷକୁ ଭୋଗ ଡାକଯାଏ । ଏହି ଭୋଗରେ ପିଠା, ଅବଢ଼ା, ଡ଼ାଲି, ବିଭିନ୍ନ ତରକାରୀ, ଶାଗ ଆଦି ଅର୍ପଣ କରାଯାଏ । ଭୋଗସାମଗ୍ରୀ ରଖାସାରିବା ପରେ ଆସ୍ଥାନ ପ୍ରତିହାରୀ ଟେରାପକାନ୍ତି ଏବଂ ପୂଜାପଣ୍ଡା ପୂଜା କରି ଦିଅନ୍ତି, ପୂଜା ସରିବାପରେ ଆସ୍ଥାନ ପ୍ରତିହାରୀ ଟେରା ଫିଟାନ୍ତି ଏବଂ ଭୋଗସାମଗ୍ରୀ ବାହାରକୁ ପଠାଇଦେବାର ବ୍ୟବସ୍ଥା କରନ୍ତି । ସକାଳଧୂପ, ମଧ୍ୟାହ୍ନଧୂପ ଓ ସନ୍ଧ୍ୟାଧୂପରେ ଘଣ୍ଟବାଦନ କରନ୍ତି ଏବଂ ପ୍ରତ୍ୟେକ ଧୂପରେ 'ବଡ଼ମୁହାପାଟ' ସେବକ ରାଜନଅରକୁ ତାଟ ନେଇଯାଆନ୍ତି ।

ସନ୍ଧ୍ୟାଧୂପ ପରେ ସିଂହାରୀ ପୁଷ୍ପିଥିରେ ପ୍ରଭୁଙ୍କୁ ମଇଲମ କରିବାକୁ ଯାଆନ୍ତି । ମଇଲମ ପରେ ବେଶ ଆରମ୍ଭ ହୁଏ । ଉକ୍ତବେଶକୁ ବଡ଼ସିଂହାର ବେଶ ଓ ରାତିଭୋଗକୁ ବଡ଼ସିଂହାର ଭୋଗ କୁହାଯାଏ । ଏହା ବୃହତ୍ ଶୃଙ୍ଗାର ବେଶର ଅପଭ୍ରଂଶ ଶବ୍ଦ । "ଭୋଗମଣ୍ଡପରୁ" "ଭିଅଣ୍ଡି" ମହାପ୍ରସାଦରୁ ମା'ପ୍ରସାଦ ହେଲପରି ଏହି ବୃହତ୍ ଶୃଙ୍ଗାର ଠିକ କାଳକ୍ରମେ ଦେଉଳ ସେବାୟତମାନଙ୍କ ତୁଣ୍ଡରେ ବଡ଼ସିଂହାରରେ ପରିଣତ ହୋଇଛି ।

ଏହି ବେଶର ପ୍ରଧାନ ବିଶେଷତ୍ୱ ହେଉଛି, ଏଥିରେ ଗୀତଗୋବିନ୍ଦ ଖଣ୍ଡୁଆ ବ୍ୟବହାର କରାଯାଇଥାଏ । ଜନଶ୍ରୁତିରୁ ଜଣାଯାଏ ଉତ୍କଳୀୟ କବି ଜୟଦେବଙ୍କ ରଚିତ ଶ୍ରୀ ଗୀତଗୋବିନ୍ଦ ପ୍ରଭୁଙ୍କର ଅତି ଆଦରଣୀୟ ହୋଇଥିବାରୁ ସେ ତାହାକୁ ଶ୍ରୀଅଙ୍ଗରେ ଧାରଣ କରନ୍ତି; ଅର୍ଥାତ୍ କବି ଜୟଦେବଙ୍କର ଜନସ୍ଥାନ କେନ୍ଦୁଳି ବା କେନ୍ଦୁବିଲ୍ୱ ଅଞ୍ଚଳର ତନ୍ତୀମାନେ ଲୁଗା ଉପରେ ଗୀତଗୋବିନ୍ଦର ଗୀତଗୁଡ଼ିକୁ ବୁଣି ଏହି ଖଣ୍ଡୁଆ (ବସ୍ତ୍ର) ପ୍ରସ୍ତୁତ କରନ୍ତି । ଆଲୋଚକମାନଙ୍କ ମତରୁ ଜଣାଯାଏ ପୂର୍ବରୁ ଶ୍ରୀରାମଦାସ ମଠ ଓ ଏମାରମଠ ଏହିବେଶର ଉପକରଣମାନ ଯୋଗାଇଦାଉଥି

ସ୍ୱତନ୍ତ୍ର ବୃତ୍ତି ଭୋଗକରିଆସୁଛନ୍ତି । ତେଣୁ ଉକ୍ତ ଦୁଇମଠ ପକ୍ଷରୁ ବେଶ ଉପକରଣ, ପାଟ, ଚନ୍ଦ୍ରିକା, କରପଲ୍ଲବ ଆଦି ଯୋଗାଇ ଦିଆଯାଏ ।

ବଡ଼ସିଂହାର ବେଶରେ ଶ୍ରୀଜଗନ୍ନାଥ ବଳଭଦ୍ର ସୁଭଦ୍ରାଙ୍କୁ ଚନ୍ଦନ ଲାଗି କରାଯାଏ । ଚନ୍ଦନଲାଗି ସମୟରେ ଶାଢ଼ୀବନ୍ଧା ସେବକ ଭିତରକାଠ ପାଖରେ ଥାଇ ଗୀତଗୋବିନ୍ଦ ପାଠକରନ୍ତି । ଚନ୍ଦନବଳେ ପାଇଁ ଭଣ୍ଡାର ମେକାପଠାରୁ ହଡ଼ପ ନେଇ ଭିତର ସିଂହାସନ ତଳେ ରହି ସିଂହାରୀଙ୍କ ହାତକୁ ଚନ୍ଦନ ଯୋଗାଇଦିଅନ୍ତି ଏବଂ 'ସାତବାଡ଼ି ବଡ଼ିଆ' ଠାକୁରଙ୍କୁ ମଣୋହି କରନ୍ତି । ଚନ୍ଦନ ଲାଗି ପାଇଁ ସମସ୍ତ ଚନ୍ଦନ ''ଘଟୁଆରି'' ସେବକ ଘୋରିଦିଅନ୍ତି ।

ଚନ୍ଦନଲାଗି ସମୟରେ କଳାହାଟ ଦ୍ୱାରର 'ଜୟବିଜୟ' ତଳେ ବୀଣାକାର ଦୈନିକ ବୀଣା ବଜାଉଥିଲେ ବୋଲି ପ୍ରମାଣ ମିଳେ । କିନ୍ତୁ, ବର୍ତ୍ତମାନ ଶ୍ରୀମନ୍ଦିରର ବୀଣା ଭାଙ୍ଗି ଯାଇଥିବାରୁ ବୀଣା ବଜାଯାଉନାହିଁ । ଚନ୍ଦନଲାଗି ପରେ ହଡ଼ପ ନାୟକ ଭଣ୍ଡାର ମେକାପଠାରୁ କର୍ପୂର ଓ ବଡ଼ିଆ ନେଇ ପାର୍ଶ୍ୱଦେବତା (ମଦନମୋହନ, ବିମଳା, ନୃସିଂହ, ଲକ୍ଷ୍ମୀ ଓ ସରସ୍ୱତୀ)ଙ୍କୁ ଯୋଗାଇଦିଅନ୍ତି ଏବଂ କିଛି କର୍ପୂର ପରଦିନ ପାଇଁ ବଡ଼ିଆ ଯୋଗାଣିଆ ଜିମାରେ ଦେଇଦିଅନ୍ତି । ତା'ପରେ ବଡ଼ସିଂହାର ଭୋଗ ଆରମ୍ଭ ହୁଏ । ଦିନୋଟି ରୁପା ପରଖ (ଡସଲ) ଓ ସୁନାପଟ ଥାଳି ପରିଷ୍କାର କରି ଧୁଆ ଯାଇଥାଏ । ତାହାକୁ ସୁଆରବଡ଼ୁ ଯଥା ସ୍ଥାନରେ ସଜାଇ ରଖନ୍ତି । ପ୍ରଥମହାରି ଭୋଗକୁ ଭୋଗ ଡାକଯାଆନ୍ତି । ଏହି ସମୟରେ ପିଠା ଓ କଞ୍ଜି ଘିଅ ଓ ଥାଳିରେ ପିଠା ଏବଂ ଦହି ପଖାଳ ପୂଜାକରାଯାଏ । ପରଖରେ ଘିଅ ଓ ଥାଳିରେ ପିଠା ଏବଂ ଦହିପଖାଳ ରଖାଯାଇଥାଏ । ସୁଦର୍ଶନଙ୍କ ପାଖରେ ପରଖ ରଖାଯାଇ ନ ଥାଏ । ପୂଜାପଣ୍ଡା ଭୋଗ କରିବସନ୍ତି । ସେ ଅନ୍ୟାନ୍ୟ ଭୋଗ, ସିଂହାସନ ଉପରେ ବସି କରୁଥିଲେ ହେଁ ବଡ଼ସିଂହାର ଭୋଗ ତଳେ ବସି ଅର୍ପଣ କରନ୍ତି । ଏହି ଭୋଗ ସମୟରେ ବଡ଼ଛତା ମଠର ବାଦ୍ୟକାରମାନେ ବାଜା ବଜାଉଥାଅନ୍ତି । ଭୋଗପରେ ହଡ଼ପନାଏକ ମୁଦୁଲିଠାରୁ ବଟାନେଇ ବଡ଼ିଆ ଧନବାଡ଼, ''ପଶୁପାଳକ''ଙ୍କ ହାତକୁ ବଢ଼ାଇଦିଅନ୍ତି । ଖୁବ୍ ସମ୍ଭବତଃ ଏହି ପଶୁପାଳକ ଶବ୍ଦ ପାର୍ଶ୍ୱପାଳକ ଶବ୍ଦର ଅପଭ୍ରଂଶ ଏବଂ କାଳକ୍ରମେ ଅନ୍ୟାନ୍ୟ କେତୋଟି ଶବ୍ଦ ପରି ଏହି ଶବ୍ଦ ମଧ୍ୟ ମନ୍ଦିର ସେବକମାନଙ୍କ ଦ୍ୱାରା ଏପରି ବିକୃତ ଭାବରେ ବ୍ୟବହୃତ ହେଉଛି ।

ଭୋଗପରେ ସୁଆରବଡ଼ୁ ବା ପୁରବଡ଼ୁ ଭିତର ବେଢ଼ା ପରିଷ୍କାର କରନ୍ତି । ତତ୍ପରେ ପହୁଡ଼ କାର୍ଯ୍ୟ ଆରମ୍ଭ ହୁଏ । 'ଖଟ ଶେଯ-ମେକାପ୍' ଦିନୋଟି ପଲଙ୍କ ନେଇଥାନ୍ତି । ସେ ପଲଙ୍କରେ ଶେଯ ପଡ଼ିଥାଏ । ଗରାବଡ଼ୁ ଦିନୋଟି ଝରିରେ

ଘଷାଜଳ ରଖନ୍ତି । ତତ୍ପରେ ଶୟନ ଲଗି ନିଦ ହୁଥିବା ଠାକୁରଙ୍କର ଚଳନ୍ତି ପ୍ରତିମାଙ୍କୁ ଅଣାଯାଏ । ଭଣ୍ଡାର ଗୃହରେ ଏକ ସୁବର୍ଣ୍ଣ ମୂର୍ତ୍ତି ରଖାଯାଇଥାଏ । ତାହାକୁ ଶୟନ-ଠାକୁର କୁହାଯାଏ । ଶୟନଠାକୁରଙ୍କୁ ଗରୁଡ଼ ଓ ପୁଷ୍ପାଳକ (ସିଂହାରୀ) ଆଣନ୍ତି ଏବଂ ତାଙ୍କୁ ସିଂହାସନ ଉପରେ ବସାଇ ଦିଆଯାଇ କର୍ପୂର ଆଳତି ଆରମ୍ଭ ହୁଏ । ଆଳତି ସମୟରେ "ଛତାର" ଶୟନଠାକୁରଙ୍କ ପାଖରେ ଛତିଧରି ଠିଆହୋଇଥାନ୍ତି । ଆଳତି ପରେ ଶୟନଠାକୁରଙ୍କୁ ଜୟବିଜୟ ଦ୍ୱାର ନିକଟରେ ଥିବା କଳାଡ଼ମ୍ବୁରୁ ଉପରେ ସ୍ଥାପନା କରାଯାଏ, ସେତେବେଳେ ବୀଣାକାର ବୀଣା ଓ କାହାଳିଆ କାହାଳୀ ବଜାନ୍ତି । ଏହି ସମୟରେ ଶ୍ରୀଜଗନ୍ନାଥଙ୍କ ସେବିକା "ଦେବଦାସୀ" ବା 'ଭିତର ଗାଉଣୀ' ଗୀତଗୋବିନ୍ଦ ପାଠକରନ୍ତି । ଶୟନଠାକୁର ଜୟବିଜୟ ଦ୍ୱାର ନିକଟକୁ ଆସିବା ସମୟରେ ଛତାର ତାଙ୍କସହ ଛତି ଧରି ଆସୁଥାଏ । ତା'ପରେ ଶୟନଠାକୁରଙ୍କୁ ଭଣ୍ଡାର ଭିତରକୁ ନିଆଯାଏ । ଶୟନଠାକୁର ବିଜେ ହୋଇଆସିବା ପରେ ଦେବଦାସୀ ଆଗେ ଆଗେ 'ଗୀତଗୋବିନ୍ଦ' ବୋଲୁଥାନ୍ତି, ଏବଂ ବିଜେପ୍ରତିମା ଭିତରକୁ ଯିବାପର୍ଯ୍ୟନ୍ତ ଜୟବିଜୟ ଦ୍ୱାର ନିକଟରେ ଛିଡ଼ାହୋଇ ଗାନ କରୁଥାନ୍ତି । ତା'ପରେ ଅଳୁଅ ଏବଂ ଦୀପ ଲିଭେଇ ଦିଆଯାଏ ଏବଂ ଭିତର କବାଟ 'ମୁଦୁଲି' ବନ୍ଦକରି ତାଲା ପକାନ୍ତି । ତାହାକୁ ତଳିଛ ମହାପାତ୍ର ମାଟିରେ ମୁଦ ଦେଇଥାନ୍ତି । ସମସ୍ତେ ବାହାରକୁ ଆସି ସାରିବାପରେ ବାହାର ଦ୍ୱାର ବନ୍ଦ କରାଯାଏ ।

ବଡ଼ସିଂହାର ଧୂପ ପରେ 'ବେଷ ଧୋପଖାଳିଆ' ପରଦିନ ପାଇଁ ବେଷ ଗୃହ ପ୍ରକ୍ଷାଳନ କରିଦେଇ ଥାଆନ୍ତି । ଏହିପରି ଭାବରେ ଶ୍ରୀଜଗନ୍ନାଥଙ୍କ ପ୍ରତ୍ୟହ ସେବା ଓ ପୂଜା ଚାଲେ । ପ୍ରତିଦିନ ଶ୍ରୀଜଗନ୍ନାଥଙ୍କ ଭିତର ଦ୍ୱାର ଫିଟା ହେବା ପୂର୍ବରୁ ଶ୍ରୀମନ୍ଦିର ବେହରଣ (ବେଢ଼ା) ମଧ୍ୟରେ ଉପସ୍ଥିତ ରହି 'ଦେଉଳ କରଣ' ଯେଉଁଦିନ ଯେଉଁ ନୀତି ହେବ, ସେ ବିଷୟରେ କର୍ମଚାରୀଙ୍କୁ ନିର୍ଦ୍ଦେଶ ଦିଅନ୍ତି । ପ୍ରତିଦିନର ମାଦଳାପାଞ୍ଜିକୁ ଲେଖନ୍ତି । ପୁରୁଣା ପାଞ୍ଜିଗୁଡ଼ିକୁ ହଳଦୀ ଲଗାଇ ସୁରକ୍ଷିତ ଅବସ୍ଥାରେ ରଖନ୍ତି । ଶ୍ରୀମନ୍ଦିରର ଦ୍ୱାରଫିଟା ଠାରୁ ପହୁଡ଼ ପର୍ଯ୍ୟନ୍ତ ପ୍ରତ୍ୟେକ ନୀତି ଉପଯୁକ୍ତ ସମୟରେ ଉପଯୁକ୍ତ ସେବକ ଦ୍ୱାରା ହେଉଛି କି ନାହିଁ ସେ ବିଷୟରେ ତଦନ୍ତ କରୁଥାନ୍ତି ।

ଦ୍ୱାରଫିଟା ଠାରୁ ପହୁଡ଼ ପର୍ଯ୍ୟନ୍ତ, ସେବାରେ ନିଯୁକ୍ତ ଥିବା ପ୍ରତ୍ୟେକ ସେବକଙ୍କୁ ତର୍ଛାଇତ କରଣ ପାଇକ ହାତରେ ଡକାନ୍ତି । ଏହିପରି ଭାବରେ ଶ୍ରୀମନ୍ଦିରର ସେବକ-ମାନେ ନିଜ ନିଜ କାର୍ଯ୍ୟରେ ଅହରହ ଲଗି ରହିଥାନ୍ତି । ଶ୍ରୀମନ୍ଦିର ସେବାୟତମାନଙ୍କର ଗୋଟିଏ ପ୍ରଧାନ ବିଶେଷତ୍ୱ ହେଉଛି—ସେମାନେ ପୁରୁଷାନୁକ୍ରମେ ଜାଗିର୍ ଭୋଗ କରି ନିଜପାଇଁ ନିର୍ଦ୍ଦିଷ୍ଟ ଥିବା ସେବାରେ ନିଯୁକ୍ତ ରହିଛନ୍ତି ଏବଂ କୌଣସି ସେବକ ଅନ୍ୟ

ସେବକର କାର୍ଯ୍ୟ କରନ୍ତି ନାହିଁ । ଏହି ପରମ୍ପରା ଯୋଗୁଁ ଅନେକ ସମୟରେ ଠାକୁରଙ୍କର ନୀତିରେ ମହାବିଭ୍ରାଟ ସୃଷ୍ଟି ହୁଏ ।

ଏହି ସାଧାରଣ ସେବାପୂଜା ବ୍ୟତୀତ ଶ୍ରୀମନ୍ଦିରରେ ଅନୁଷ୍ଠିତ ଚତୁର୍ଦ୍ଦଶ ଯାତ୍ରା ସମୟରେ ବିଭିନ୍ନ ବେଶ ଓ ଭିନ୍ନ ଭିନ୍ନ ପ୍ରକାରର ଭୋଗ ପ୍ରସ୍ତୁତ ହୁଏ ଏବଂ ପୂଜା ବିଧିବିଧାନରେ ମଧ୍ୟ କେତେକ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଏହି ସେବା ପୂଜା ବ୍ୟତୀତ ଦାରୁଦେବତାଙ୍କର ଅନେକଗୁଡ଼ିଏ ବେଶ ରହିଛି । ବିଭିନ୍ନ ମାସର ସ୍ୱତନ୍ତ୍ର ଉତ୍ସବ ଦିନରେ ଏହି ବେଶଗୁଡ଼ିକ ହୋଇଥାଏ । ଏହି ବେଶଗୁଡ଼ିକ ମଧ୍ୟରେ ଗଜବେଶ ବା ଗଣେଶ ବେଶ, ରୁକ୍ମିଣୀ ହରଣ ବେଶ, ନବଯୌବନ ବେଶ, ସୁନାବେଶ, ବନଭୋଜି ବେଶ, କାଳୀୟଦଳନ ବେଶ, ପ୍ରଲମ୍ବାସୁର ବଧ ବେଶ, ରାଧା ଦାମୋଦର ବେଶ, ଗଜୋଦ୍ଧାରଣ ବେଶ, ପଦ୍ମବେଶ ଓ ରାଜବେଶ ବିଶେଷ ବ୍ୟୟସାପେକ୍ଷ ଓ ଆକର୍ଷକ ହୋଇଥାଏ । ଅନ୍ୟାନ୍ୟ ବେଶଗୁଡ଼ିକ ମଧ୍ୟରେ ଚନ୍ଦନବେଶ, ବାମନ ବେଶ, ତ୍ରିବିକ୍ରମ ବେଶ, ନୃସିଂହ ବେଶ, ପରଶୁରାମ ବେଶ, ଚିତାଲାଗି ବେଶ, ରେଖାଲାଗି ବେଶ, ଠିଆକିଆ ବେଶ, ବାଙ୍କଚୂଡ଼ା ବେଶ, ଆଡ଼କିଆ ବେଶ, ଡାଳିକିଆ ବେଶ ପ୍ରଭୃତି ବେଶଗୁଡ଼ିକ ମଧ୍ୟ ଶ୍ରୀମନ୍ଦିରରେ ଅନୁଷ୍ଠିତ ହୁଏ । ଏହି ବେଶଗୁଡ଼ିକର ଉପକରଣ ପୁରୀର ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସଂଗୃହୀତ ହୋଇଥାଏ ଏବଂ ଏହି ବେଶଗୁଡ଼ିକ ପ୍ରତ୍ୟକ୍ଷ ଅବଲୋକନ ନ କଲେ ଏହାର ମହାର୍ଘତା ସମ୍ବନ୍ଧରେ ଧାରଣା କରି ହେବ ନାହିଁ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ନାଗାର୍ଜ୍ଜୁନ ବେଶ ଓ ରଘୁନାଥ ବେଶ ଅତ୍ୟନ୍ତ ବ୍ୟୟବହୁଳ ବେଶ ରୂପେ କଥିତ; କିନ୍ତୁ ତାହା ପ୍ରତିବର୍ଷ ହୁଏ ନାହିଁ । କାର୍ତ୍ତିକ ମାସର ଅନ୍ତିମ ପାଞ୍ଚ ଦିନରେ ଶ୍ରୀଜଗନ୍ନାଥଙ୍କର ପାଞ୍ଚଟି ବେଶ ହୁଏ । ଯଦି ସେହି 'ପଞ୍ଚକ ଯାତ୍ରା' ପଞ୍ଚମ ଦିବସରେ ଶେଷ ନହୋଇ ଷଷ୍ଠ ଦିବସରେ ଶେଷ ହେଲେ ତେବେ ଅତିରିକ୍ତ ଷଷ୍ଠ ଦିବସରେ ନାଗାର୍ଜ୍ଜୁନ ବେଶ ଓ ସପ୍ତମ ଦିବସକୁ ଅତିକ୍ରମ କଲେ ଉକ୍ତ ସପ୍ତମ ଦିବସରେ ରଘୁନାଥ ବେଶ କରାଯାଏ ।

ଶ୍ରୀମନ୍ଦିରର ସେବକମାନେ ନିଜନିଜର ପାଳି ଅନୁସାରେ ସେବା କାର୍ଯ୍ୟରେ ନିଯୁକ୍ତ ଥାଆନ୍ତି । ଯଦି କୌଣସି ସେବକ ଠିକ୍ ସମୟରେ ନିଜର ସେବାକାର୍ଯ୍ୟରେ ନିଯୁକ୍ତ ନ ହୁଅନ୍ତି, ତେବେ ତାଙ୍କୁ ମନ୍ଦିର କର୍ତ୍ତୃପକ୍ଷଙ୍କ ଠାରୁ ଦଣ୍ଡ ଭୋଗ କରିବାକୁ ପଡ଼େ ।

ପୁରୁଷୋତ୍ତମ ଦେଉଳ କାର୍ଯ୍ୟବିଧି ଶୀର୍ଷକ ଅପ୍ରକାଶିତ ତାଳପତ୍ର ପୋଥିରୁ ଜଣାଯାଏ— ଶ୍ରୀଜଗନ୍ନାଥଙ୍କର ଶ୍ୟାମସୁନ୍ଦର ମୂର୍ତ୍ତି ନୀଳମେଘ ପ୍ରାୟ ବର୍ଣ୍ଣ ଏବଂ ସେ ସାମବେଦୋକ୍ତ ବିଧି ଓ ମନ୍ତ୍ରରାଜ ମନ୍ତ୍ରରେ ପୂଜିତ ହୁଅନ୍ତି । କୁନ୍ଦ ପୁଷ୍ପ, ଚନ୍ଦ୍ରମା ପରି

ଶ୍ରୀବଳଭଦ୍ରଙ୍କର ମୂର୍ତ୍ତି ଏବଂ ଋଗ୍ ବେଦୋକ୍ତ ବିଧିରେ ଦ୍ୱାଦଶାକ୍ଷର ମନ୍ତ୍ରରେ ଶ୍ରୀବଳଭଦ୍ରଙ୍କ ପୂଜା କରାଯାଏ । କୁଙ୍କୁମ ଓ ଅରୁଣ ମିଶ୍ରିତ ବର୍ଣ୍ଣରେ ଶ୍ରୀ ସୁଭଦ୍ରା-ଦେବୀଙ୍କ ମୂର୍ତ୍ତି ନିର୍ମାଣ କରାଯାଏ, ଯଜୁର୍ବେଦୋକ୍ତ ବିଧି ଏବଂ ଭୁବନେଶ୍ୱରୀ ମନ୍ତ୍ରରେ ଶ୍ରୀ ସୁଭଦ୍ରାଙ୍କୁ ପୂଜା କରାଯାଏ । ଶ୍ରୀ ସୁଦର୍ଶନଙ୍କର ସ୍ୱରୂପ ରକ୍ତବର୍ଣ୍ଣ ଏବଂ ଅଥର୍ବ ବେଦୋକ୍ତ ବିଧିରେ ତାଙ୍କର ପୂଜା ଅନୁଷ୍ଠିତ ହୁଏ । ଶ୍ରୀଜଗନ୍ନାଥମନ୍ଦିରର ପୂଜାବିଧି ଓ ସେବା ଖଟଣି ଆଦି ବିଷୟରେ ଅନୁଧ୍ୟାନ କଲେ ଜଣାଯାଏ, ବହୁ ମତବାଦ ଓ ବହୁ ସାଂସ୍କୃତିକ ପରିପ୍ରେକ୍ଷୀରେ ଶ୍ରୀମନ୍ଦିରର ସେବାକାର୍ଯ୍ୟ ଅନୁଷ୍ଠିତ ହୋଇଆସୁଛି । ବହୁ ଧର୍ମମତବାଦ, ବହୁପ୍ରକାର ସଂସ୍କାର ଓ ନାନାବିଧ ସାଂସ୍କୃତିକ ପରିବେଶ ଏକତ୍ରିତ ହୋଇ ଶ୍ରୀ ଜଗନ୍ନାଥ ଧର୍ମ ଓ ସଂସ୍କୃତି ନାମରେ ଶ୍ରୀମନ୍ଦିରରେ ପ୍ରଚଳିତ ହେଉଛି ।

ଜ୍ୟେଷ୍ଠ ସ୍ନାନପୂର୍ଣ୍ଣିମା ପରଦିନ ଠାରୁ ପରବର୍ତ୍ତୀ ଅମାବାସ୍ୟା ପର୍ଯ୍ୟନ୍ତ ଦୀର୍ଘ ପନ୍ଦରଦିନ ବ୍ୟାପି ଶ୍ରୀଜଗନ୍ନାଥ ମହାପ୍ରଭୁ ଅନବସର ଗୃହରେ ଅବସ୍ଥାନ କରନ୍ତି । ତାହା ମନ୍ଦିରର ଭାଷା ଅନୁସାରେ 'ଅଣସର—ଘର' ନାମରେ ନାମିତ । ସ୍ନାନପୂର୍ଣ୍ଣିମାରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ଉପରେ ଜଳାଭିଷେକ କରାଯାଏ । ଖୁବ ସମ୍ଭବତଃ ତାହା ଫଳରେ ବିଗ୍ରହମାନଙ୍କର ରଙ୍ଗ ତା'ର ଉଜ୍ଜ୍ୱଳତା ହରାଇ ବସେ । ସେହି ଦିନଠାରୁ ମୂର୍ତ୍ତିମାନଙ୍କୁ ଅଣସର ଘରେ ପନ୍ଦରଦିନ ପର୍ଯ୍ୟନ୍ତ ରଖାଯାଇ ବିଗ୍ରହମାନଙ୍କର ପ୍ରସାଧନ କରାଯାଏ । ଅଣସର ଘରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ସେବା ଅତ୍ୟନ୍ତ ଗୋପନୀୟ ତଥ୍ୟ ବୋଲି ସେବାୟତ-ମାନେ ବାହାରେ ପ୍ରକାଶ କରନ୍ତି ନାହିଁ କିମ୍ବା କୌଣସି ଲେଖକ ସେ ସମ୍ବନ୍ଧରେ ସ୍ପଷ୍ଟ ମତ ଦେଇନ୍ତି ନାହିଁ । ନୀଳାଦ୍ରି ମହୋଦୟ ପ୍ରଭୃତି କେତେକ ଶ୍ରୀମନ୍ଦିର ସମ୍ପର୍କୀୟ ପୁସ୍ତକରୁ ଜଣାଯାଏ ଯେ, ସେ ସମୟରେ ମହାପ୍ରଭୁଙ୍କୁ ଅଣସର ଘରେ ଶୀତଳ ପ୍ରପାନକ ଓ ଅନ୍ୟାନ୍ୟ କେତେକ ପାଚନ ତଥା ଔଷଧ ପ୍ରଭୃତି ଦିଆଯାଏ । ସେହି ଔଷଧ ଓ ପ୍ରପାନକ ଭକ୍ତଜନତାଙ୍କୁ ପ୍ରସାଦରୂପେ ବିତରଣ କରାଯାଏ । ଶ୍ରୀମନ୍ଦିର ସେବକମାନଙ୍କଠାରୁ ଜଣାଯାଏ ଯେ, 'ଲଙ୍କାସେବକ' ଅଣସର ପନ୍ଦରଦିନ ଯାକ ସେବକ ଦଇତାପତିମାନଙ୍କୁ ଡାକିବାକୁ ଯାଆନ୍ତି ଓ ଖଇ ଏବଂ ଖଣ୍ଡି ପ୍ରସାଦ ବିକେକରନ୍ତି । ସେହି ଅବସରରେ 'ତଡାଉ କରଣ' ଅଣସରଡାଟି ଘର ଓ ଦକ୍ଷିଣଦ୍ୱାର ମୁଦାଦିଅନ୍ତି ଓ ଖୋଲନ୍ତି । ଅଣସର ସମୟରେ ବୈଦ୍ୟ ଦଶମୀ ଦିନ ସନ୍ଧ୍ୟା ସମୟରେ ପ୍ରଭୁଙ୍କ ଲାଗି ଦଶମୂଳ ମୋଦକ ଆଣି 'ଗାରଦ'ରେ ଯୋଗାନ୍ତି । ତାହା ଏକାଦଶୀଦିନ ଭୋଗ ସହିତ ଲାଗିହୁଏ । ସେହି ସମୟରେ ଓଝା ମହାରଣା, ଚକ୍ର ବିହୁଡ଼ିଆ, ପାଟରୀ, ବିଶୋଇ ପ୍ରଭୃତି ସେବକ ବିଭିନ୍ନ ଉପକରଣ ଯୋଗାଇ ଥାଆନ୍ତି । ବାର୍ଷିକ ଅଣସର ଅପେକ୍ଷା ମହାଅଣସର ଅର୍ଥାତ୍ ନବକଳେବର ସମୟରେ ହେଉଥିବା ଅଣସରରେ ସାଧାରଣ ବିଧିବିଧାନମାନ ମହା ଆଡ଼ମ୍ବର

ସହକାରେ ପାଳିତ ହୁଏ । କାରଣ ବିଗ୍ରହଙ୍କର ନବକଳେବର ହେଉଥିବାରୁ ଆବଶ୍ୟକୀୟ ଉପକରଣମାନ ଅଧିକ ପରିମାଣରେ ଦରକାର ହୁଏ । ତନ୍ମଧ୍ୟରେ ପାଟର ଆବଶ୍ୟକତା ଅଧିକ ହୋଇଥାଏ । ସାଧାରଣ ଅଣସରରେ ପାଟର ପରିମାଣ ଷାଠିଏ ସେର ଆବଶ୍ୟକ ହେଉଥିବା ସ୍ଥଳେ ମହାଅଣସରରେ ବାର ମହଣ ପାଟ ଲୋଡ଼ାହୁଏ ।

ଏହି ପ୍ରସଙ୍ଗରେ କୁହାଯାଇପାରେ ଯେ, ଠାକୁରଙ୍କ ଦୈନନ୍ଦିନ ସେବା ଓ ଅନ୍ୟାନ୍ୟ ବିଶେଷ ସେବା କାର୍ଯ୍ୟରେ ଏକଶହ ଊଣେଇଶ ଶ୍ରେଣୀର ସେବକ ନିଯୁକ୍ତ ଅଛନ୍ତି । ଶ୍ରୀମନ୍ଦିରର ଭୋଗ ଆକାରରେ ଅବଢ଼ା ଓ ଶୁଖିଲା ଭୋଗ ଆଦିର ଗୋଟିଏ ବିବରଣୀ ଏଠାରେ ପ୍ରଦତ୍ତ ହେଲା—

## ସେବକ—

୧ । ଅଖଣ୍ଡ ମେକାପ
୨ । ଅଣସର ସୁଧ ସୁଆର
୩ । ଅମାଲ୍ ତୋଳା, ପୁରଖରଡ଼
୪ । ଅମୁଣିଆ ଛତାର
୫ । ଆଳଟବଳତା ସେବକ
୬ । ଆସ୍ଥାନ ପ୍ରତିହାରୀ
୭ । ଓଝା ମହାରଣା
୮ । କରଟିଆ
୯ । କଳାବେଠିଆ
୧୦ । କାହାଳିଆ
୧୧ । କୁମ୍ଭାର ବିଶୋଇ
୧୨ । କୋଠକରଣ
୧୩ । କୋଠଭୋଗ ଯୋଗାଣିଆ
୧୪ । କୋଠ ସୁଆଣିଆ
୧୫ । ଖଟଶେଯ ମେକାପ
୧୬ । ଖଟୁଲି ସେବକ
୧୭ । ଖୁଣ୍ଟିଆ
୧୮ । ଖୁରି ନାଏକ
୧୯ । ଗଜପତି ମହାରାଜା
୨୦ । ଗରାବଡ଼ୁ ।
୨୧ । ଗୀତ ଗୋବିନ୍ଦ ସେବକ
୨୨ । ଗୋଚ୍ଛିକାର
୨୩ । ଘଟୁଆରି
୨୪ । ଘଣ୍ଟସେବକ
୨୫ । ଘଣ୍ଟୁଆ
୨୬ । ଚକା ଅପସର
୨୭ । ଚନ୍ଦନ ଘିହୁଡ଼ି
୨୮ । ଚର୍ଚ୍ଚା କରଣ
୨୯ । ଚାଉଳବଛାକରଣ
୩୦ । ଚାଙ୍ଗଡା ମେକାପ
୩୧ । ଚୁପ ଦଟେଇ
୩୨ । ଚୁପ ବେହେରା
୩୩ । ଚନ୍ଦକାର
୩୪ । ଚୁନରା
୩୫ । ଛତାର ନିଯୋଗ
୩୬ । ଛତିଶା ନିଯୋଗ ନାୟକ
୩୭ । ଛୁମୁ ଘିହୁଡ଼ି
୩୮ । ଜଗିଆ ମହାସୁଆର
୩୯ । ଡ଼ାମରା ବିଶୋଇ
୪୦ । ତଡ଼ାଉ କରଣ

୪୧ । ଚଳନ୍ତି
୪୨ । ଛାଟୁଆ
୪୩ । ଢୋଲାବଡୁ
୪୪ । ଦଇତା
୪୫ । ଦଉଡ଼ି ବଳା
୪୬ । ଦତ୍ତ ମହାପାତ୍ର
୪୭ । ଦରଜି ସେବା
୪୮ । ଦର୍ପଣିଆ
୪୯ । ଦସ୍ତୁଣା ମାଳ
୫୦ । ଦସ୍ତାଣ ପତ୍ର
୫୧ । ଦେଉଳ କରଣ
୫୨ । ଦେଉଳ ପୁରୋହିତ
୫୩ । ନକାପ
୫୪ । ପତରବନ୍ଧା
୫୫ । ପଢ଼ ମହାପାତ୍ର
୫୬ । ପତି ବଡୁ
୫୭ । ପନକ ପଟ୍ଟା
୫୮ । ପନ୍ତି ବଡୁ
୫୯ । ପବଂଯାତ୍ରା ଯୋଗାଣିଆ
୬୦ । ପାଇକ
୬୧ । ପାଟଗ୍ର ବଡ଼ଶୋଇ
୬୨ । ପାଣିଆ ପଟ୍ଟ
୬୩ । ପାଳଆ ମେକାପ
୬୪ । ପୁରାଣ ପଣ୍ଡା
୬୫ । ପୁଷ୍ପାଳକ
୬୬ । ପୂଜା ପଣ୍ଡା
୬୭ । ପ୍ରଥମାଣ୍ଡି
୬୮ । ପ୍ରଧାନି
୬୯ । ପ୍ରସାଦ ବଡୁ
୭୦ । ବଡ଼ ପଣ୍ଡା
୭୧ । ବଡୁ ସୁଆର
୭୨ । ବଢ଼େଇ
୭୩ । ବଣିଆ
୭୪ । ବଲ୍ଲଭ ଯୋଗାଣିଆ
୭୫ । ବାଣୁଆ
୭୬ । ବାହାର ଦେଉଳ ଯୋଗାଣିଆ
୭୭ । ବାହାର ଦେଉଳ ସୁଆର
୭୮ । ବିଡ଼ିଆ ଯୋଗାଣିଆ
୭୯ । ବିମାନ ବଡୁ
୮୦ । ବିଶ୍ୱବ୍ରହ୍ମା
୮୧ । ବିଶ୍ୱମ୍ଭର ସାମର୍ଥ
୮୨ । ବୀଣାକାର
୮୩ । ବେଣ୍ଟବନ୍ଧା ପାଇକ
୮୪ । ବୈଜୟନ୍ତ
୮୫ । ବୈଠି କରଣ
୮୬ । ନୈବେଦ୍ୟ
୮୭ । ଭଣ୍ଡାର ମେକାପ
୮୮ । ଭିତର ଗାଏଣୀ
୮୯ । ଭିତରଚ୍ଛ
୯୦ । ମଠ ସେବକ
୯୧ । ମଣ୍ଡଣି
୯୨ । ମହାଜନ
୯୩ । ମହାଭୋଇ
୯୪ । ମହାସୁଆର
୯୫ । ମାଦେଳି
୯୬ । ମାପ ସାଇତା କରଣ
୯୭ । ମାଳଚୁଳ
୯୮ । ମୁଖ ପଖାଳ
୯୯ । ମୁଦିରସ୍ତ
୧୦୦ । ମୃଦୁଳି
୧୦୧ । ମୁଦ୍ରା
୧୦୨ । ମୂଲିଆ ସୁଆଁସିଆ

୧୦୩ । ରଥ ଡାହୁକ
୧୦୪ । ରଥ ଭୋଇ
୧୦୫ । ରୂପକାର
୧୦୬ । ରୋଷ ଧୋ ପଖାଳିଆ
୧୦୭ । ରୋଷ ପାଇକ
୧୦୮ । ଲୁଗାଧୁଆ ଓ ପାଣିକୁଣ୍ଡ ସେବକ
୧୦୯ । ଲେଙ୍କା
୧୧୦ । ଶଙ୍ଖୁଆ
୧୧୧ । ସମ୍ପ୍ରଦା ନିଯୋଗ
୧୧୨ । ସାବତ ନିଯୋଗ
୧୧୩ । ସୁଆର ନିଯୋଗ ନାୟକ
୧୧୪ । ସୁଆର ବଡୁ
୧୧୫ । ସୁନା ଗୋସ୍ୱାମୀ
୧୧୬ । ହଡ଼ପ ନାୟକ
୧୧୭ । ହାଣ୍ଡି ଯୋଗାଣିଆ

ଉକ୍ତ ଏକ ଶତ ସତର ଜଣ ସେବକଙ୍କ ସେବା ବ୍ୟତୀତ କେତେକ ବ୍ୟକ୍ତିଗତ ସେବା ମଧ୍ୟ ରହିଛି ।

## ବଲ୍ଲଭ ଭୋଗ—

ଉକ୍ତ ଭୋଗରେ ଖୁଆମଣ୍ଡା, ନଡ଼ୁଣୀ, ଦହି, ବଡକୋରା, ସାନକୋରା, କଦଳୀ, ନଡ଼ିଆ ପାଠ, ବଲ୍ଲଭ ଖଇ, ଚରକୁ ସମର୍ପଣ କରାଯାଏ ।

## ସକାଳଧୂପ—

ସକାଳ ଧୂପରେ ଡାଟ ଖେଚେଡ଼ି, ଲୁଖୁର୍ଯ୍ଯ ଖେଚେଡ଼ି, ମେଣ୍ଢା ମୁଣ୍ଡିଆ, ବଡ କାନ୍ତି, ଅଧା କାନ୍ତିକା, ପିଠା ପୂଳି, ହଂସ କେଳି, ଏଣ୍ଡୁରି, ଶାଗ, ଭଜା, ଅଦା ପଚଡ଼ି, ଗୁଡ଼ଧୁଆ କ୍ଷୀର, ମାଠପୁଳି, କାକରୁଆ ଝିଲି, ଚନ୍ଦ୍ରକାନ୍ତି, ମହୁର ଖେଚୁଡ଼ି, ଥାଳ ଖେଚୁଡ଼ି ଆଦି ଭୋଗ ହୁଅଯାଏ । ଏହାକୁ 'ରାଜଭୋଗ' ମଧ୍ୟ କୁହାଯାଏ ।

## ଦ୍ୱି ପ୍ରହର ଧୂପ ବା ମଧ୍ୟାହ୍ନ ଧୂପ :

ଏହି ଧୂପରେ ନିମ୍ନଲିଖିତ ପଦାର୍ଥମାନ ଭୋଗରେ ଲଗେ । ପଣା, ବଡ଼ ପିଠା, ଡାଟପଟାପିଠା, ଛେନାପିଠା, କାକରା ସରା, ବରା, ବଡ଼ ବଡ଼ା, ସାନ ବଡା, ମାଠପୁଳି, ପାଗ ଆରିସା, ସାନ ଆରିସା, ଅମୃତ ଦୁଧ, ସର, ଝିଲି, ମନୋହର, ଧଉଳା, ଲଡୁ, ଭଜା, ବଡ ଖିରସା, ମହାବୀର ପିଠା, ଝଡ଼େଇ ନେଦା, ସାନ ଝଗଡ଼ୁ, ଲୁଣ ଘୁଟୁମା, ବଡ଼ ନାଡ଼ୁ, ଜିଘୁରି, ଫେଣି, ବଡ଼ ଖଇର ଚୂଳ, ଓଳିଗଜା, ବଡ଼ଆରିସା ଆଦି ।

ଏ ଧୂପରେ ଅଡଶକ୍ତ ଭୋଗ ହିସାବରେ 'ଖେଚୁଡ଼ି ଭୋଗ' ମଧ୍ୟ କରାଯାଏ । ଖେଚୁଡ଼ି ଭୋଗରେ ଥାଳଖେଚୁଡ଼ି, ମହାଦେଇ, ଥାଳିଓରିଆ, ଓରିଆ, ମୁଗ, ମରିଚ ପାଣି, ବଡ଼ ଖିରସା, ସାନ ଖିରସା, ସୁବାସ ପଖାଳ, ଡାଟ ପଖାଳ, ଚୁପୁଡ଼ା

ପଖାଳ, ସାନଓଳ ପଖାଳ, ସାକର, କଡ଼ମ୍ବା ସମର୍ପଣ କରାଯାଏ । ୧୯୧୦ ମସିହାରେ ମଧ୍ୟାହ୍ନ ଧୂପରେ ଅର୍ପିତ ହେଉଥିବା ଭୋଗମାନଙ୍କର ସଂଖ୍ୟା ଗ୍ୱରଶହ ପଞ୍ଚଷଠି ଥିଲ ବୋଲି ଆଲୋଚକମାନେ ମତ ଦିଅନ୍ତି । ବର୍ତ୍ତମାନ ପ୍ରତ୍ୟେକ ଭୋଗର ସଂଖ୍ୟା କମିଯାଇଛି ।

## ସନ୍ଧ୍ୟା ଧୂପ :

ସନ୍ଧ୍ୟା ଧୂପରେ କେନାମଣି ପିଠା, ମାଣ୍ଡୁଅ, କଅଁଳ ପୁଳି; ନ-ମାଠପୁଳି, ହ-ମାଠପୁଳି, ପାଣିକାଡକ, ରସାବଳି, ସାନ ଅମାଲୁ, ଝାଲୁଆ, ହଂସବଲ୍ଲଭ ପିଠା ସମର୍ପିତ ହୁଏ ।

## ବଡ଼ ସିଂହାର ଭୋଗ :

କ୍ଷୀର, ମିଠାପଖାଳ, କାଞ୍ଜି, ସରପୁଳି, କଦଳୀବଡ଼ି ବଡ଼ସିଂହାର ଭୋଗରେ ଅର୍ପଣ କରାଯାଏ ।

ଏ ସମସ୍ତ ଭୋଗ ବ୍ୟତୀତ ପ୍ରତ୍ୟହ ସକାଳଧୂପ ପରେ ଅତିରିକ୍ତ ଭୋଗ ହିସାବରେ 'ଭୋଗ ମଣ୍ଡପ' ଭୋଗ ହୁଏ । ଏହା ସର୍ବସାଧାରଣଙ୍କ ଚାହିଦା ଅନୁସାରେ ହୁଏ । ଏଥିରେ ଅବଢ଼ା, ଡାଲି, ଡାଲମା, ବେସର, ମହୁର, ଶାଗ ଆଦି ସମର୍ପଣ କରାଯାଏ ।

. ତଦ୍‌ବ୍ୟତୀତ ମହାଲକ୍ଷ୍ମୀଙ୍କ ମନ୍ଦିରରେ ଯେଉଁ ଭୋଗହୁଏ ତାହାକୁ ବାହାର ଦେଉଳ ଭୋଗ କୁହାଯାଏ । ସେଥିରେ ଦେବୀଙ୍କୁ ବଡ କାକରା, ମଝିଆଲ କାକରା, ସାନ କାକରା, ବଡ଼ ମାଣ୍ଡୁଅ, ମହାବୀର ମାଣ୍ଡୁଅ, ସାନ ମାଣ୍ଡୁଅ ଚକା, ମନୋହର, ସୁଜି ଗଜା, ମହନ ଭୋଗ, ଧଉଳା, ଖଇଚୁଟି ଆଦି ସମର୍ପଣ କରାଯାଏ ।

ମଙ୍ଗଳ ଆଳତି ପ୍ରସାଦ, ମଇଲମ କରାଯାଇଥିବା ମାଳଚୂଳ ଓ ଧୂପ ଭୋଗ ବ୍ୟତୀତ ଅନ୍ୟ କେତେକ ଭୋଗ ମଧ୍ୟ ରାଜା, ରାଣୀ ଓ କେନାମଣିଙ୍କୁ ମିଳେ । ଏହା ଶ୍ରୀମନ୍ଦିର କୋଠଭୋଗ ପସରାଠାରୁ ପୃଥକ୍ ଅଟେ । ବର୍ତ୍ତମାନ ଶ୍ରୀମନ୍ଦିରର ପରିଗ୍ୱଳନା ଭାର ସରକାର ସ୍ୱୟଂ ବହନ କରିଥିବାରୁ ଅଧୀକ୍ଷକ ଭାବରେ ପୁରୀ ମହାରାଜାଙ୍କର ଯେଉଁ କ୍ଷମତା ଥିଲ ତାହା ଆଇନ ଅନୁସାରେ ରଦ୍ଦ ହୋଇ ଯାଇଅଛି । ଏହାଙ୍କର ପରିଗ୍ୱଳନାଗତ କୌଣସି କ୍ଷମତା ନ ଥିଲେ ହେଁ ଶ୍ରୀମନ୍ଦିର ପରିଗ୍ୱଳନା ପାଇଁ ସରକାରୀ, ବେସରକାରୀ ଓ ସେବାୟତ ପ୍ରତିନିଧିମାନଙ୍କୁ ନେଇ ଯେଉଁ ସଂସ୍ଥା ଗଠିତ ହୋଇଅଛି ସେହି ସଂସ୍ଥାର ଅଧ୍ୟକ୍ଷ ଭାବରେ ପୁରୀର ରାଜାସାହେବ କାର୍ଯ୍ୟ ତୁଲନ୍ତି । ଏହାର ଉପ-ଅଧ୍ୟକ୍ଷ ପୁରୀଜିଲ୍ଲାପାଳ ଅଟନ୍ତି ।

# ଶ୍ରୀ ଜଗନ୍ନାଥ ଓ ଠାକୁରରାଜା

ଶ୍ରୀ ଜଗନ୍ନାଥ ସଂସ୍କୃତି ସହିତ ପୁରୀ ରାଜାମାନଙ୍କର ସମ୍ପର୍କ ଅତି ଘନିଷ୍ଠ ଓ ସେମାନେ ସର୍ବସାଧାରଣରେ ଗଜପତି ରାଜା ବା ଠାକୁର ରାଜା ରୂପେ ପରିଚିତ । ଇତିହାସରେ ବହୁ ପ୍ରତିଷ୍ଠିତ ହିନ୍ଦୁ ରାଜା ସ୍ଥାନ ପାଇଥିଲେ ମଧ୍ୟ ଜଗନ୍ନାଥଙ୍କ ସହ ପାରମ୍ପରିକ ଘନିଷ୍ଠ ସମ୍ପର୍କ ଯୋଗେ ପୁରୀର ଠାକୁର ରାଜା ହିନ୍ଦୁମାନଙ୍କ ମନରେ ସର୍ବଦା ଶ୍ରେଷ୍ଠ ଆସନ ଲାଭ କରିଛନ୍ତି । ଉକ୍ତ ରାଜବଂଶୀମାନେ ଜଗନ୍ନାଥ ସଂସ୍କୃତିର ପ୍ରତିଷ୍ଠାତା ତଥା ପୃଷ୍ଠପୋଷକ ।

ଓଡ଼ିଶା ଇତିହାସର ବିଭିନ୍ନ ଘାତ-ପ୍ରତିଘାତ ମଧ୍ୟରେ ଠାକୁର ରାଜାମାନଙ୍କର ଐତିହାସିକ ଭୂମିକା ସାମୟିକ ପରିବର୍ତ୍ତିତ ହୋଇଥିଲେ ମଧ୍ୟ ସେମାନଙ୍କର ଶ୍ରୀ ଜଗନ୍ନାଥଙ୍କ ସହିତ ସମ୍ପର୍କ ସର୍ବଦା ସୁଦୃଢ଼ ଏବଂ ନିରବଚ୍ଛିନ୍ନ ରହି ଆସିଅଛି । ଅଦ୍ୟାବଧି ଓଡ଼ିଶାବାସୀମାନେ ଏହି ରାଜାଙ୍କୁ ଚଳନ୍ତି ବିଷ୍ଣୁ କହିଥାନ୍ତି, ରାଜପ୍ରାସାଦର ସିଂହଦ୍ୱାର ଓ ତନ୍ମଧ୍ୟସ୍ଥିତ ଶ୍ରେଷ୍ଠ ଶ୍ରେଷ୍ଠ ବିଗ୍ରହ ଗୁଡ଼ିକୁ ଦେଖିଲେ ଶ୍ରୀମନ୍ଦିର ଓ ରାଜପ୍ରାସାଦ ମଧ୍ୟରେ ଅନେକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଜଗନ୍ନାଥ ସଂସ୍କୃତି ସହିତ ସମ୍ପର୍କ ଉକ୍ତ ରାଜ ମାନଙ୍କୁ ଏକ ବିଶେଷ ସମ୍ମାନର ଅଧିକାରୀ କରାଇ ପାରିଛି ।

ପୁରୀରାଜା ଶ୍ରୀଜଗନ୍ନାଥଙ୍କର ପ୍ରଥମ ଓ ପ୍ରଧାନ ସେବକ । ମନ୍ଦିରର ବିଭିନ୍ନ ପାରମ୍ପରିକ ନୀତି ଉତ୍ସବମାନଙ୍କରେ ରାଜାଙ୍କର ଉପସ୍ଥିତି ଅନିବାର୍ଯ୍ୟ । ବିଶେଷତଃ ରଥଯାତ୍ରାର ଅବ୍ୟବହିତ ପୂର୍ବରୁ ତାଙ୍କ ଦ୍ୱାରା ରଥମାନଙ୍କରେ ଛେରାପହଁରା କାର୍ଯ୍ୟ ସମ୍ପାଦନ କରାଯାଏ । ଏହାକୁ ଅଗଣିତ ନରନାରୀ ଉତ୍କଣ୍ଠାର ସହ ଦର୍ଶନ କରନ୍ତି । ଶ୍ରୀଜୀଉଙ୍କର ଗ୍ରୀଷ୍ମକାଳୀନ ଓ ଶୀତକାଳୀନ ଉତ୍ସବମାନଙ୍କରେ ରାଜାଙ୍କର ମଧ୍ୟ ନିର୍ଦ୍ଦିଷ୍ଟ ପାରମ୍ପରିକ ସେବାକାର୍ଯ୍ୟ ରହିଛି ।

ଜଗନ୍ନାଥଙ୍କ ଭଳି ଠାକୁର ରାଜା ମଧ୍ୟ ବିଭିନ୍ନ ପାରମ୍ପରିକ ରୀତିରେ ସମ୍ମାନିତ ହୋଇଥାଆନ୍ତି । ମନ୍ଦିରରେ ପ୍ରବେଶ ସମୟରେ ସେବକମାନେ ତାଙ୍କର ସମ୍ମାନାର୍ଥେ ବିଭିନ୍ନ ପ୍ରକାର ନୀତି ସମ୍ପାଦନ କରନ୍ତି । ରାଜପ୍ରାସାଦ ମଧ୍ୟରେ ଜଗନ୍ନାଥଙ୍କ ପରି

ଠାକୁର ରାଜାଙ୍କର ମଧ୍ୟ ପୂଜାଅର୍ଚ୍ଚନା କରାଯାଇଥାଏ । ଏହିସବୁ ଦୃଷ୍ଟିରୁ ଶ୍ରୀଜଗନ୍ନାଥ ମନ୍ଦିର ଓ ପୁରୀ ରାଜପ୍ରାସାଦ ହିନ୍ଦୁମାନଙ୍କ ଦ୍ୱାରା ସମଭାବରେ ପବିତ୍ର ଅନୁଷ୍ଠାନ ରୂପେ ପରିଗଣିତ ।

ପୁରୀ ରାଜା ଓ ଶ୍ରୀଜଗନ୍ନାଥଦେବଙ୍କ ସମ୍ପର୍କ ଐତିହାସିକ ଦୃଷ୍ଟିରୁ ମନ୍ଦିର ନିର୍ମାଣ ସମୟରୁ ତଥା ଦ୍ୱାଦଶ ଶତାବ୍ଦୀରୁ ଧାରାବାହିକଭାବେ ଆଲୋଚନା କରାଯାଇପାରେ । ମାଦଳା ପାଞ୍ଜି ଅନୁଯାୟୀ ଏହା ଅତ୍ୟନ୍ତ ପ୍ରାଚୀନ । ଏହି ମନ୍ଦିର ଅନନ୍ତ ବର୍ମନ ଚୋଡଗଙ୍ଗଦେବଙ୍କ ଦ୍ୱାରା ପ୍ରାୟ ୧୧୧୨ ଖ୍ରୀଷ୍ଟାବ୍ଦରେ ନିର୍ମିତ ହେବାପରେ ଜଗନ୍ନାଥ ପୂଜାର ଲୋକପ୍ରିୟତା ଓ ଜଗନ୍ନାଥ ସଂସ୍କୃତିର ବିଶେଷତ୍ୱ ପ୍ରସାରିତ ହେବାକୁ ଲାଗିଲା । ଜଗନ୍ନାଥ ସଂସ୍କୃତିରେ ଶାକ୍ତ, ଶୈବ, ତାନ୍ତ୍ରିକ ଏବଂ ଶାବରୀ ସଂସ୍କୃତିର ପ୍ରଭାବ ଥିବାରୁ ଏହି ମନ୍ଦିର ପ୍ରତିଷ୍ଠା ଦ୍ୱାରା ଓଡ଼ିଶାର ବିଭିନ୍ନ ଧର୍ମତତ୍ତ୍ୱର ଏକତ୍ରୀକରଣ ସମ୍ଭବ ହୋଇ ପାରିଥିଲା ।

ଅନଙ୍ଗଭୀମଦେବଙ୍କ ରାଜତ୍ୱ କାଳରେ (ଖ୍ରୀ: ୧୨୧୧-୧୨୩୮) ଶ୍ରୀଜଗନ୍ନାଥ ଗଙ୍ଗ ସାମ୍ରାଜ୍ୟର ରାଷ୍ଟ୍ରଦେବତା ରୂପେ ପରିଗଣିତ ହେଲେ । ରାଜା ତାଙ୍କର ସାମ୍ରାଜ୍ୟକୁ ମୁସଲମାନ ଆକ୍ରମଣରୁ ରକ୍ଷା କରିବା ନିମନ୍ତେ ନିଜ ରାଜ୍ୟକୁ ପୁନର୍ଗଠନ କଲେ ଏବଂ କଟକରେ ଏକ ନୂଆ ରାଜଧାନୀ ନିର୍ମାଣ କରି ତାହାର ନାମ 'ଅଭିନବ କଟକ' ରଖିଥିଲେ । ନିଜ ରାଜ୍ୟକୁ ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରି ଗଜପତି ନିଜ ସାମ୍ରାଜ୍ୟର ସୁରକ୍ଷା ପାଇଁ ସମଗ୍ର ହିନ୍ଦୁମାନଙ୍କ ଉପରେ ଚରମ ପ୍ରଭାବ ପକାଇ ପାରିଥିଲେ । ତାଙ୍କ ସମୟର ଶିଳାଲେଖମାନଙ୍କରୁ ଜଣାପଡ଼େ ଯେ ଅନଙ୍ଗଭୀମ ନିଜକୁ 'ପୁରୁଷୋତ୍ତମ-ପୁତ୍ର' ଏବଂ 'ଜଗନ୍ନାଥଙ୍କ-ରାଉତ' ରୂପେ ବର୍ଣ୍ଣନା କରି ତାଙ୍କର (ଜଗନ୍ନାଥଙ୍କର) ଆଦେଶାନୁଗତ ହୋଇ ଶାସନ କରିଛନ୍ତି । ସେ ସମୟରେ ରାଜାଙ୍କ ଆଦେଶ ପରିପାଳନ ଜଗନ୍ନାଥଙ୍କ ସେବା ରୂପେ ପରିଗଣିତ ହେଉଥିଲା । ଏଣୁ ସମଗ୍ର ହିନ୍ଦୁ ସମାଜ ପାଇଁ ଜଗନ୍ନାଥ ଓ ପୁରୀର ଠାକୁର ରାଜା ଏକ ଓ ଅବିଚ୍ଛିନ୍ନ ଥିଲେ । ଅନଙ୍ଗଭୀମଦେବଙ୍କ ପରେ ତାଙ୍କର ବଂଶଧରମାନେ ଉପରୋକ୍ତ ପନ୍ଥା ଅନୁସରଣ କରି ବଂଶାନୁକ୍ରମେ ଉକ୍ତ ସମ୍ମାନର ଅଧିକାରୀ ହୋଇଥିବାର ଇତିହାସରୁ ଦୃଷ୍ଟାନ୍ତ ମିଳେ ।

ଗଙ୍ଗବଂଶ ପରେ ସୂର୍ଯ୍ୟବଂଶୀ ରାଜାମାନେ (୧୪୩୫-୧୫୪୦) ଏହି ପ୍ରଥା ଅନୁସରଣ କରିବା ସଙ୍ଗେ ସଙ୍ଗେ ଜଗନ୍ନାଥ ସଂସ୍କୃତିକୁ ଓଡ଼ିଶାର ରାଜନୈତିକ ଏବଂ ନୈତିକ ପ୍ରାଣକେନ୍ଦ୍ର ରୂପେ ପ୍ରତିଷ୍ଠିତ କଲେ । ସେମାନଙ୍କ ରାଜତ୍ୱ କାଳରେ ଠାକୁର ରାଜାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟ ଜଗନ୍ନାଥଙ୍କ ପ୍ରତି 'ଦ୍ରୋହ' ରୂପେ ପରିଗଣିତ ହେଉଥିଲା । ଫଳରେ ଶ୍ରୀଜଗନ୍ନାଥ ଓ ରାଜପଦ ଏକାଧାରରେ ଧର୍ମ, ସଂସ୍କୃତି ଏବଂ

ରାଜନୀତିର ଏକୀଭୂତ ଶକ୍ତି ହୋଇଥିବାରୁ ଉତ୍କଳ ସାମ୍ରାଜ୍ୟ ବହୁଦିନ ଧରି ବିପଦମୁକ୍ତ ହୋଇପାରିଥିଲା । ଆଉମଧ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଯୋଗେ ଏହି ସାମ୍ରାଜ୍ୟଭୁକ୍ତ ଅନ୍ୟ ରାଜାମାନେ ଠାକୁର ରାଜାଙ୍କୁ ଶ୍ରୀଜଗନ୍ନାଥଙ୍କ ସଦୃଶ ମନେକରି ସାର୍ବଭୌମତ୍ୱ ସ୍ୱୀକାର କରୁଥିଲେ । ଶ୍ରୀଜଗନ୍ନାଥ ଓ ଗଜପତିଙ୍କ ଏହି ଅଭେଦ୍ୟ ସମ୍ପର୍କ ତତ୍କାଳୀନ ଉତ୍କଳ ସାମ୍ରାଜ୍ୟର ଏକତା ଓ ପ୍ରତିରକ୍ଷା ସୁଦୃଢ଼ କରିପାରିଥିଲା ।

ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ସାରା ରାଜ୍ୟ ଏକ ଘୋର ସଙ୍କଟାପନ୍ନ ପରିସ୍ଥିତିର ସମ୍ମୁଖୀନ ହେଲା । କଳାପାହାଡ଼ର ଆକ୍ରମଣ ସାରା ରାଜ୍ୟକୁ ଧ୍ୱସ୍ତ ବିଧ୍ୱସ୍ତ କରିବା ସଙ୍ଗେ ସଙ୍ଗେ ପୂର୍ବ ରାଜାଙ୍କର ଅଖଣ୍ଡ କ୍ଷମତାର ମଧ୍ୟ ଅବସାନ ଘଟିଲା । ଜଗନ୍ନାଥ ମନ୍ଦିରର ବିଗ୍ରହମାନଙ୍କୁ ମଧ୍ୟ ନଷ୍ଟ କରିବାକୁ କଳାପାହାଡ଼ ପଶ୍ଚାତ୍‌ପଦ ହୋଇ ନ ଥିଲା । ପରବର୍ତ୍ତୀ ସମୟରେ ଅର୍ଥାତ୍ ୧୫୭୨ ଖ୍ରୀଷ୍ଟାବ୍ଦରେ ରାମଚନ୍ଦ୍ର ଦେବ ଖୋର୍ଦ୍ଧାରେ ଓଡ଼ିଶାର ରାଜଧାନୀ ଅବସ୍ଥାପିତ କରାଇଲେ । ଏଠାରେ ଉଲ୍ଲେଖ-ଯୋଗ୍ୟ ଯେ ଏହି ବିଖ୍ୟାତ ଗଜପତି ସାମ୍ରାଜ୍ୟ ଅନଙ୍ଗଭୀମଦେବଙ୍କ ଠାରୁ ଆରମ୍ଭ କରି ମୁକୁନ୍ଦଦେବଙ୍କ ପର୍ଯ୍ୟନ୍ତ କଟକର ବାରବାଟୀ ଦୁର୍ଗରୁ ଶାସନ ପରିଚାଳନା କରୁଥିଲେ ଏବଂ ଜଗନ୍ନାଥ ସଂସ୍କୃତି ସହ ଅଙ୍ଗାଙ୍ଗୀଭାବେ ସଂପୃକ୍ତ ଥିଲେ । କିନ୍ତୁ ଶ୍ରୀରାମଚନ୍ଦ୍ର-ଦେବଙ୍କଠାରୁ ହିଁ ଖୋର୍ଦ୍ଧା ତତ୍କାଳୀନ ଶାସନର ମୁଖ୍ୟକେନ୍ଦ୍ର ହେଲା ।

୧୫୯୨ ଖ୍ରୀଷ୍ଟାବ୍ଦରେ ଆକବରଙ୍କ ପ୍ରସିଦ୍ଧ ସେନାପତି ମହାରାଜ ମାନସିଂହଙ୍କ ଦ୍ୱାରା ଓଡ଼ିଶାର ଶ୍ରେଷ୍ଠ ରାଜା ରୂପେ ଗୃହୀତ ହେବାରୁ ରାମଚନ୍ଦ୍ରଦେବଙ୍କ ସ୍ଥିତି ଓ ସମ୍ମାନ ଦୃଢ଼ୀଭୂତ ହେଲା । ପୁନଶ୍ଚ ସେ ଜଗନ୍ନାଥ ମନ୍ଦିର ତତ୍ତ୍ୱାବଧାରକ ନିଯୁକ୍ତ ହୋଇ ଉତ୍କଳୀୟ ଗଜପତିମାନଙ୍କର ଉତ୍ତରାଧିକାରୀ ରୂପେ ପରିଗଣିତ ହେଲେ । ଡକ୍ଟର ଏନ୍. କେ. ସାହୁଙ୍କ ଭାଷାରେ, ରାମଚନ୍ଦ୍ରଦେବ ଓଡ଼ିଶାର 'Phantan Gajapati'. ଇତ୍ୟବସରରେ ରାମଚନ୍ଦ୍ରଦେବ ନିଜ ରାଜତ୍ୱ କାଳରେ ଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା କରି ଏବଂ ଜଗନ୍ନାଥ ସଂସ୍କୃତି ସହିତ ଅଧିକ ସଂଶ୍ଲିଷ୍ଟ ହୋଇ ନିଜର ଆସନ ସୁଦୃଢ଼ କରି ପାରିଥିଲେ । ମାଦଳାପାଞ୍ଜି ଅନୁଯାୟୀ ଗୋଟିଏ ମହୋତ୍ସବରେ ସନ୍ନ୍ୟାସୀ, ବ୍ରହ୍ମଚାରୀ ଏବଂ ବ୍ରାହ୍ମଣମାନେ ରାଜାଙ୍କ ସ୍ୱହସ୍ତରୁ ମହାପ୍ରସାଦ ଗ୍ରହଣ କରି ତାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ପ୍ରଦାନ କରିଥିଲେ । ଏହା ରାମଚନ୍ଦ୍ରଦେବଙ୍କ ପାଇଁ ଏକ ଚରମ ସଫଳତା ଥିଲା ଏବଂ ଏତଦ୍ଦ୍ୱାରା ସେ କ୍ରମଶଃ ଜଗନ୍ନାଥ ମନ୍ଦିରର ପରିଚାଳନା ପୁନର୍ଗଠନ କରି ନିଜର ରାଜନୈତିକ ସ୍ଥିତିକୁ ବଜାୟ ରଖି ପାରିଲେ । ଏହିପରି ରାଜା ମାନସିଂହଙ୍କ ସ୍ୱୀକୃତି ପୂର୍ବରୁ ସେ ଜଗନ୍ନାଥଙ୍କ ମାଧ୍ୟମରେ ଓଡ଼ିଶାର ରାଜାରୂପେ ପ୍ରତିଷ୍ଠିତ ହୋଇ ପାରିଥିଲେ ।

ସୂର୍ଯ୍ୟବଂଶୀ ରାଜାମାନଙ୍କ ଅମଳରୁ ଜଗନ୍ନାଥ ସଂସ୍କୃତି ଏକ ରାଜନୈତିକ ଶକ୍ତି ରୂପେ ଉତ୍କଳ ସାମ୍ରାଜ୍ୟରେ କାର୍ଯ୍ୟ କରୁଥିଲା; ମାତ୍ର ରାମଚନ୍ଦ୍ର ଦେବଙ୍କ ଅମଳରେ ଏହା ଉତ୍କଳ ସାମ୍ରାଜ୍ୟର ରାଜନୈତିକ ସୀମାରେଖା ଅତିକ୍ରମ କରି ଅନ୍ୟାନ୍ୟ ସାମନ୍ତ ରାଜାମାନଙ୍କ ରାଜ୍ୟରେ ପ୍ରବେଶ କରିଥିଲା ଏବଂ ସେମାନେ ଏହି ସଂସ୍କୃତିକୁ ନିଜର ସ୍ଥିତି ଓ ସ୍ୱାଧୀନତା ପାଇଁ ବ୍ୟବହାର କଲେ ।

ଯଦିଓ ଗଙ୍ଗ ଓ ସୂର୍ଯ୍ୟବଂଶୀ ରାଜାମାନେ ଜଗନ୍ନାଥଙ୍କ ନାମରେ ବିପୁଳ କ୍ଷମତା ଓ ସମ୍ମାନର ଅଧିକାରୀ ହୋଇ ପାରିଥିଲେ, ପରବର୍ତ୍ତୀ କାଳରେ ତାହା ରହି ପାରିଲା ନାହିଁ । ରାମଚନ୍ଦ୍ର ଦେବ ସେହିମାନଙ୍କର ନୀତି ଅନୁସରଣ କରି ଏବଂ ଜଗନ୍ନାଥ ସଂସ୍କୃତିକୁ ଆଧାର କରି ନିଜର ଗଜପତି ଆଖ୍ୟା ଏବଂ କ୍ଷମତା କେନ୍ଦ୍ରୀଭୂତ କରିବାକୁ ଯଥାସମ୍ଭବ ଚେଷ୍ଟା କରିଥିଲେ ମଧ୍ୟ ତାଙ୍କର ଉତ୍ତରାଧିକାରୀମାନେ ସେହିଭଳି ସ୍ତରକୁ ଆସିବାକୁ ଅକ୍ଷମ ହେଲେ । ଏହାର ଅନ୍ୟତମ କାରଣ ହେଲା ମୋଗଲ ସମ୍ରାଟମାନଙ୍କର ଧର୍ମାନୁଷ୍ଠାନମାନଙ୍କ ପ୍ରତି ଅନୁସୃତ ନୀତି । ମୋଗଲମାନଙ୍କର ବାରମ୍ବାର ଆକ୍ରମଣ ଏବଂ ବିଶେଷ କରି ଆକବରଙ୍କ ମୃତ୍ୟୁପରେ ଅନୁସୃତ ଧର୍ମନୀତି ଗଜପତିଙ୍କର ସ୍ଥିତି ଓ ସମ୍ମାନ ଉପରେ ଆଞ୍ଚ ଆଣିଥିଲା । ଏହି ସମୟରେ ଖୋର୍ଦ୍ଧାରାଜା ଅନ୍ୟାନ୍ୟ ସାମନ୍ତ ରାଜାମାନଙ୍କୁ ସନନ୍ଦ ମାଧ୍ୟମରେ ଜଗନ୍ନାଥ ମନ୍ଦିରରେ ସ୍ୱତନ୍ତ୍ର ପୂଜା ଅଧିକାର ଦେଇ ନିଜର ସ୍ଥିତି ଦୃଢ଼ କରିବାକୁ ଚେଷ୍ଟା କରିଥିଲେ ।'' ଜଗନ୍ନାଥ ସ୍ଥଳ ବୃତ୍ତାନ୍ତମ୍' ନାମକ ଏକ ତେଲେଗୁ ପାଣ୍ଡୁଲିପିରୁ ଖୋର୍ଦ୍ଧା ରାଜାମାନଙ୍କ ଦ୍ୱାରା ପ୍ରଦତ୍ତ ଏହିଭଳି ସନନ୍ଦମାନଙ୍କର ଏକ ତାଲିକା ଦେଖିବାକୁ ମିଳେ । ଏହା ସତ୍ତ୍ୱେ ମଧ୍ୟ ବିଭିନ୍ନ କାରଣରୁ ଖୋର୍ଦ୍ଧାରାଜାମାନଙ୍କର ସ୍ଥିତି ଓ ସମ୍ମାନ ଧୀରେ ଧୀରେ ନଷ୍ଟ ହେବାକୁ ଲାଗିଲା । ୧୭୩୬—ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ ଡେପୁଟି ନବାବ ତାକି ଖାଁଙ୍କ ଦ୍ୱାରା ପରାସ୍ତ ହୋଇ ମୁସଲମାନ ଧର୍ମ ଗ୍ରହଣ କରିବାରୁ ପଟିଆର ପଦ୍ମାଲଭ ଦେବ ଖୋର୍ଦ୍ଧା ରାଜା ରୂପେ ଅଭିଷିକ୍ତ ହୋଇଥିଲେ । ପରେ ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ପୁତ୍ର ବୀରକିଶୋର ଦେବ ସାମନ୍ତରାଜାମାନଙ୍କ ସହାୟତାରେ ଖୋର୍ଦ୍ଧାରାଜା ଫେରି ପାଇଥିଲେ ମଧ୍ୟ ତାଙ୍କର ପିତା ମୁସଲମାନ ଧର୍ମ ଗ୍ରହଣ କରିଥିବାରୁ ତାଙ୍କର ଆସନ ସେତେ ସୁଦୃଢ଼ ହୋଇ ପାରି ନଥିଲା । ଏହା ଫଳରେ ସେ ଶତଚେଷ୍ଟା ସତ୍ତ୍ୱେ ଓଡ଼ିଶା ଇତିହାସରେ ପୂର୍ବସ୍ଥିତି ଫେରି ପାଇ ପାରିଲେ ନାହିଁ । ଏବଂ ଖୋର୍ଦ୍ଧାରାଜାମାନଙ୍କର ପବିତ୍ର ଗଜପତି ସମ୍ମାନ ଆଉ ରହି ପାରିଲା ନାହିଁ ।

୧୭୫୧—ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ଓଡ଼ିଶା ଅଧିକାର କରିବା ପରେ ସେମାନଙ୍କ ଶାସନ କାଳରେ ଖୋର୍ଦ୍ଧା ରାଜାଙ୍କ ସ୍ଥିତି ଉପରେ ବିଶେଷ ଆଞ୍ଚ ଆଣିଲା ।

ସେ 'ଖୋର୍ଦ୍ଧା ରାଜା' ସ୍ୱରାଜ୍ୟରୁ ଅପେ ହରାଇଲେ, ଅନ୍ୟାନ୍ୟ ସାମନ୍ତ ରାଜାମାନଙ୍କର ସମ୍ପର୍କରୁ ବଞ୍ଚିତ ହେଲେ ଏବଂ ଜଗନ୍ନାଥଙ୍କ ମନ୍ଦିରର ପରିଚାଳନାର କ୍ଷମତା ହରାଇଲେ । ମରହଟ୍ଟାମାନେ ଜଗନ୍ନାଥ ମନ୍ଦିରର ପରିଚାଳନା ସିଧା ସଳଖ ନିଜ ହାତକୁ ନେଲେ । ଏହାର କାରଣ ମରହଟ୍ଟାମାନେ ଜାଣିଥିଲେ ଯେ ଖୋର୍ଦ୍ଧାରାଜା-ମାନଙ୍କର ଜଗନ୍ନାଥଙ୍କ ସହ ସମ୍ପର୍କ ତାଙ୍କୁ ଓଡ଼ିଶାର ଗଜପତି ଓ ଶାସକ କରି ରଖିଚ । ମରହଟ୍ଟା ଶାସକଙ୍କର ଏବଂବିଧ ନୀତି ଖୋର୍ଦ୍ଧାରାଜାଙ୍କର ସମସ୍ତ ପ୍ରଭାବ କ୍ଷୁର୍ଣ୍ଣ କରିବାରେ ଲାଗିଲା । ମାତ୍ର କେତେକ ଦଶନ୍ଧି ମଧ୍ୟରେ ମରହଟ୍ଟାମାନେ ଓଡ଼ିଶାର ଗଜପତି ରୂପେ ପରିଗଣିତ ହେଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ଆକ୍ରମଣ ସମୟରେ ବେରାରର ମରହଟ୍ଟା ରାଜାଙ୍କ ଦୂତ ଅନ୍ତତଃ ପୁରୀ ଓ ଜଗନ୍ନାଥଙ୍କୁ ଫେରିପାଇବା ପାଇଁ East India Company ସହିତ ଦୀର୍ଘ ଆଲୋଚନା କରିଥିଲେ । ତାଙ୍କ ମତରେ ଏହି ପ୍ରସ୍ତାବ ସହିତ ତାଙ୍କର ସମସ୍ତ ସମ୍ମାନ ଜଡ଼ିତ ଥିଲା । ଏହି ଆଲୋଚନାରେ ଜଗନ୍ନାଥଙ୍କୁ ହରାଇ ମରହଟ୍ଟା ରାଜା କି ଭଳି ଅସୁବିଧାର ସମ୍ମୁଖୀନ ହେବେ ଏବଂ ତଦ୍ୱାରା ଅନ୍ୟ ପ୍ରତିବେଶୀ ରାଜାମାନଙ୍କ ଚକ୍ଷୁରେ ବେରାରର ରାଜା କିଭଳି ଅପମାନିତ ହେବେ ତାହା ବ୍ରିଟିଶ ଗଭର୍ଣ୍ଣର ଜେନେରାଲ ହୃଦୟଙ୍ଗମ କରି ପାରିଥିଲେ ।

ଇଷ୍ଟଇଣ୍ଡିଆ କମ୍ପାନୀ ତାଙ୍କ ଶାସନର ପ୍ରାକ୍କାଳରେ ଜଗନ୍ନାଥ ମନ୍ଦିର ଓ ସ୍ଥାନୀୟ ଜନସାଧାରଣଙ୍କର ଧର୍ମଭାବ ପ୍ରତି ଅଧିକ ସମ୍ମାନ ପ୍ରଦର୍ଶନ କରୁଥିଲେ । ବ୍ରିଟିଶ ସରକାରଙ୍କର ନୀତି ଥିଲା ଯେ ଶ୍ରୀ ମନ୍ଦିରର ବ୍ରାହ୍ମଣ ଓ ସରକାରୀ କର୍ମକର୍ତ୍ତାମାନଙ୍କ ମଧ୍ୟରେ ବିଶ୍ୱାସ ଓ ସହୃଦୟତା ଇତ୍ୟାଦି ରହୁ ଏବଂ ସରକାରଙ୍କର ଏହି ମନ୍ଦିର ଉପରେ ଅଧିକାର ସ୍ଥାୟୀ ହେଉ । ଏଣୁ ସରକାର ପୁରୀ ମନ୍ଦିରର ସେବକ-ମାନଙ୍କୁ ସେମାନଙ୍କର ସମସ୍ତ ଅଧିକାର ଦେବା ସଙ୍ଗେ ସଙ୍ଗେ ମରହଟ୍ଟାମାନଙ୍କ ପ୍ରଚଳିତ ମନ୍ଦିର ପରିଚାଳନା ପାଇଁ ବାର୍ଷିକ ୬୦ ଟଙ୍କା ମଧ୍ୟ ମଞ୍ଜୁର କରିଥିଲେ । କେତେକ ବର୍ଷ ପାଇଁ ଜଗନ୍ନାଥ ମନ୍ଦିର ପରିଚାଳନା ମଧ୍ୟ ସରକାର ସମ୍ପୂର୍ଣ୍ଣ ଭାବେ ବହନ କରିଥିଲେ । ବ୍ରିଟିଶ ସରକାର ଏବଂ ଖ୍ରୀଷ୍ଟିୟାନ୍ ମିସନାରୀମାନଙ୍କର ତୀବ୍ର ସମାଲୋଚନା ଯୋଗେ ଇଷ୍ଟଇଣ୍ଡିଆ କମ୍ପାନୀ କାଳକ୍ରମେ ଏଠାକାର ଧର୍ମସମ୍ବନ୍ଧୀୟ ବ୍ୟାପାରରେ ସିଧା ସଳଖ ଅନୁପ୍ରବେଶରୁ ବିରତ ରହିଲେ । ମାତ୍ର ଜଗନ୍ନାଥ ମନ୍ଦିରରେ ତାଙ୍କର ପ୍ରତିଶ୍ରୁତ ନୀତି ରାଜନୈତିକ ଦୃଷ୍ଟିକୋଣରୁ ଧାର୍ଯ୍ୟ ରହିଲା । କାଳକ୍ରମେ ଇଂରେଜ ଅଫିସରମାନେ ବୁଝି ପାରିଲେ ଯେ ସେମାନେ ଅଣହିନ୍ଦୁ ହୋଇଥିବାରୁ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ପାରିବେ ନାହିଁ । ଏବଂ ଏଥିଯୋଗେ ଏହି ମନ୍ଦିର ସହିତ ସଂପୃକ୍ତ ରହିବା ବା ଏହାର ଶାସନ

ଉତ୍ତମରୂପେ ବୁଝିବା ସେମାନଙ୍କ ପକ୍ଷେ ଅସମ୍ଭବ । ଏଣୁ ସେମାନେ ଏହି ମନ୍ଦିରର ଦାୟିତ୍ୱ ଖୋର୍ଦ୍ଧା ରାଜାଙ୍କୁ ପୁନରାୟ ପ୍ରଦାନ କଲେ । ଫଳରେ ଏକଦା ଜଗନ୍ନାଥଙ୍କର ମୁଖ୍ୟ ସେବକଥିବା ଖୋର୍ଦ୍ଧା ରାଜା, ଯେ କି ମରହଟ୍ଟାମାନଙ୍କ ଦ୍ୱାରା ବିତାଡ଼ିତ ହୋଇଥିଲେ, ପୁନରାୟ ଜଗନ୍ନାଥ ମନ୍ଦିରର ସର୍ବମୟ ତତ୍ତ୍ୱାବଧାରକ ରୂପେ ୧୮୦୯ ଖ୍ରୀଷ୍ଟାବ୍ଦରେ ପ୍ରଣୀତ ଏକ ଆଇନ ଦ୍ୱାରା ଅବସ୍ଥାପିତ ହେଲେ । ଏହି ଆଇନ ୧୮୪୦ ମସିହାର ଅନ୍ୟ ଏକ ଆଇନ ଦ୍ୱାରା ପୁନଃ ବଳବତ୍ତର କରାଯାଇଥିଲା ଏବଂ ଯାତ୍ରୀକର ଉଠାଇ ଦିଆଯାଇଥିଲା ।

ଖୋର୍ଦ୍ଧାର ରାଜା ଇଷ୍ଟଇଣ୍ଡିଆ କମ୍ପାନୀଠାରୁ ଜଗନ୍ନାଥ ମନ୍ଦିରର ସତ୍ତ୍ୱାଧିକାର ଫେରି ପାଇଲେ ମଧ୍ୟ ଖୋର୍ଦ୍ଧା ରାଜ୍ୟ ଫେରିପାଇ ପାରିଲେ ନାହିଁ । ଡକ୍ଟର ଏଚ୍, କୁଲ୍କେଙ୍କ ଭାଷାରେ "ପୁରୀର ରାଜାମାନେ ବାସ୍ତବରେ ରାଜ୍ୟବିହୀନ ରାଜା ହୋଇ ସେମାନଙ୍କର ରାଜନୈତିକ କ୍ଷମତାର କ୍ଷତିପୂରଣ ବାବଦ ଜଗନ୍ନାଥ ମନ୍ଦିରର ପରିଚାଳନା ମାଧ୍ୟମରେ ଗୋଟିଏ ଧର୍ମରାଜ୍ୟର ଅଧିକାରୀ ହୋଇ ଓଡ଼ିଶାର ଗଜପତି ବୋଲାଇଲେ ।" ୧୮୦୯ ଓ ୧୮୪୦ ଖ୍ରୀଷ୍ଟାବ୍ଦରେ ଇଷ୍ଟଇଣ୍ଡିଆ କମ୍ପାନି ପ୍ରଣୀତ ଆଇନମାନ ବ୍ରିଟିଶ ସରକାରଙ୍କ ଦ୍ୱାରା ଅନୁମୋଦିତ ହେବାପରେ ପୁରୀ ରାଜାମାନେ ଜଗନ୍ନାଥ ମନ୍ଦିର ସଂପୃକ୍ତ ଅଧିକାରମାନ ପାଇ ମନ୍ଦିରର ବିଭିନ୍ନ ସେବାନୀତି ମାଧ୍ୟମରେ ନିଜର ଗଜପତି ଧର୍ମ ସାମ୍ରାଜ୍ୟ ଗଢ଼ିପାରିଲେ । ମାଦଳାପାଞ୍ଜି ଅନୁସାରେ ଜଗନ୍ନାଥ ହେଉଛନ୍ତି ଓଡ଼ିଶାର ପ୍ରକୃତ ରାଜା । "ବିଷ୍ଣୁ ରହସ୍ୟମ୍" ଅନ୍ତର୍ଗତ ପୁରୁଷୋତ୍ତମ ମହାତ୍ମ୍ୟରେ ଜଗନ୍ନାଥ ଜଗତର ନାଥ ରୂପେ ବର୍ଣ୍ଣିତ । ଗଜପତିଙ୍କ ସନ୍ଦଲିପିରେ ଲେଖାଅଛି ଯେ ଯେତେବେଳେ ଜଗନ୍ନାଥ ରାଜକୀୟ ବେଶ ଧାରଣ କରନ୍ତି ସେତେବେଳେ ଗଜପତି ତାଙ୍କର ରାଜକର୍ମ ସମ୍ପାଦନ କରନ୍ତି । ଏହିଭଳି ଜଗନ୍ନାଥଙ୍କର ଧର୍ମ ସାମ୍ରାଜ୍ୟରେ ମହାରାଜା ହୋଇ ସେମାନେ ଓଡ଼ିଶାର ଗଜପତି ଆଖ୍ୟା ବଜାୟ ରଖିପାରିଛନ୍ତି । ଓଡ଼ିଶାର ଗଜପତି ମହାରାଜା କିଭଳି ପ୍ରଥମ ଓ ପ୍ରଧାନ ସେବକ ଏବଂ କିଭଳି ହିନ୍ଦୁ-ମାନଙ୍କର ଚଳନ୍ତିବିଷ୍ଣୁ ହେଲେ ତାହା ପୂର୍ବରୁ ଉଲ୍ଲେଖ କରାଯାଇଅଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପୁରୀରାଜା ନିଜକୁ ଗଜପତି ରୂପେ ପୁନରାୟ ଅବସ୍ଥାପିତ କରିବାର ପ୍ରକ୍ରିୟା କେତେକାଂଶରେ ଊନବିଂଶ ଶତାବ୍ଦୀରୁ ହିଁ ଆରମ୍ଭ ।

ବ୍ରିଟିଶ ଶାସକମାନେ ପୁରୀ ରାଜାମାନଙ୍କର ରାଜକୀୟ କ୍ଷମତା ଅନେକ ସମୟରେ ସଙ୍କୁଚିତ କରିବାର ପ୍ରଚେଷ୍ଟା କରିଥିଲେ ହେଁ ରାଜାମାନଙ୍କର ଗଜପତି ପଦବୀଜନିତ ଧର୍ମଗୁରୁ କରିବା ଯୋଗୁଁ ଏହି ଚେଷ୍ଟା ସଫଳ ହୋଇ ପାରିନାହିଁ । ୧୮୭୭ ମସିହା ଫେବୃଆରୀ ମାସରେ ଗଜପତି ଦିବ୍ୟସିଂହ ଦେବ ଜଣେ ସାଧୁଙ୍କୁ ହତ୍ୟା କରିଥିବାରୁ ତାଙ୍କୁ ଆଣ୍ଡାମାନ ଦ୍ୱୀପକୁ ଦ୍ୱୀପାନ୍ତର ଦଣ୍ଡାଦେଶ ହୋଇଥିଲା । ଏହି ସମୟରେ ବ୍ରିଟିଶ ସରକାର ଜଗନ୍ନାଥ ମନ୍ଦିର ପରିଚାଳନାକୁ ସମ୍ପୂର୍ଣ୍ଣ ଅସ୍ୱତ୍ତ୍ୱାଧୀନ କରିବା ପାଇଁ ୧୮୯୬ ମସିହାରେ ଗୋଟିଏ ନୂଆ ଆଇନ ପ୍ରଣୟନ କରିଥିଲେ । କିନ୍ତୁ ଏହା ବିରୁଦ୍ଧରେ

ପ୍ରବଳ ଜନମତ ଉଦ୍ରେକ ହେବାରୁ ସରକାର ଏହି ଚଠା ଆଇନକୁ ବାତିଲ କରି ରାଣୀ ସୂର୍ଯ୍ୟମଣି ପାଟ୍ଟମହାଦେଈଙ୍କୁ ନିଜର ନାବାଳକ ନାତି ତରଫରୁ ମନ୍ଦିର ପରିଚାଳନା କରିବା ପାଇଁ ଅଧିକାରପତ୍ର ପ୍ରଦାନ କରିଥିଲେ ଏବଂ ସେ ପ୍ରାୟ କୋଡ଼ିଏ ବର୍ଷ କାଳ ଏହି ଦାୟିତ୍ୱ ତୁଲାଇଥିଲେ । ଏହି ନାତି (ଅର୍ଥାତ୍ ଦିବ୍ୟସିଂହ ଦେବଙ୍କ ପୁତ୍ର) ଙ୍କୁ ମଧ୍ୟ ଇଂରେଜ ସରକାର ରାଜାରୂପେ ସ୍ୱୀକୃତି ପ୍ରଦାନ କରିଥିଲେ ।

୧୮୮୭ ମସିହାରେ ସରକାର ପୁନର୍ବାର ଜଗନ୍ନାଥ ମନ୍ଦିର ପରିଚାଳନା ହାତକୁ ନେବାପାଇଁ ଚେଷ୍ଟାକରି ବିଫଳ ହେଲେ । ଏହି ବିଫଳତା କେବଳ ସ୍ଥାନୀୟ ସମ୍ବାଦପତ୍ର ନୁହେଁ ଷ୍ଟେଟସମ୍ୟାନ୍ ର ସମ୍ପାଦକଙ୍କ ଦ୍ୱାରା ମଧ୍ୟ ବିଶେଷଭାବେ ପ୍ରଶଂସିତ ହୋଇଥିଲା । ଏହିପରି ଭୈଭବ ପୁରୀରାଜା କିଭଳି ତାଙ୍କର ଧର୍ମ ସାମ୍ରାଜ୍ୟରେ ନିଜର ସ୍ଥିତି ଦୃଢ଼ କରିଥିଲେ ଊନବିଂଶ ଶତାବ୍ଦୀ ତାହାର ଯଥାର୍ଥ ସାକ୍ଷୀ ଦେବ । ମାତ୍ର ବିଂଶ ଶତାବ୍ଦୀରେ ପୁରୀ ରାଜାଙ୍କର ଏହି ସ୍ଥିତି କ୍ରମଶଃ ନିମ୍ନଗାମୀ ହେଲା । କାଳକ୍ରମେ ଧର୍ମଧାରଣର ଅଧୋଗତି ଏବଂ ରାଜାମାନଙ୍କର ସାମାଜିକ ଦୂରତ୍ୱ ସେମାନଙ୍କୁ ଆଉ ପୌରାଣିକ କରି ରଖିପାରିଲା ନାହିଁ । ରାଜପ୍ରାସାଦର ଧର୍ମଗତ କାର୍ଯ୍ୟାନୁଷ୍ଠାନ ଗୁଡିକ ପରିହତା, ବାଧ-ବାଧକତା ଓ ଅର୍ଥନୈତିକ ଅବନତି ଯୋଗୁ ଲୋପ ଏବଂ ସଙ୍କ୍ଷିପ୍ତ ହେବାକୁ ଲାଗିଲା । ଅଧିକନ୍ତୁ ମଧ୍ୟ ଧର୍ମନିରପେକ୍ଷ ରାଜନୈତିକ ଶକ୍ତିମାନେ ଏହି ରାଜାମାନଙ୍କଠାରୁ ରାଜନୈତିକ, ଅର୍ଥନୈତିକ ଏବଂ ନୈତିକ ସମର୍ଥନ ଆସ୍ତେ ଆସ୍ତେ ପ୍ରତ୍ୟାହାର କରିନେଲେ । ରାଜ୍ୟ ସରକାର ୧୯୫୪ ମସିହାରେ ଜଗନ୍ନାଥ ଟେମ୍ପୁଲ ଆକ୍ଟ ଅନୁଯାୟୀ ଏହି ମନ୍ଦିରର ପରିଚାଳନା ଦାୟିତ୍ୱ ନିଜ ହାତକୁ ନେଇଗଲେ ।

ନୂତନ ଆଇନ ଅନୁଯାୟୀ ପୁରୀ ଠାକୁରରାଜାଙ୍କର ମନ୍ଦିର ପରିଚାଳନା ସଂପୃକ୍ତ "ଖୋର୍ଦ୍ଧା ରାଜା ବା ପୁରୀ ରାଜା" ପଦବୀ କାଢି ନିଆଯାଇଛି । ଜଗନ୍ନାଥ ମନ୍ଦିର ବର୍ତ୍ତମାନ ସରକାରଙ୍କ ଦ୍ୱାରା ନିଯୁକ୍ତ ଗୋଟିଏ ପରିଚାଳନା କମିଟି ଦ୍ୱାରା ପରିଚାଳିତ ହେଉଅଛି । ଏହି କମିଟିରେ ଜଣେ ପ୍ରଶାସକ ମୁଖ୍ୟ ପରିଚାଳକ ଭାବେ ଦାୟିତ୍ୱ ତୁଲାଉଛନ୍ତି । ଏହି ଆଇନରେ ରାଜାଙ୍କର ଅଧିକାର ଅତି ସଙ୍କୁଚିତ କରି ଦିଆଯାଇଛି । ବର୍ତ୍ତମାନର ପୁରୀ ରାଜା ହେଉଛନ୍ତି ସେହି ବ୍ୟକ୍ତି ଯେ ଉକ୍ତ ହସ୍ତଲିପି ଅନୁଯାୟୀ ଜଗନ୍ନାଥ ମନ୍ଦିରର "ଗଜପତି ମହାରାଜା ସେବା" ତୁଲାଇବେ । ପୁନର୍ବାର ମନ୍ଦିର ପରିଚାଳନ ବ୍ୟାପାରରେ ଏହି ଆଇନରେ ଗଜପତି ରାଜାଙ୍କର କୌଣସି ନାମକୁ ଅଧିକାର ନାହିଁ । ଏଣୁ ବିଂଶ ଶତାବ୍ଦୀରେ ଏହି ରାଜାମାନଙ୍କର ମନ୍ଦିର ତଥା ଓଡ଼ିଶାର ସାମାଜିକ ଜୀବନରେ ଥିବା ଅସମ୍ଭବ ପ୍ରଭାବ ବହୁଳାଂଶରେ କ୍ଷୁଣ୍ଣ ହୋଇଛି । କିନ୍ତୁ ତଥାପି ହିନ୍ଦୁମାନଙ୍କ ମଧ୍ୟରେ ଗୋଟିଏ ଦୃଢ଼ ବିଶ୍ୱାସ ରହିଛି ଯେ ଗଜପତି ମହାରାଜା ସେବାକର ପୁରୀ ରାଜାଙ୍କ ଦାୟିତ୍ୱ ଅନିର୍ବାର୍ଯ୍ୟ ଏବଂ ସେ ହେଉଛନ୍ତି ଓଡ଼ିଶାର ପ୍ରାଚୀନ ଶାସକମାନଙ୍କର ଉତ୍ତରାଧିକାରୀ ତଥା ପ୍ରତିନିଧି । ତେଣୁ ସେ ସିଂହାସନ ବିହୀନ ହୋଇଥିଲେ ମଧ୍ୟ ସମଗ୍ର ହିନ୍ଦୁ ଜନତାର ପୂଜ୍ୟ ।